( ସ୍ୱର୍ଗୀୟ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତଙ୍କ ମୁଖବନ୍ଧସହ )

# ଜାନକୀବଲ୍ଲଭ ବିଳାସ

ପରିବର୍ଦ୍ଧିତ ସଂସ୍କରଣ

୧୯୭୪

୰ ଗୋକୁଳାନନ୍ଦ ପଟ୍ଟନାୟକ

# ନିଜ କଥା

ମୋର ପିତା, ଜାନକୀବଲ୍ଲଭବିଳାସର କବି ଶ୍ରୀ ଗୋକୁଳାନନ୍ଦ ପଟ୍ଟନାୟକ ଇହଧାମରେ ନାହାନ୍ତି । ୧୯୪୬ ମସିହାରେ ସେ ଦେହତ୍ୟାଗ କରିଛନ୍ତି । କାବ୍ୟର ମୁଖବନ୍ଧକାର ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ମଧ୍ୟ ଗତବର୍ଷ ବିୟୋଗ ହୋଇଯାଇଛି ତେଣୁ ଏ ପୁସ୍ତକଟିର ପ୍ରକାଶ ନିମନ୍ତେ ମୁଁ ବାରମ୍ବାର କର୍ତ୍ତବ୍ୟର ତାଡ଼ନା ଅନୁଭବ କରି ଆସୁଛି ।

୩୮ ବର୍ଷ ତଳେ ଜାନକୀବଲ୍ଲଭବିଳାସର ପ୍ରଥମ ଖଣ୍ଡ କଟକ ବ୍ରଜେନ୍ଦ୍ର ପ୍ରେସରୁ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ସେତେବେଳେ ସୁଧୀସମାଜରେ ଏ ପୁସ୍ତକ ଯଥେଷ୍ଟ ଆଦରଲାଭ କରିଥିଲା ଓ କବି ତାଙ୍କର ସମ୍ପୂର୍ଣ୍ଣ କାବ୍ୟକୁ ପ୍ରକାଶ କରିବାପାଇଁ ଯତ୍ନବାନ୍ ହୋଇଥିଲେ । ମୁଁ ରେଭେନ୍‌ସା କଲେଜରେ ଛାତ୍ର ଥିବାବେଳେ ସେ ଇଚ୍ଛାପ୍ରକାଶ କରିଥିଲେ ଯେ "ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଏହାର ମୁଖବନ୍ଧ ଲେଖିବେ ।" ତାଙ୍କୁ ସେତେବେଳେ ପ୍ରକାଶିତ ପ୍ରଥମ ଖଣ୍ଡ ଓ ଅବଶିଷ୍ଟର ପାଣ୍ଡୁଲିପି ମୁଁ ଦେଇଥିଲି । ସେ ଏହାକୁ ବହୁଦିନ ରଖିବାପରେ ଓ ମୁଁ ତାଙ୍କୁ ବାରମ୍ବାର ବିରକ୍ତ କରିବାରେ ଦିନେ ସେ ହଠାତ୍ କହିଦେଲେ— "କମଳଯାକ ବାଲ, ମୁଁ କ'ଣ ଦେଖିବି" । ମୁଁ ବୁଝି ପାରିଲି ଓ କେଉଁଠାରେ ଦୋଷ ଅଛି ଦେଖାଇବାପାଇଁ କହି ବହି ଓ ପାଣ୍ଡୁଲିପିକୁ ଫେରାଇନେବାପାଇଁ ଦାବୀ କଲି । ଆର୍ତ୍ତବଲ୍ଲଭ ଏଥିରେ ବିବର୍ଣ୍ଣ ହୋଇଗଲେ । ସଙ୍ଗେ ସଙ୍ଗେ ତାଙ୍କର ସ୍ୱଭାବ-ସୁଲଭ କୋମଳତାରେ କହିଲେ, "ଆରେ ତତେ ମିଛରେ କହିଥିଲି । ମୁଁ ଦେଖିପାରି ନାହିଁ ।" ପରେ ଏକ ସୁଚିନ୍ତିତ ମୁଖବନ୍ଧ ଲେଖି ସେ ଏଥିର ଷଷ୍ଠପୂରଣ କରିଛନ୍ତି ଏବଂ ଆଜ ମୋର ଲିଖିତ କୃତଜ୍ଞତା ଗ୍ରହଣ କରିବାପାଇଁ ନାହାନ୍ତି ।

କବି ବହୁ କାବ୍ୟ, କବିତା ଛାନ୍ଦ, ଚଉପଦୀ ଲେଖିଥିଲେ । ତାଙ୍କ ରଚିତ କେତେକ ଜଣାଣ ଓ 'ସାକ୍ଷୀଗୋପାଳ' ନାମକ ବଙ୍ଗଳାଶ୍ରୀ ବୃତ୍ତରେ ଲିଖିତ ଏକ କାବ୍ୟ ପ୍ରକାଶିତ ହୋଇଛି । ଅନେକ ମଧ୍ୟ ଅପ୍ରକାଶିତ ରହିଛି । ଏବେ ମଧ୍ୟ ତାଙ୍କ ରଚିତ ଗୀତ ବହୁ ଝାମୁଯାତ୍ରା ଓ ପାଲାବାଲାଙ୍କ ମୁହଁରୁ ଶୁଣିବାକୁ ମିଳେ ।

"କାବ୍ୟଶାସ୍ତ୍ରବିନୋଦେନ କାଲୋ ଗଚ୍ଛତି ଧୀମତାଂ" ଇତି ଏହି ନୀତିବାକ୍ୟର ବଶବର୍ତ୍ତୀ ହୋଇ ଅଧ୍ୟୟନ, ଅଧ୍ୟାପନା ଓ କାବ୍ୟ ରସାମୋଦରେ ସାରାଜୀବନ ଯାପନ କରିଥିଲେ ଓ ନିଜର ସ୍ୱଳ୍ପ ଉପାର୍ଜନରେ ସନ୍ତୁଷ୍ଟ ରହି ସାରସ୍ୱତ ସାଧନାରେ ବ୍ରତୀ ହୋଇଥିଲେ ।

ସେ ରାମଭକ୍ତ ଥିଲେ ଓ ରାମରସାମୃତରେ ସତତ ନିଜକୁ ନିମଜ୍ଜିତ ରଖିଥିଲେ । ଏହି କାବ୍ୟର ଶେଷ ଛନ୍ଦରେ ସେ କାହିଁକି ଏହି କାବ୍ୟ ରଚନାପାଇଁ ବ୍ରତୀ ହୋଇଥିଲେ, ତାହା ଉଲ୍ଲେଖ କରିଛନ୍ତି । ସେତେବେଳେ ତାଙ୍କର ପୁତ୍ର ଲାଭ ହୋଇଥିଲା । ବର୍ତ୍ତମାନ ପୌତ୍ରଲାଭ ହୋଇଛି । ଏହାକୁ ପ୍ରକୃଷ୍ଟ ସମୟ ମନେ କରି ତାଙ୍କର ପବିତ୍ରସ୍ମୃତି ପ୍ରତି ହୃଦୟର ଗଭୀର ଶ୍ରଦ୍ଧାର ନିଦର୍ଶନସ୍ୱରୂପ ଏହି ପୁସ୍ତକଟି ପ୍ରକାଶ କରୁଛି ।

ମୁଦ୍ରଣ ସମୟରେ ଏହାର ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ବହୁ ଶ୍ରମସ୍ୱୀକାର କରି ସହାୟତା କରିଥିବା ଯୋଗୁଁ ପଣ୍ଡିତ ରାଧାନାଥ ମିଶ୍ରଙ୍କ ନିକଟରେ ମୁଁ କୃତଜ୍ଞତା ପ୍ରକାଶ କରୁଛି ।

ରାମନବମୀ
ଅପ୍ରେଲ ୨୦, ୧୯୬୪ } ଜାନକୀବଲ୍ଲଭ ପଟ୍ଟନାୟକ

# ମୁଖବନ୍ଧ

କବି ଗୋକୁଳାନନ୍ଦ ପଟ୍ଟନାୟକ ପୁରୀଜିଲ୍ଲା ଅନ୍ତର୍ଗତ ଖୋରଧା ନିକଟର ରାମେଶ୍ୱର ଗ୍ରାମରେ ୧୮୮୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୯୪୬ ଖ୍ରୀଷ୍ଟାବ୍ଦରେ ଇହଲୀଳା ସାଙ୍ଗ କରିଥିଲେ । ସେ ପଞ୍ଚମ ବର୍ଷ ବୟସରେ ପିତୃ ମାତୃହୀନ ହୋଇଥିଲେ । ପିତୃବ୍ୟଙ୍କ ଯତ୍ନରେ ସେ ସାମାନ୍ୟ ଓଡ଼ିଆସାହିତ୍ୟ ଓ ଗଣିତ ଶିକ୍ଷା କରିଥିଲେ । ଅବସ୍ଥାଚକ୍ରରେ ସେ ୧୬ ବର୍ଷ ବୟସରେ ଭୁବନେଶ୍ୱରସ୍ଥ ଜନୈକ ବ୍ୟକ୍ତିଙ୍କ ଗୃହରେ ଶିକ୍ଷକତା କରିଥିଲେ । ଘରୋଇଭାବରେ ମଧ୍ୟବୃତ୍ତି-ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଓ ପରେ ଟ୍ରେନିଂ ପଢ଼ି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ଏବଂ ଆଜୀବନ ସ୍ୱଗ୍ରାମର ନିମ୍ନପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ । ସାଧନା ବଳରେ ଲୋକେ ସିଦ୍ଧିଲାଭ କରନ୍ତି, ଏହାର ଦୃଷ୍ଟାନ୍ତ ବହୁଶଃ ପରିଦୃଷ୍ଟ ହୁଏ । କବି ଗୋକୁଳାନନ୍ଦ ସ୍ୱସାଧନାବଳରେ ଜଣେ ଉଚ୍ଚ ଧରଣର କବିପଦବୀ ଲାଭ କରିବାରେ ସମର୍ଥ ହୋଇଥିଲେ ।

ପୂର୍ବେ ଶିକ୍ଷିତ ଲୋକଙ୍କ ମଧ୍ୟରେ ସାହିତ୍ୟର ବିଶେଷତଃ ପ୍ରାଚୀନ ସାହିତ୍ୟର ଆଲୋଚନା ହେଉଥିଲା । ଚାଟଶାଳୀର ଅବଧାନମାନେ ଚାଟଙ୍କୁ ଛାନ୍ଦ, ଗୀତ ଶିଖାଉଥିଲେ । ଗଣେଶଚତୁର୍ଥୀ ଓ ଶ୍ରୀପଞ୍ଚମୀ ପୂଜା ସମୟରେ ଚାଟମାନେ ମୂର୍ତ୍ତି ଧରି ଅବଧାନଙ୍କ ସଙ୍ଗରେ ଗୃହେ ଗୃହେ ଛାନ୍ଦ ଗୀତ ବୋଲି ପାରିତୋଷିକ ଲାଭ କରୁଥିଲେ । ସେହି ଚାଟଙ୍କ ମଧ୍ୟରେ ଛାନ୍ଦ ଗୀତ ପ୍ରତି ଯାହାଙ୍କର ଅନୁରାଗ ଜନ୍ମୁଥିଲା ସେ ଆଜୀବନ ତତ୍ପ୍ରତି ସ୍ୱମମତା ଉତ୍ତରୋତ୍ତର ବଢ଼ାଇ ଛାନ୍ଦ-ଗୀତମାନଙ୍କର ଅନୁଶୀଳନରେ ତଥା ରଚନାରେ ନିଜର ଚିତ୍ତ ବିନୋଦନ କରୁଥିଲେ । ପୁନଶ୍ଚ ଆମର ଏହି ଉତ୍କଳଖଣ୍ଡରେ ସତ୍ୟନାରାୟଣ ସତ୍ୟପୀରଙ୍କ ପୂଜା ଅବସରରେ ପାଲାବାଲାମାନେ ଛାନ୍ଦ-ଗୀତମାନ ଜନସାଧାରଣରେ ଗାନ କରି ଖଣ୍ଡମଣ୍ଡଳକୁ ଗୀତରସରେ ଆନନ୍ଦମୟ କରି ତୋଳନ୍ତି । ପାଲାବାଲାଙ୍କଦ୍ୱାରା ହିଁ ପ୍ରାଚୀନ ସାହିତ୍ୟ କେତେକାଂଶରେ ଉଜ୍ଜୀବିତ ହେବା ନିଶ୍ଚିତ ଏବଂ ତତ୍ପ୍ରତି ଲୋକଙ୍କ ଅନୁରାଗ ଜନ୍ମିବା ମଧ୍ୟ ସ୍ୱୀକାର୍ଯ୍ୟ ।

କବି ଗୋକୁଳାନନ୍ଦ ସ୍ୱବାଲ୍ୟଜୀବନରେ ପ୍ରାଚୀନ ସାହିତ୍ୟର ଗୌରବ ତଥା ମାଧୁର୍ଯ୍ୟରେ ପ୍ରଭାବିତ ହୋଇଥିଲେ । ସେହି ଛାନ୍ଦ-ଗୀତମାନଙ୍କର ସୁନ୍ଦର ଅବବୋଧ-ନିମିତ୍ତ ସେ ଯତ୍ନବାନ୍ ହୋଇ ଅମରକୋଷ ଅଧ୍ୟୟନ କରିଥିଲେ ଓ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ, ଯଦୁମଣି ପ୍ରଭୃତିଙ୍କ କାବ୍ୟ-କବିତା ତଥା ସାରଳା ମହାଭାରତ, ବଳରାମଙ୍କ ରାମାୟଣ, ଜଗନ୍ନାଥ ଦାସଙ୍କ ଭାଗବତ ଓ ହରିବଂଶ ପ୍ରଭୃତି ପୁରାଣଗ୍ରନ୍ଥମାନ ପ୍ରତ୍ୟହ କିଛି କିଛି ପାଠ କରୁଥିଲେ ।

ନିଜର ନିଷ୍ଠା ଓ ସାଧନା ହେତୁ ସେ ବାଗ୍‌ଦେବୀଙ୍କ କରୁଣାଭାଜନ ହୋଇଥିଲେ । ଆଳଂକାରିକ ତଥା ସାହିତ୍ୟବିତ୍‌ଙ୍କ ମତରେ ପ୍ରତିଭା, ବହୁଶାସ୍ତ୍ର-ଦର୍ଶିତା, ଶିକ୍ଷା ଓ ଅଭ୍ୟାସ ଆଦିର ସମଷ୍ଟି ହିଁ କବିତ୍ୱର ଏକ କାରଣରୂପେ ଗୃହୀତ । ତନ୍ମଧ୍ୟରେ କୌଣସି ଗୋଟିଏ କବିତ୍ୱର ସ୍ୱତନ୍ତ୍ର କାରଣରୂପେ ସ୍ୱୀକୃତ ନୁହେଁ । ପ୍ରତିଭାରୁ କବିତ୍ୱର ପ୍ରସବ ହୁଏ । ଶିକ୍ଷା ଓ ଅଭ୍ୟାସବଳରେ କବିତ୍ୱ ପରିବର୍ଦ୍ଧିତ ହୁଏ । କବିତ୍ୱର ପୂର୍ଣ୍ଣାଙ୍ଗତା ତଥା ଚାରୁତା ନିଷ୍ପାଦନ ନିମନ୍ତେ ବ୍ୟୁତ୍ପତ୍ତି ହିଁ ପ୍ରଧାନ । ଦଣ୍ଡାଚାର୍ଯ୍ୟ କହିଅଛନ୍ତି, ପ୍ରତିଭା ଓ ପୂର୍ବବାସନାର ଅଭାବରେ ମଧ୍ୟ ଅଧ୍ୟୟନ ତଥା ନିଷ୍ଠାର ସହିତ ସେବା କଲେ ବାଗ୍‌ଦେବୀ ଅନୁଗ୍ରହ ପ୍ରକାଶ କରନ୍ତି । କବି ଗୋକୁଳାନନ୍ଦଙ୍କର ପ୍ରତିଭାର ନିଦର୍ଶନ ତାଙ୍କର କାବ୍ୟରୁ ପରିସ୍ଫୁଟ । ତାଙ୍କର ସାଧନାରେ ଦେବୀ ସରସ୍ୱତୀ ପ୍ରସନ୍ନ ହେବା ସୁନିଶ୍ଚିତ, ନୋହିଲେ ଏଭଳି କାବ୍ୟ-ରଚନାର ସମ୍ଭବ ହୋଇ ନ ଥାନ୍ତା । ସାମାନ୍ୟ ନିମ୍ନପ୍ରାଥମିକ ବିଦ୍ୟାଳୟର ଅଳ୍ପଶିକ୍ଷିତ ଶିକ୍ଷକଙ୍କ ପକ୍ଷରେ ଜାନକୀବଲ୍ଲଭ-ବିଳାସ କାବ୍ୟ ଲେଖିବା ଅତୀବ ବିସ୍ମୟକର ବିଷୟ । ଦୈବୀ କୃପାବଳରେ ଅସମ୍ଭବ ସମ୍ଭବ ହୁଏ । ସେହି କୃପା ସାଧନା ବା ତପସ୍ୟାର ଅନୁଗତା । ସାଧନାର ପରିଣତି—ବ୍ୟୁତ୍ପତ୍ତି ମଧ୍ୟ କୃପାର ଅନୁଗାମିନୀ ।

ଜାନକୀବଲ୍ଲଭ-ବିଳାସ ଧନଞ୍ଜୟ ଭଞ୍ଜଙ୍କ ରଘୁନାଥ-ବିଳାସ ବା ରାମବିଳାସ ଓ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ-ବିଳାସର ଆଦର୍ଶରେ ଲିଖିତ । ଏହି କାବ୍ୟର ବିଶେଷତ୍ୱ—ଅନୁପ୍ରାସର ସହଜ ବିଳାସ । ଶୋଭନ ଅନୁପ୍ରାସ ଯୋଜନାରେ ରୀତିର ଉତ୍କର୍ଷ ସାଧିତ ହୁଏ । ବିଶିଷ୍ଟ ପଦରଚନା ହିଁ ରୀତି । 'ବିଶିଷ୍ଟ' ଏହି ଶବ୍ଦଦ୍ୱାରା ରଚନାରେ ଗୁଣମାନଙ୍କର ଯଥାଯଥ ସମାବେଶ ହୋଇଥାଏ । ଗୁଣମାନଙ୍କର ଅସ୍ତିତ୍ୱ ହିଁ ରସମାନଙ୍କର ଅସ୍ତିତ୍ୱର ପରିଚାୟକ । ଏହା ସର୍ବଜନ ଜ୍ଞାତ ଓ ସ୍ୱୀକୃତ ଯେ ଯେଉଁଠାରେ ରସ, ସେହିଠାରେ ଗୁଣ ଓ ଯେଉଁଠାରେ ଗୁଣ ପରିଦୃଷ୍ଟ ସେହିଠାରେ ରସର ବିଦ୍ୟମାନତା ସୁନିଶ୍ଚିତ । ବିଶିଷ୍ଟ ପଦରଚନାଦ୍ୱାରା ଅଭିପ୍ରେତାର୍ଥ ପୂର୍ଣ୍ଣଭାବରେ ବିକାଶ କରେ । ଅଗ୍ନିପୁରାଣରେ ଯଥାର୍ଥ କଥିତ ଅଛି, "ଏକଃ ଶବ୍ଦଃ ସୁପ୍ରଯୁକ୍ତଃ ସମ୍ୟଗ୍‌ଜ୍ଞାତଃ ସ୍ୱର୍ଗେ ଲୋକେ ଚ କାମଧୁଗ୍ ଭବତି ।" ଉତ୍ତମ ପଦମାନଙ୍କର ଯୋଜନା-ଦ୍ୱାରା ଅଭିପ୍ରେତାର୍ଥ ସୁସ୍ପଷ୍ଟ ପ୍ରକାଶିତ ହେଲେ ଲୋକର ହୃଦୟରେ ଚମତ୍କାର ଭାବ

କହନ୍ତେ । ତନ୍ତୁଁ ଚମତ୍କାର ଭାବ ଜନ୍ମାଇବା ପଦାବଳୀ ହିଁ କାବ୍ୟ । ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଚାତୁର୍ଯ୍ୟର ବିଳସନରେ ହିଁ କାବ୍ୟତ୍ୱର ଯାଥାର୍ଥ୍ୟ ପ୍ରତିପାଦିତ । ଅନ୍ୟଥା ନୁହେଁ । ଜାନକୀବଲ୍ଲଭ-ବିଳାସରେ ଉକ୍ତ ଲକ୍ଷଣମାନ ଅଳ୍ପାଧିକ ପରିମାଣରେ ପରିଦୃଷ୍ଟ ହୁଏ । କବି ଗୋକୁଳାନନ୍ଦ ଭଞ୍ଜୀୟ ପନ୍ଥା ଅନୁସରଣପୂର୍ବକ ସ୍ୱକାବ୍ୟରେ ଉତ୍ତମ, ମଧ୍ୟମ କାବ୍ୟଗତ ବିଷୟ ବ୍ୟତୀତ ଶବ୍ଦାଳଙ୍କାର ତଥା ଚିତ୍ରକାବ୍ୟର ସଂଶ୍ଳିଷ୍ଟ ସମାବେଶ କରିଅଛନ୍ତି । ଯଥା—ଆଦ୍ୟଯମକ, ପ୍ରାନ୍ତଯମକ, ମଧ୍ୟଯମକ, ଆଦ୍ୟପ୍ରାନ୍ତ ଯମକ ଅନୁପ୍ରାସ, ଶ୍ଳେଷ, ବିରୋଧାଭାଷ, ଅନ୍ତର୍ଲିପି, ବହିର୍ଲିପି, ଗୋମୂତ୍ର, ମଣ୍ଡୁକପ୍ଳୁତ, ମେଷଯୁଦ୍ଧ, ସିଂହାବଲୋକନ. ଲକ୍ଷଣା, ଲକ୍ଷିତଲକ୍ଷଣା; ଅକାରାଦି ସ୍ୱର ମାତ୍ରର ପଦାବଳୀ. ଓଷ୍ଠ୍ୟ. ନିରୋଷ୍ଠ୍ୟ, ବିନା, ଅବିନା ନାନାପ୍ରକାର ବନ୍ଧ-ଚାତୁରୀ ସହ ଶବ୍ଦ-ମାନଙ୍କର ତଥା ରାଗରାଗିଣୀମାନଙ୍କର ଶ୍ଳେଷରେ ସନ୍ନିବେଶ ପ୍ରଭୃତିର ଉଦାହରଣମାନ ଏ କାବ୍ୟରେ ସନ୍ନିବଦ୍ଧ । ପୁନଶ୍ଚ ୩୪ଛାନ୍ଦରେ କଟକ, ସମ୍ବଲପୁର,ପୁରୀ, ଗଞ୍ଜାମ, ବର୍ଦ୍ଧମାନ, ଦରଭଙ୍ଗା, ନେପାଳ ସ୍ଥାନମାନଙ୍କର ଓ ଅଶାବରୀ ଓ ଶଙ୍କରାଭରଣ ପ୍ରଭୃତି ରାଗରାଗିଣୀଙ୍କୁ ଶ୍ଳେଷାର୍ଥରେ ପ୍ରୟୋଗ କରି ନିଜର ଚାତୁରୀ ଦେଖାଇଅଛନ୍ତି । ପୁନଶ୍ଚ ସଭଙ୍ଗ ଅଭଙ୍ଗ ଶ୍ଳେଷର ଉଦାହରଣ ମଧ୍ୟ ପ୍ରଦତ୍ତ । ବହ୍ୱର୍ଥକ ପଦାବଳୀମାନ ଏବଂ ଏହି ସବୁକୁ ଦେଖି ପାଶ୍ଚାତ୍ୟ ସାହିତ୍ୟର ପଲ୍ଲବଗ୍ରାହୀ ପଣ୍ଡିତାଭିମାନୀ ବ୍ୟକ୍ତି ମତପ୍ରକାଶ କରିଥିବା ଆମ୍ଭେମାନେ ଜାଣୁ ଯେ ପ୍ରାଚୀନ କାବ୍ୟ ସାହିତ୍ୟରେ କବିତ୍ୱ ନାହିଁ । କାବ୍ୟ ଓ କଳାର ଅନ୍ତର୍ଗତ ଉତ୍କଳର କାବ୍ୟମାନ ସଙ୍ଗୀତମୟ ହେତୁ ତାହା ଚାରୁକଳାରୂପେ ଗୃହୀତ । କଳାବିଦ୍ୟା ଚତୁଃଷଷ୍ଠୀ ଭାଗରେ ବିଭକ୍ତ । ଏ ବିଷୟରେ ଯାହାଙ୍କର ଅଭିଜ୍ଞତା ଅଛି ସେମାନେ ଜାଣନ୍ତି ଯେ ପ୍ରହେଳିକା, ଅକ୍ଷରମୁଷ୍ଟି, ଚିତ୍ରବନ୍ଧ, ଦୁର୍ବାଚକ ତନ୍ମଧ୍ୟରେ ଗୃହୀତ । ଦୁଃଖର କଥା ଆଧୁନିକ ଅଳ୍ପଧୀ ଶିକ୍ଷିତମାନେ ଏ ସବୁ ଅନାବଶ୍ୟକ ଓ କାବ୍ୟର ଅପକର୍ଷାଧାୟକ ବୋଲି ମତ ବ୍ୟକ୍ତ କରନ୍ତି; କିନ୍ତୁ ଉତ୍କଳର କବିମାନେ କିପରି ରସିକ, କିପରି ସାଧକ, କିପରି କାବ୍ୟରସପାନରେ ବ୍ୟସନୀ ହୋଇ ଲୋକୋତ୍ତର ଉନ୍ମାଦନାରେ ମତ୍ତ ଥିଲେ. ତାହା ପ୍ରକୃତ ଅନୁଭବୀ ହିଁ ଉପଲବ୍ଧି କରିବ । ଅନ୍ୟଲୋକମାନଙ୍କଦ୍ୱାରା କସ୍ମିନ୍‌କାଳେ ତାହା ଅନୁଭୂତ ହେବ ନାହିଁ । ଐକାନ୍ତିକୀ ନିଷ୍ଠାର ସହିତ ଚାଳନା କଲେ ବୁଦ୍ଧିର ପ୍ରାଖର୍ଯ୍ୟ ବଢ଼େ ଏବଂ ଆମ୍ଭମାନଙ୍କ ଦୃଷ୍ଟିରେ ଯାହା ଅତି ଦୁରୂହ, ତାହା ତାଙ୍କର ସହଜଲଭ୍ୟ ହୁଏ । ମେଷଯୁଦ୍ଧ, ମଣ୍ଡୁକପ୍ଳୁତ, ଲକ୍ଷିତଲକ୍ଷଣା, ମୁରଜାଦିବନ୍ଧ ରଚନା ଅତୀବ କଠିନ ବିଷୟ; କିନ୍ତୁ ତଦପେକ୍ଷା ସରଳ ରଚନା ପ୍ରସଙ୍ଗରେ କବି ଦୀନକୃଷ୍ଣ ଦାସ ତାଙ୍କର ଅମୃତରସମୟ ରସକଲ୍ଲୋଳରେ ସନ୍ତପ୍ତହୃଦୟର ଆବେଗରେ ପଲ୍ଲବଗ୍ରାହୀ ପ୍ରଜ୍ଞାବାଦୀଙ୍କୁ ଲକ୍ଷ୍ୟ କରି ପ୍ରକାରାନ୍ତରେ କହିଛନ୍ତି :—

''କନ୍ତୁଅଛୁ ସୁଜନମାନଙ୍କୁ ଏତେ ଯେ
କୃପା କରିବ ମୋତେ ପ୍ରସନ୍ନ ଚଉେ ଯେ
କ ଖ ଅକ୍ଷରେ କଲି ଯେ ଗୀତ
କେବେ ହେଁ ଏଥି ନ ଦେବ ଘାତ
କବି ହେଲେ ତ ଜାଣିମ ଏଥି ଶ୍ରମ ହିଁ ଯେତେ ଯେ ।''

ବହୁ ଶ୍ରମ କରି ଦୀନକୃଷ୍ଣ ରସକଲ୍ଲୋଳ କାବ୍ୟ ଲେଖିଲେ ବୋଲି ସେ କ'ଣ ହୀନ କବିରଥୀ କବି ହେଲେ ? ତଥାପି ଏ ସବୁ ବିଷୟରେ ମତ ବ୍ୟକ୍ତ କରିବା ଏତେ ସହଜ ବିଷୟ ନୁହେଁ ।

ଏ ପ୍ରସଙ୍ଗରେ କହିବାକୁ ହେବ ଯେ ଉତ୍କଳର ସେହି ସିଦ୍ଧ କବିମାନେ ଦୁର୍ଗମ ପଥରେ ଅବଲୀଳାକ୍ରମେ ଗତି କରି ନିଜର କୃତିତ୍ୱର ପରାକାଷ୍ଠା ଦର୍ଶାଇ-ଅଛନ୍ତି । ଅପର ପକ୍ଷରେ ''ଦୁର୍ଗମ ପଥ ଏ ରାଜନ, ଭୟେ ଭାଜିଲେ ଯୋଗୀଜନ'' ଏହି ଉକ୍ତି ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ ।

ଏହି ସବୁ ଦୃଷ୍ଟିରେ କବି ଗୋକୁଳାନନ୍ଦଙ୍କ କୃତିତ୍ୱ ଅତୀବ ପ୍ରଶଂସ୍ୟ । ପୁରାଣ ଇତିହାସରେ ବୀର ପୁରୁଷଙ୍କର ଚରିତ ବର୍ଣ୍ଣନା କବି ଅବିକଳ ଗ୍ରହଣ କରନ୍ତି ନାହିଁ । କବି ସର୍ବଦା ସତ୍ୟ ଓ ଆଦର୍ଶକୁ ନିଜର ସମ୍ମୁଖରେ ରଖି କାବ୍ୟ ଲେଖନରେ ଅଗ୍ରସର ହୁଅନ୍ତି । ମାନବବିଶେଷର କ୍ରିୟାକଳାପରେ ମାନବ-ଜାତିର ଧର୍ମ ପ୍ରକାଶ ପାଏ ନାହିଁ । କବି ଏକ ଅପୂର୍ବ ରାଜ୍ୟର ସ୍ରଷ୍ଟା—ବିଧାତାଙ୍କ ତୁଲ୍ୟ ସେ ସ୍ରଷ୍ଟା—କିନ୍ତୁ ଏକ ଅପୂର୍ବ ରାଜ୍ୟର । ରାମାୟଣକାର ଦଶରଥ କୈକେୟୀଙ୍କଦ୍ୱାରା ରାମଙ୍କୁ ନିର୍ବାସିତ କରାଇଥିଲେ । ରାଜଶେଖର କବି କିନ୍ତୁ ତାଙ୍କ ବାଲରାମାୟଣ ନାଟକରେ କୌଶଲ୍ୟା କୈକେୟୀଙ୍କ ଅନୁପସ୍ଥିତିରେ ରାବଣ ଓ ସୂର୍ପଣଖା ମାୟାରେ ଦଶରଥ ଓ କୈକେୟୀଙ୍କ ରୂପ ଧାରଣ କରି ରାମଙ୍କୁ ନିର୍ବାସିତ କରାଇଥିଲେ । ତାଙ୍କର ଏପରି କରିବାର କାରଣ ହେଉଛି—କୈକେୟୀଙ୍କର ଓ ଦଶରଥଙ୍କ ଚରିତ୍ରର ପବିତ୍ରତା ଅକ୍ଷୁଣ୍ଣ ରଖିବା । ଓଡ଼ିଶାର ବ୍ୟାସକବି ସାରଳା ଦାସ ବ୍ୟାସଙ୍କର ମାତା ସତ୍ୟବତୀଙ୍କୁ ଶାନ୍ତନୁଙ୍କର ସ୍ତ୍ରୀ ନ କରାଇ ପରାଶରଙ୍କର ସ୍ତ୍ରୀରୂପେ ବର୍ଣ୍ଣନ କରି ଅଛନ୍ତି । ଭଗବାନ୍ କଳାରେ ଜାତ ବ୍ୟାସ-ଦେବଙ୍କର ମାତାଙ୍କୁ ପ୍ରତ୍ୟନ୍ତରେ ଯୋଗ କରାଇବା ଶୂଦ୍ରମୁନି ସମୀଚୀନ ମନେକରି ନ ଥିଲେ । ସାରଳା ଦାସଙ୍କର ଏପରି ବର୍ଣ୍ଣନ ଐତିହାସିକତ୍ୱର ନିଦର୍ଶନ ନ ହୋଇ କବିତ୍ୱର ନିଦର୍ଶନ ହୋଇଅଛି । କବି ଗୋକୁଳାନନ୍ଦ ସ୍ଥାନେ ସ୍ଥାନେ କବିତ୍ୱର ଔଚିତ୍ୟ ସଂରକ୍ଷରେ ସମର୍ଥ ହୋଇଛନ୍ତି । ତାହାର ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦର୍ଶାଯାଉ—ବହୁ ସାଧନାବଳରେ ବୃଦ୍ଧ ବୟସରେ ଦୈବକୃପାରୁ ଲବ୍ଧ

ରାମଚନ୍ଦ୍ରଙ୍କ ତୁଲ୍ୟ ପୁତ୍ରକୁ ଯାଚନ୍ତା ମାତ୍ରେ ବିଶ୍ୱାମିତ୍ରଙ୍କ ସହ ପ୍ରେରଣ କରିବା ମାନବ ପ୍ରକୃତିର ସତ୍ୟତାର ଅନୁକୂଳ ନୁହେ । ପ୍ରକୃତ ମାନବଭାବର ଦର୍ଶନ ନିମିତ୍ତ ସେ ପୁତ୍ର-ବିଚ୍ଛେଦରେ ଅସହିଷ୍ଣୁ ହୋଇ ଛଳପ୍ରୟୋଗପୂର୍ବକ ଉଦ୍ଦିଷ୍ଟ କାର୍ଯ୍ୟରେ ପୂର୍ଣ୍ଣ ଅସମର୍ଥ ପୁତ୍ରଦ୍ୱୟଙ୍କୁ ଉପସ୍ଥାପିତ କରାଇଥିଲେ । ଯାହାଙ୍କ ଦର୍ଶନରେ ବିଶ୍ୱାମିତ୍ର ସାହାଯ୍ୟ-ଅନାବଶ୍ୟକତା ଉପଲବ୍ଧି କରି ଏକାକୀ ପ୍ରତ୍ୟାବର୍ତ୍ତନ କରିବେ ଏହି·ଭାବନା ରେ ଦଶରଥ ସାଂସାରିକ ମାୟାପରବଶ ହୋଇ କାର୍ଯ୍ୟକାରୀ ହୋଇଥିଲେ । ପୁତ୍ରମମତାର ଆଧିକ୍ୟ ହେତୁ ସେ ମୁନିଙ୍କର ତ୍ରିକାଳଦର୍ଶିତ୍ୱ ଉପଲବ୍ଧି କରିଥିଲେ । କବି ଭରତ ଶତ୍ରୁଘ୍ନଙ୍କୁ ଉପସ୍ଥାପିତ କରି ଯେ ରାମଙ୍କର ପ୍ରତି ତାଙ୍କର ଅତ୍ୟଧିକ ସ୍ନେହ ଓ ଭରତ ଶତ୍ରୁଘ୍ନଙ୍କ ପ୍ରତି ବିରାଗଭାବ ଦେଖାଇବା ଉଦ୍ଦେଶ୍ୟରେ ଏହା ଲେଖି ନାହାନ୍ତି । ରାମଚନ୍ଦ୍ରଙ୍କର ଶକ୍ତିର ଉତ୍କର୍ଷ ପ୍ରତିପାଦନଚ୍ଛଳରେ କବି ଶିବଧନୁ ଦର୍ଶନରେ ପରଶୁରାମଙ୍କର ଭୀତି ଦର୍ଶାଇ ଅଛନ୍ତି ଏବଂ ପରେ ବିବାହାନନ୍ତର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଅବସରରେ ବ୍ରାହ୍ମଣ ପରଶୁରାମଙ୍କର ପିତୃବଧହେତୁକ ପ୍ରତିହିଂସାଚ୍ଛଳରେ କ୍ଷାତ୍ରବୃତ୍ତି-ଅବଲମ୍ବନଜନିତ ଅହଂଭାବକୁ ଦୂର କରାଇ ବ୍ରାହ୍ମଣତ୍ୱ ପ୍ରଦାନ କରିବା ରାମଙ୍କର ମହତ୍ତ୍ୱ ସୂଚନା କରେ । ଗର୍ବସ୍ଫୀତ ପରଶୁରାମ ଶିବଙ୍କର ଧନୁକୁ ପୋକାଧନୁ କହିବା ମଧ୍ୟ ଅସମୀଚୀନ ହୋଇ ନାହିଁ । ଏହିପରି କଳ୍ପନାଜନିତ ନୂତନ ଯୋଜନା କବିଙ୍କର ବିଶେଷତ୍ୱ । ଏହା ପ୍ରକୃତ କାବ୍ୟଜ୍ଞ ସ୍ୱୀକାର କରିବେ । ରାମଚନ୍ଦ୍ରଙ୍କ ବନବାସ ପରେ ଦଶରଥଙ୍କର ଖେଦୋକ୍ତି ଅତୀବ ହୃଦୟସ୍ପର୍ଶୀ । "ସୁକୁମାର ମୋର ପ୍ରିୟ କୁମର······ବୃଦ୍ଧ କରିଣ ବ୍ୟାଧିକ" (୬-୮ ଦ୍ୱାଦଶଛାନ୍ଦ) । କୈକେୟୀଙ୍କର ରାମଙ୍କୁ ବନ ଗମନ ବାର୍ତ୍ତା କହିବା ପରେ ରାମଙ୍କର ଔଦାର୍ଯ୍ୟପୂର୍ଣ୍ଣଉକ୍ତି—"ରାମ କହିଲେ ଗୋ ମାତା·········ସୀତାକୁ" (୯ମ ପଦ—ପୃ ୬୬) । ରାମଙ୍କ ବାଣରେ ଆହତ ହୋଇ ବାଲୀର ପଞ୍ଚତ୍ୱ ପ୍ରାପ୍ତ ହେବା ପୂର୍ବ କାଳରେ ରାମଙ୍କ ପ୍ରତି ଉକ୍ତ ବ୍ୟାବହାରିକଭାବରେ ଯୁକ୍ତିଯୁକ୍ତ । ୨୩ ଛାନ୍ଦ (୨୦—୨୨ ପଦମାନ)ତାରାର ଅଭିଶାପ ଓ ପରେ ଶାପର ତୀବ୍ରତାର ନ୍ୟୂନୀକରଣ । ୨୪ ଛାନ୍ଦରେ ବର୍ଷା ଋତୁ ବର୍ଣ୍ଣନରେ ରାମଚନ୍ଦ୍ରଙ୍କ ସୀତା-ବିରହରେ ସୀତାଙ୍କ ଭାବନା ବର୍ଣ୍ଣନ କରି ବିଳାପ, ପକ୍ଷୀମାନଙ୍କ ମଧ୍ୟରେ କୁକ୍କୁଟର ସୀତାଙ୍କ ବାର୍ତ୍ତା କହିବା ଓ ରାମଙ୍କଦ୍ୱାରାଚର୍ମ ସ୍ୱର୍ଣ୍ଣମୁକୁଟ ବର ଦେବାଟି ସୁନ୍ଦର ହୋଇଅଛି । ଅନୁପ୍ରାସରେ ଛାନ୍ଦଟି ମାଧୁର୍ଯ୍ୟ-ରସମୟ ହୋଇଅଛି । ତନ୍ମଧ୍ୟରେ ୧୧ ପଦଟି ବି ରମଣୀୟ ହୋଇଅଛି ।

୨୬ ଛାନ୍ଦରେ ବର୍ଷାଋତୁ ଅବସରରେ ସୀତାଙ୍କ ଉଦ୍ଧାର ନିମିତ୍ତ ସୁଗ୍ରୀବଙ୍କୁ ଉଦ୍‌ଯୋଗହୀନ ମଣି ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ପଠାଇଥିଲେ । ବିଭବମଦରେ ମତ୍ତ ହୋଇ ଲକ୍ଷ୍ମଣଙ୍କ ପରିଚୟ ମାଗିବାରେ କ୍ରୁଦ୍ଧ ହୋଇ ଲକ୍ଷ୍ମଣଙ୍କ ବାଣ ପ୍ରୟୋଗ ।

ତତ୍ପରେ ତାରାଙ୍କର ଅନୁନୟୋକ୍ତିରେ ସ୍ୱଜାତିରେ ନ୍ୟୂନତା, ଚପଳତା ଓ ବୁଦ୍ଧିହୀନତା ଦର୍ଶାଇ ପ୍ରକୃତ ଶୀଳତା ପ୍ରଦର୍ଶିତ ହୋଇଅଛି ।

୨୨ ଛାନ୍ଦରେ ହନୁମାନ ସମୁଦ୍ର ଲଂଘନ କରି ଲଙ୍କା-ଠାକୁରାଣୀଙ୍କୁ ବାଧା ମାରି ଲଙ୍କାପୁରସ୍ଥ ଗୃହମାନ ଖୋଜିବା ପରେ ରାବଣର ଗୃହ ଦେଖିଲା ଏବଂ ତାହା ସ୍ୱର୍ଗଠାରୁ ସୁନ୍ଦର ମଣି ରାବଣକୁ ପ୍ରଶଂସା କଲା । ଅଶୋକବନରେ ଶିଂଶପା ବୃକ୍ଷତଳେ ସୀତାଙ୍କୁ ଭେଟିଲା । ଅସୁରୁଣୀମାନେ ସୀତାଙ୍କୁ ବେଢ଼ିଥିବାର ଦେଖିଲା । ରାବଣ ଆସି ସୀତାଙ୍କୁ ନିଜର ସ୍ତ୍ରୀ କରିବାକୁ ଯେତେ ଅନୁନୟ କଲା, ସେଥିରେ ସୀତା କ୍ରୁଦ୍ଧା ହୋଇ ତାକୁ କହିଲେ, ତୋର ବୁଦ୍ଧିରେ ତୁ ଯମପୁରକୁ ଯିବୁ । ତତ୍ପରେ ରାବଣ ଅସୁରୁଣୀମାନଙ୍କୁ ସୀତାଙ୍କୁ ଭୟ ପ୍ରଦର୍ଶନ କରିବାକୁ କହିଲା । ତ୍ରିଜଟା ସୀତାଙ୍କୁ ଆଶ୍ୱାସନା ଦେଇ କହିଲା, ମୁଁ ସ୍ୱପ୍ନ ଦେଖିଛି, ରାମଚନ୍ଦ୍ର ଆସି ରାବଣକୁ ବଧ କରିଛନ୍ତି । ଏହା ପରେ ହନୁମାନ ସୀତାଙ୍କୁ ଭେଟି କହିଲା, ମୁଁ ରାମଚନ୍ଦ୍ରଙ୍କ ଦୂତ । ସୀତାଙ୍କ ବିଶ୍ୱାସ ଜନ୍ମାଇବା ନିମିତ୍ତ ସେ ରାମଙ୍କ ମୁଦି ଦେବା ପରେ ମଧୁଶଯ୍ୟା କଥା କହିବାରେ ହନୁମାନ ରାମଙ୍କର ଦୂତ ବୋଲି ସୀତାଙ୍କର ବିଶ୍ୱାସ ହେଲା । ସୀତା ନିଜର ମଥାମଣି ଦେଇ ଶୀଘ୍ର ଆସି ତାଙ୍କୁ ସେଠାରୁ ନେଇଯିବାକୁ କହିଲେ । ହନୁମାନ ତା'ର କ୍ଷୁଧା କଥା କହି ଅଶୋକବନରେ ବୃକ୍ଷସବୁ ଭାଙ୍ଗି ଫଳ ଆଦି ଭକ୍ଷଣ କରିବାରେ ରାବଣର ସୈନ୍ୟମାନେ ତାକୁ ଶର ମାରିଲେ । ତା'ର ବହୁ ସୈନ୍ୟ ଓ ପୁତ୍ର ଅକ୍ଷୟକୁମାରକୁ ହନୁମନ୍ତ ମାରି ପକାଇଲା । ଅକ୍ଷୟକୁମାର ଓ ସୈନ୍ୟମାନଙ୍କ ହତ୍ୟାରେ ରାବଣ ବିପନ୍ନ ହୋଇ ଇନ୍ଦ୍ରଜିତକୁ ହନୁମନ୍ତର କଥା କହନ୍ତେ ଇନ୍ଦ୍ରଜିତ ନାଗଫାଶରେ ହନୁମାନକୁ ବନ୍ଧନ କରି ଆଣିବା ଓ ବିଭୀଷଣର ଉକ୍ତିରେ ରାମ-ଦୂତକୁ ନ ମାରି ତା ଲାଙ୍ଗୁଳରେ ଅଗ୍ନି ସଯୋଗ କରିବା ଏବଂ ତଦ୍ୱାରେ ହନୁମାନ-ଦ୍ୱାରା ଲଙ୍କାର ଗୃହମାନ ଦଗ୍ଧ ହେବା ଓ ସୀତାଙ୍କୁ ଭେଟିବା ପରେ ପ୍ରତ୍ୟାବର୍ତ୍ତନ କରି ଅଙ୍ଗଦକୁ ସୀତାଙ୍କର ସମସ୍ତ ବାର୍ତ୍ତା କହିବା, ତତ୍ପରେ ଅଙ୍ଗଦ, ହନୁମାନ ଓ ସୈନ୍ୟ-ସାମନ୍ତ ସହ ଲଙ୍କା ଯାତ୍ରା କରି ରାମ ସମୁଦ୍ରକୂଳରେ ଉପସ୍ଥିତ ହେଲେ । ରାବଣ ରାମଚନ୍ଦ୍ରଙ୍କ ଅଭିଯାନବାର୍ତ୍ତା ପାଇ ନିଜ ମନ୍ତ୍ରୀଦ୍ୱୟ ଶୁକସାରଣଙ୍କୁ ନିଜର ଭ୍ରାତୃମିତ୍ର ସୁଗ୍ରୀବ ଓ ଭାଇ ବିଭୀଷଣକୁ ବୁଝାଇ ଲଙ୍କାକୁ ଆଣିବା ନିମନ୍ତେ ପଠାଇଥିଲା । ସେମାନଙ୍କୁ ରାମଙ୍କ ସେନାମାନେ ବାନ୍ଧି ପକାଇବାରୁ ରାମଚନ୍ଦ୍ର ମୁକ୍ତ କରି ସେମାନଙ୍କୁ ବିଦାୟ ଦେଇଥିଲେ । ତତ୍ପରେ ସେତୁ ବାନ୍ଧି ଲଙ୍କାରେ ପ୍ରବେଶ କରିଥିଲେ । ରାମଚନ୍ଦ୍ରଙ୍କୁ ଭୟ ଦେଖାଇବା ମାନସରେ ରାବଣ ହଜାର ହଜାର ଛତ୍ର ଚାମର ଆଦି ସହ ବିମାନରେ ଚଢ଼ି ଆକାଶରେ ଉପସ୍ଥିତ ହେବାରୁ ପୃଥିବୀ ଛାୟାମୟ ହୋଇଗଲା । ଏପରି ହୁଅନ୍ତେ ବିଭୀଷଣ ରାମଚନ୍ଦ୍ରଙ୍କୁ କହିଲା, ତା'ର ବଡ଼ପଣ ଦେଖି ଆପଣ ଭୟରେ ପଳାଇବେ, ଏହି ଉଦ୍ଦେଶ୍ୟରେ ସେ ଆସିଛି ।

ରାମଚନ୍ଦ୍ର ବାଣ ପ୍ରୟୋଗରେ ସେ ସମସ୍ତ ଛିନ୍ନ କରିବାରୁ ରାବଣ ଚମକିତ ହୋଇ ଫେରିଗଲା । ତତ୍ପରେ ରାବଣ ରାମଚନ୍ଦ୍ରଙ୍କର ଅବିକଳ ମୃତ ଶରୀର ନିଆଣି କରାଇ ସୀତାଙ୍କ ଆଗରେ ସ୍ଥାପନ କରାନ୍ତେ ସୀତା ଅତି ଦୁଃଖରେ କ୍ରନ୍ଦନ କଲେ । ଏହି ସମୟରେ ରାମ ସୈନ୍ୟଙ୍କର ଆକ୍ରମଣବୋର୍ତ୍ତା ପ୍ରହସ୍ତ ରାବଣ ନିକଟକୁ ପଠାନ୍ତେ, ରାବଣ ସେଠାରୁ ପ୍ରତ୍ୟାବର୍ତ୍ତନ କଲା ଏବଂ ରାମଙ୍କର ମାୟା ଶିର ଓ ଧନୁ ଉଭେଇ-ଗଲା । ସୁରମା ଆସି ସୀତାଙ୍କୁ ପ୍ରବୋଧନ କଲା ଯେ ତୁମେ ସତୀ । ଅଙ୍ଗଦ ଆସି ରାବଣକୁ ଭେଟି କହିଲା, ତୁ ବୈଦେହୀଙ୍କୁ ନେଇ ରାମଚନ୍ଦ୍ରଙ୍କ ଶରଣ ପଶ । ରାବଣ ଅଙ୍ଗଦକୁ ତିରସ୍କାର କରି କହନ୍ତେ ଅଙ୍ଗଦ ତାକୁ କହିଲା, ତତେ ପରା ମୋ ପିତା କାଖରେ ଧରିଥିଲେ । ତୁ କାଖରୁ ଖସି ପଡ଼ିଲୁ ଓ ତୋ ମୁହଁରୁ ରକ୍ତ ବହିବାରୁ ତୋତେ ମୁଁ ଦଉଡ଼ିରେ ଓ ଲହଡ଼ିରେ ବାନ୍ଧି ଖେଳୁଥିଲି, ଦୟା କରି ମୁଁ ପରା ତୋତେ ଛାଡ଼ି ଦେଇଥିଲି, ତୁ ସବୁ ଭୁଲିଗଲୁ ? ବେଦମତିର ଶାପରେ ରାବଣ ମରିବ, ଏ କଥା ନିଶ୍ଚିତ । ତେଣୁ ତାଙ୍କର ଶରଣ ପଶ ।

୩୪ ଛାନ୍ଦରେ କବି ଶ୍ଳେଷରେ ବଡ଼ କୌତୁକମୟ ପଦ ବିନ୍ୟାସ କରି କାବ୍ୟର ଚମତ୍କାରିତା ଦର୍ଶାଇ ଅଛନ୍ତି । ଯଥା—ରମ୍ଭା ଗର୍ତ୍ତା ବାଲେଶ୍ୱର···ମାନ ଇତ୍ୟାଦି । ତତ୍ପରେ ରାଗରେ ମଧ୍ୟ ଶ୍ଳେଷରେ ସଙ୍ଗୀତ ରାଗମାନଙ୍କର ବିନ୍ୟାସ କରି କାବ୍ୟର ରୁଚିରତା ଦର୍ଶାଇ ଅଛନ୍ତି । ଯଥା—ଶଙ୍କରାଭରଣ ବିପତ୍ତି···କଲେ ବନ୍ଧନ ଇତ୍ୟାଦି ।

ଏହାପରେ ୩୪ ଛାନ୍ଦରେ କବିଙ୍କର ଚାତୁରୀରେ କାବ୍ୟର ଚମତ୍କାରିତା ପ୍ରଦର୍ଶିତ ହୋଇଅଛି । ଏହି ଛାନ୍ଦରେ ମଧ୍ୟ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କୁ ନାଗଫାଶରେ ବନ୍ଧନ ଦରିବା ବିଷୟ ବର୍ଣ୍ଣିତ । ବିଭୀଷଣ-ବାଣୀରେ ରାମ ଗରୁଡ଼ଙ୍କୁ ସ୍ମରଣ କରନ୍ତେ ଗରୁଡ଼ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କୁ ମୁକ୍ତ କଲେ ।

ଯୁଦ୍ଧରେ ଅନେକ ରାକ୍ଷସ ସୈନ୍ୟ ଓ ସେନାପତିଙ୍କ ହତ୍ୟାରେ ବ୍ୟଥିତ ହୋଇ ରାବଣ କୁମ୍ଭକର୍ଣ୍ଣକୁ ନିଦରୁ ଉଠାଇଥିଲା ଏବଂ ତାକୁ ସମସ୍ତ ବାର୍ତ୍ତା ଦିଅନ୍ତେ କୁମ୍ଭକର୍ଣ୍ଣ ଯୁଦ୍ଧକୁ ବାହାରିଲା । କୁମ୍ଭକର୍ଣ୍ଣଦ୍ୱାରା ଦହସ୍ର ସହସ୍ର କପିସୈନ୍ୟ ହତ ହେଲେ । ଏହା ଦେଖି ରାମଚନ୍ଦ୍ର ତା'ର ଶିର ଛେଦନ କଲେ । ତା'ର ଶିର ଛିନ୍ନ ହୋଇ କେତେକ ମର୍କଟଙ୍କୁ ଭକ୍ଷଣ କଲା । ରାମଚନ୍ଦ୍ର ତା ମୁଣ୍ଡକୁ ଦ୍ୱିଖଣ୍ଡ କରି-ଦେଲେ । ତା'ର ଅଧେ ମୁଣ୍ଡରେ ମେଘନାଦ ପ୍ରାଚୀର ଓ ଅନ୍ୟ ଅଧକ ହ୍ରଦ ହୋଇଗଲା ।

କବି ଗୋକୁଳାନନ୍ଦ ଲେଖିଥିବା ରାମଚନ୍ଦ୍ରଙ୍କ ବାନର-ସେନାମାନଙ୍କର ଇନ୍ଦ୍ରଜିତଦ୍ୱାରା ମୃତ୍ୟୁ ଘଟିବା ଏକ ନୂତନ ବିଷୟ । ବୈଦ୍ୟ ସୁଷେଣଙ୍କ ନିର୍ଦ୍ଦେଶରେ

ଦମାଳନ୍ଧ୍ରୁ ଔଷଧ ଆଣାଇ ସେ ସେମାନଙ୍କୁ ବଞ୍ଚାଇଲେ । ବିଭୀଷଣର ପୁତ୍ର ଯୁଦ୍ଧରେ ମରିବାରୁ ବିଭୀଷଣ କ୍ରନ୍ଦନ କଲା । ସେ କ୍ରୋଧ କରି ମୁକ୍ତ ପାଇବା ସକାଶ ମୁକ୍ତ କରିଥିଲା ବୋଲି କବି ଲେଖିଅଛନ୍ତି !

୩୦ ଗୁପ୍ତରେ ଦୂତ ରାବଣକୁ ସୈନ୍ୟସହ ରାମଚନ୍ଦ୍ରଙ୍କ ଆଗମନ କଥା କହନ୍ତେ ବିଭୀଷଣ କହିଲା, ଆପଣ ରାମଙ୍କ ଚରଣରେ ସୀତାଙ୍କୁ ସମର୍ପଣ କରନ୍ତୁ ଏବଂ ଯୁଦ୍ଧରୁ ନିବୃତ୍ତ ହୁଅନ୍ତୁ । ରାବଣ ବିଭୀଷଣକୁ ବହିଷ୍କାର କରିଦିଅନ୍ତେ ବିଭୀଷଣ ଆସି ରାମଚନ୍ଦ୍ରଙ୍କ ଶରଣାପନ୍ନ ହେବାରୁ ରାମଚନ୍ଦ୍ର ତାଙ୍କୁ ରାବଣର କପଟ ଦୂତ ବୋଲି ସନ୍ଦେହ ଦୂର କରି ଆଶ୍ରୟ ଦେଲେ ଏବଂ ଲଙ୍କାର ରାଜାରୂପେ ତାଙ୍କୁ ଅଭିଷିକ୍ତ କଲେ ।

କବି ଗୋକୁଳାନନ୍ଦ କପି-ସେନାମାନଙ୍କୁ ଅସୁରବଳଦ୍ୱାରା ହତ କରାଇ ସୁଷେଣଙ୍କଦ୍ୱାରା ପୁନର୍ଜୀବିତ କରାଇବାରେ ଏକ ନୂଆ ବିଷୟର ଅବତାରଣା କରିଅଛନ୍ତି ଏବଂ ବିଭୀଷଣର ପୁତ୍ର ଯେ କି ଅତି ବିଷ୍ଣୁଭକ୍ତ, ତାଙ୍କୁ ରାମଚନ୍ଦ୍ରଙ୍କଦ୍ୱାରା ହତ କରାଇ ମୁକ୍ତ କରାଇବା ଏବଂ ବିଭୀଷଣଦ୍ୱାରା ପରିଚିତ ନ କରାଇବା ଗୋକୁଳାନନ୍ଦଙ୍କର ଭକ୍ତିମତ୍ତାର ପରିଚୟ ଦିଏ । ଅଧ୍ୟାତ୍ମ୍ୟରାମାୟଣ ଓ ବଳରାମ ଦାସଙ୍କଦ୍ୱାରା ମଧ୍ୟ ଏହା ସ୍ପଷ୍ଟ କୁହାଯାଇଅଛି । ରାବଣ ଓ ବିଭୀଷଣ ବୈକୁଣ୍ଠରେ ଦ୍ୱାରପାଳ ଥିଲେ । ଲକ୍ଷ୍ମୀଙ୍କୁ ବିଷ୍ଣୁଙ୍କ ନିକଟକୁ ଯିବାକୁ ପଥ ନ ଛାଡ଼ିବାରୁ ଲକ୍ଷ୍ମୀ ତାଙ୍କୁ ଅସୁରତ୍ୱ ପ୍ରାପ୍ତିର ଅଭିଶାପ ଦିଅନ୍ତେ ଜୟ ବିଜୟ ଶୋକକ୍ଲିଷ୍ଟ ହୋଇ ବିଷ୍ଣୁଙ୍କୁ କହିଲେ, ଆମ୍ଭେମାନେ ଅଭିଶପ୍ତ ଏବଂ ଦ୍ୱାରପାଳତ୍ୱରୁ ବଞ୍ଚିତ ହେଲୁ । ଲକ୍ଷ୍ମୀଙ୍କର ଅଭିଶାପ କଥା କହନ୍ତେ ବିଷ୍ଣୁ ତାଙ୍କୁ କହିଲେ, ଭକ୍ତିମତ୍ତାରେ ତୁମ୍ଭର ବିଲମ୍ବରେ ମୁକ୍ତି ଏବଂ ବିରୋଧିତାରେ ତିନିଜନ୍ମରେ ମୁକ୍ତି ଲାଭ ହେବ । ତହୁଁ ଜୟ ବିଜୟ ବିରୋଧିତା କରି ମୁକ୍ତି ଲାଭ ନିମନ୍ତେ ଇଚ୍ଛୁକ ହେବାରୁ ବିଷ୍ଣୁ ଲକ୍ଷ୍ମୀଙ୍କୁ କହିଲେ—ଯାଅ ତୁମେ ମର୍ତ୍ତ୍ୟରେ ଜାତ ହୁଅ । ତୁମକୁ ଏ ବନ୍ଦୀ କରିବ ଏବଂ ତାଙ୍କୁ ବିନାଶ କରି ମୁଁ ତୁମକୁ ମୁକ୍ତ କରିବି । ଦଣ୍ଡକାରଣ୍ୟରେ ରାମ ସୀତାଙ୍କର ପାଦ କଣ୍ଟକବିଦ୍ଧ ହୋଇ ରକ୍ତ ସ୍ରାବ ହେବାର ଦେଖି ରାବଣ ସୀତାଙ୍କୁ ଅପହରଣ କଲା ଏବଂ ନିଜର ଶୀଘ୍ର ମୁକ୍ତିର ପନ୍ଥା ସେ ସୁଗମ କରିଦେଲା । ସମସ୍ତଙ୍କର ମୃତ୍ୟୁ ପରେ ଯେତେବେଳେ ରାବଣ ରାମଚନ୍ଦ୍ରଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଯାଏ, ସେତେବେଳେ ମନ୍ଦୋଦରୀ ରାବଣକୁ ଯୁଦ୍ଧରୁ ବିରତ ହେବାକୁ କହନ୍ତେ, ରାବଣ କହିଲା—ମନ୍ଦୋଦରୀ, ତୁମେ ଜାଣନା, ମୁଁ ଜଗନ୍ମାତାଙ୍କୁ କ'ଣ ସ୍ତ୍ରୀ କରିବାକୁ ଆଣିଛି । ତାଙ୍କୁ ହରଣ କରିଛି ଶାପରୁ ମୁକ୍ତ ହୋଇ ଶୀଘ୍ର ବୈକୁଣ୍ଠରେ ଦ୍ୱାରପାଳତ୍ୱ ଲାଭ କରିବାକୁ ।

ଲକ୍ଷ୍ମଣଙ୍କ ଶକ୍ତିଭେଦ ମଧ୍ୟ ଜାନକୀବଲ୍ଲଭ-ବିଳାସରେ ସୁନ୍ଦରଭାବରେ ବର୍ଣ୍ଣିତ ହୋଇଅଛି । ରାବଣର ପୁତ୍ର ମେଘନାଦ ବିଶ୍ୱବିଜୟୀ । ରାବଣ ଇନ୍ଦ୍ରଦ୍ୱାରା ପରାଜିତ ହୋଇଥିଲା; କିନ୍ତୁ ମେଘନାଦ ଇନ୍ଦ୍ରଙ୍କୁ ଜୟ କରି ଇନ୍ଦ୍ରଜିତ ପଦ ଲାଭ କଲା । ଇନ୍ଦ୍ରଜିତ ପ୍ରାତଃକାଳରେ ହୋମ କରି ଭୂଗର୍ଭରୁ ଉତ୍ଥିତ ଦେବଦ୍ୱତ୍ତ ରଥରେ ଯୁଦ୍ଧ କଲେ, ତାକୁ ପୃଥିବୀରେ ଜୟ କରିବାକୁ କେହି ସମର୍ଥ ନୁହନ୍ତି । ଇନ୍ଦ୍ରଜିତର ହୋମ ବିଧ୍ୱଂସନରେ ବ୍ୟାଘାତ ଜନ୍ମାଇ ବିଭୀଷଣ ଲକ୍ଷ୍ମଣଙ୍କଦ୍ୱାରା ଇନ୍ଦ୍ରଜିତକୁ ମରାଇଲା । ଏହା କବି ଗୋକୁଳାନନ୍ଦ ସୁନ୍ଦରଭାବରେ ବର୍ଣ୍ଣନ କରି ଅଛନ୍ତି ।

ରାବଣର ମୃତ୍ୟୁଭେଦ ବାଲ୍ମୀକିକୃତ ରାମାୟଣରେ କଥିତ । ଲଙ୍କାରେ ଅବସ୍ଥିତି କାଳରେ ରାବଣକୁ ବଧ କରି ନ ପାରି ହତାଶ ହେବା ଅବସରରେ ଅଗସ୍ତି ଋଷି ଆସି ରାମଚନ୍ଦ୍ରଙ୍କୁ କହିଲେ—ଆପଣ ଅରଣ୍ୟ ବାସ କାଳରେ ମୋ-ଠାରୁ ବ୍ରହ୍ମାସ୍ତ୍ର ପ୍ରାପ୍ତ ହୋଇଅଛନ୍ତି । ସେହି ବ୍ରହ୍ମାସ୍ତ୍ର ପ୍ରୟୋଗରେ ରାବଣର ମୃତ୍ୟୁ ସୁନିଶ୍ଚିତ । ବର୍ତ୍ତମାନ ଆପଣ ଆଦିତ୍ୟହୃଦୟ ପାଠ କରି ଶକ୍ତିମାନ ହୋଇ ବ୍ରହ୍ମାସ୍ତ୍ର ପ୍ରୟୋଗ କରନ୍ତୁ ।

ମାର୍କଣ୍ଡେୟ ପୁରାଣରେ ଚଣ୍ଡୀସ୍ତବ-ନିହିତ ଏବଂ ମାର୍କଣ୍ଡେୟ ପୁରାଣ ହିଁ ଦେବୀଙ୍କର ପ୍ରଶସ୍ତିର ପ୍ରାଥମିକ ପ୍ରଧାନଗ୍ରନ୍ଥ । ସେଥିରେ ରାମଚନ୍ଦ୍ର ଦେବୀଙ୍କର ଉପାସନା କରି ରାବଣକୁ ମାରିବାରେ ସମର୍ଥ ହୋଇଥିଲେ—ଏ ଉକ୍ତି ନାହିଁ; କିନ୍ତୁ ଦେବୀ ଭାଗବତରେ ଭିନ୍ନ ରକମ ରାବଣର ମୃତ୍ୟୁଭେଦ କଥିତ । ରାମଚନ୍ଦ୍ର କିଷ୍କିନ୍ଧ୍ୟା-ବାସ-କାଳରେ ସୀତାଙ୍କର ଉଦ୍ଧାରରେ ନିଜକୁ ଅସମର୍ଥ ମଣି ହତାଶ ହେବା ବେଳେ ସ୍ୱର୍ଗରୁ ନାରଦ ଆସି ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କଦ୍ୱାରା ଦେବୀଙ୍କ ନବରାତ୍ର ବ୍ରତ ନିଜର ଆଚାର୍ଯ୍ୟତ୍ୱରେ ପାଳନ କରାଇଥିଲେ ଏବଂ ସେହି ଦେବୀ-ଉପାସନାବଳରେ ସେ ରାବଣକୁ ମାରିବାରେ ସମର୍ଥ ହୋଇଥିଲେ । ଦେବୀଙ୍କର ଉପାସନା ଓ ଆଦିତ୍ୟ-ହୃଦୟପାଠର ମର୍ମ ଏକ । ଅର୍ଥାତ୍ ଲୋକ ବିପନ୍ନ ହେଲେ ନିଜର ଶକ୍ତିର ଆହ୍ୱାନ କରେ । ସେହି ଦୃଷ୍ଟିରେ ରାମଚନ୍ଦ୍ର ନିଜର ଶକ୍ତିରୂପିଣୀ ଦେବୀଙ୍କର ଆଶ୍ରୟ ଗ୍ରହଣ କରିଥିଲେ । ବାଲ୍ମୀକି ଉକ୍ତିର ମର୍ମ ମଧ୍ୟ ତାହାହିଁ । ରାମଚନ୍ଦ୍ର ସେ ସେ ସୂର୍ଯ୍ୟନାରାୟଣଙ୍କର ପ୍ରତିରୂପ । ଆଦିତ୍ୟହୃଦୟ ପାଠ କରିବା ଅର୍ଥ ନିଜର ଶକ୍ତିରେ ଶକ୍ତିମତ୍ତା ଲାଭ କରିବା । ଦେବୀ-ଭାଗବତରେ ନାରଦଙ୍କର ନିର୍ଦ୍ଦେଶରେ ରାମଚନ୍ଦ୍ର ଦେବୀ-ଉପାସନା କରିଥିଲେ; କିନ୍ତୁ କବି ଗୋକୁଳାନନ୍ଦ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ରାମଚନ୍ଦ୍ର ଦେବୀ-ଉପାସନା କରିବା କଥା କହି ରାବଣ-ମାରଣରୂପ କାର୍ଯ୍ୟ ସମାଧାନ କରି ଦେଇ ଅଛନ୍ତି ।

କବି ଗୋକୁଳାନନ୍ଦ ନିଜର ପ୍ରତିଭାବଳରେ ସୁନ୍ଦର ସର୍ଜନା ଶକ୍ତିର ପରିଚୟ ଦେଇ ଅଛନ୍ତି । ସ୍ଥଳେ ସ୍ଥଳେ ଉତ୍କଳର ଲୋକମୁଖରେ ପ୍ରଚଳିତ କଥାମାନଙ୍କୁ ପଦ୍ୟରେ ନିବୋଧ କରାଇ କାବ୍ୟକୁ ସ୍ପୃହଣୀୟ କରାଇ ଅଛନ୍ତି । ଉଦାହରଣ ଦେବା ନିଷ୍ପ୍ରୟୋଜନ, କାରଣ ପାଠକ ସ୍ଥଳେ ସ୍ଥଳେ ଭେଟିବେ । ଏ ଉତ୍କଳମାତା କବିପ୍ରସବିନୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍କଳରେ କବିତା-ବିଳାସର ପ୍ରାଚୁର୍ଯ୍ୟ ଅନ୍ୟତ୍ର ପରିଲକ୍ଷିତ ହୁଏ ନାହିଁ । ତୁଳନା ମଧ୍ୟ ସ୍ପୃହଣୀୟ ନୁହେଁ ।

କାବ୍ୟ ଗଣସାହିତ୍ୟ ନୁହେଁ । ଚାତୁର୍ଯ୍ୟ, ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ, ଔଚିତ୍ୟ ତଥା ଯୋଜନାର କୁଶଳତାରେ ବିଳସିତ ହେଲେ କାବ୍ୟର ମହତ୍ତ୍ୱ ବିକଶିତ ହୁଏ । କବି ସାଧକ । ପ୍ରତିଭା, ଶାସ୍ତ୍ରଦର୍ଶିତା, ଶିକ୍ଷା ଓ ଅଭ୍ୟାସବଳରେ କବିତ୍ୱର ପରିସ୍ଫୂର୍ତ୍ତି । 'ଜାନକୀବଲ୍ଲଭ-ବିଳାସ' କାବ୍ୟରେ ପୂର୍ବୋକ୍ତ ବିଷୟ ଅଳ୍ପାଧିକ ପରିମାଣରେ ପ୍ରକାଶମାନ । ରସକଲ୍ଲୋଳରେ ଦୀନକୃଷ୍ଣ ଯଥାର୍ଥରେ କହିଅଛନ୍ତି — କାବ୍ୟ ଲେଖନରେ ଯେ ଶ୍ରମ ସାଧିତ, ତାହା ଅନୁଭବୀ ଜାଣନ୍ତି । ଅପର ବ୍ୟକ୍ତି ତାହାର ସନ୍ଧାନ ପାଏ ନାହିଁ । କବି ଗୋକୁଳାନନ୍ଦଙ୍କ କାବ୍ୟରେ କାବ୍ୟର ବିଭବମାନ ସୁନ୍ଦରରୂପେ ବିରାଜିତ । ସେ ପ୍ରଶଂସ୍ୟ । ରୀତିଯୁଗର ବିଶେଷତ୍ୱ ସେ ଅକ୍ଷୁଣ୍ଣ କରି ରଖିଅଛନ୍ତି । ସେ ଯେ ଜଣେ ଉତ୍କୃଷ୍ଟ ଶାବ୍ଦିକ, ତାହା କାବ୍ୟପାଠକମାନେ ଜାଣି ପାରିବେ ।

ପୂର୍ବୋକ୍ତ ଉକ୍ତିଦ୍ୱାରା ପ୍ରତିପନ୍ନ ହେବ ନାହିଁ ଯେ ଏ କାବ୍ୟଟି ଦୋଷ-ବିବର୍ଜିତ । ନିର୍ଦ୍ଦୋଷ କାବ୍ୟ ବିରଳ ବା ନାହିଁ କହିଲେ ଚଳେ । ଭାରତର ବରେଣ୍ୟ କବି କାଳିଦାସଙ୍କର ଓ ପୃଥିବୀର ସର୍ବପ୍ରଧାନ ବୈୟାକରଣିକ ପାଣିନିଙ୍କର କୃତିମାନଙ୍କରେ ମଧ୍ୟ ଦୋଷ ଅଛି । କବି ଗୋକୁଳାନନ୍ଦଙ୍କର ଏହି ଗ୍ରନ୍ଥ କାବ୍ୟରସିକମାନଙ୍କର କଣ୍ଠହାରରୂପେ ବ୍ୟବହୃତ ହେବାର ଉପଯୋଗୀ ।

ଶେଖ ବଜାର<br>କଟକ } ପଦ୍ମଶ୍ରୀ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି

ଶ୍ଳୋକଃ—

ଶ୍ରୀମତେ ରାମଚନ୍ଦ୍ରାୟ ନମଃ ।

ରାମଂ ଲକ୍ଷ୍ମଣଂ ପୂର୍ବଜଂ ରଘୁବରଂ ସୀତାପତିସୁନ୍ଦରଂ ।
କାକୁତ୍ସ୍ଥଂ କରୁଣାକରଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକଂ ।।
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ ।
ବନ୍ଦେ ଲୋକାଭିରାମଂ ରଘୁକୁଳତିଳକଂ ରାଘବଂ ରାବଣାରିଂ ।।

ରାମାୟ ରାମଚନ୍ଦ୍ରାୟ ରାମଭଦ୍ରାୟ ବେଧସେ ।
ରଘୁନାଥାୟ ନାଥାୟ ସୀତାୟାଃ ପତୟେ ନମଃ ।।
ଦକ୍ଷିଣେ ଲକ୍ଷ୍ମଣୋ ଧନ୍ୱୀ, ବାମତୋ ଜାନକୀ ଶୁଭା ।
ପୁରତୋ ମାରୁତିର୍ଯସ୍ୟ, ତ୍ୱାଂ ନମାମି ରଘୂତ୍ତମଂ ।।

ନୀଳାମ୍ବୁଜ-ଶ୍ୟାମଳ-କୋମଳାଙ୍ଗଂ ସୀତାସମାରୋପିତବାମଭାଗଂ ।
ପାଣୌ ମହାସାୟକଚାରୁଚାପଂ, ନମାମି ରାମଂ ରଘୁବଂଶନାଥଂ ।।

ଆଦୌ ରାମ ତପୋବନାଦିଗମନଂ ହତ୍ୱା ମୃଗଂ କାଞ୍ଚନଂ ।
ବୈଦେହୀହରଣଂ ଜଟାୟୁମରଣଂ ସୁଗ୍ରୀବସମ୍ଭାଷଣଂ ।।
ବାଲୀନିଗ୍ରହଣଂ ସମୁଦ୍ରତରଣଂ ଲଙ୍କାପୁରୀଦାହନଂ ।
ପଶ୍ଚାତ୍ ରାବଣକୁମ୍ଭକର୍ଣ୍ଣହନନମେତଦ୍ ଶ୍ରୀ ରାମାୟଣଂ ।।
ବାଲ୍ମୀକେର୍ବଦନାମ୍ବୁଜାଦ୍ୱିଗଳିତଂ ହୃଦ୍ୟଂ ପରଂ ପାବନଂ ।
ଶ୍ରାବ୍ୟଂ ରୂପ୍ୟମୃତଂ ପିବନ୍ତ୍ୟନୁଦିନଂ ଚେତ୍‌ଶ୍ରୋତ୍ର-ପାତ୍ରୈର୍ଜନାଃ ।।
ବସ୍ତୋଃ ସଚ୍ଚରିତଂ ଚରାଚରଗୃହେ ରାମାୟଣଂ ସାଦର-
ତେଷାଂ ଶ୍ରୀର୍ବିମଳା ଭବତ୍ୟନୁଦିନଂ ନଶ୍ୟନ୍ତି ଗୃହେର୍ବିଘ୍ନଂ ।।

ଶ୍ରୀ ରାଘବଂ ରଘୁକୁଳାର୍ଣ୍ଣବକଳ୍ପଦୀପଂ, ସୀତାପତିଂ ଦଶରଥାତ୍ମଜମପ୍ରମେୟଂ ।।
ଅଜାନୁବାହୁମରବିନ୍ଦଦଳାୟତାକ୍ଷଂ, ରାମଂ ନିଶାଚରବିନାଶକରଂ ନମାମି ।।

କଲ୍ୟାଣାନାଂ ନିଦାନଂ କଳିମଳମଥନଂ ପାବନଂ ପାବନାନାଂ ।
ପାଥେୟଂ ଯନ୍ମୁମୁକ୍ଷୋଃ ସପଦି ପରପଦପ୍ରାପ୍ତୟେ ପ୍ରସ୍ଥିତସ୍ୟ ।।
ବିଶ୍ରାମସ୍ଥାନମେକଂ କବିବରବଚସାଂ ପାବନଂପାତକାନାଂ ।
ବୀଜଂ ଧର୍ମଦ୍ରୁମସ୍ୟ ପ୍ରଭବତୁ ଭବତାଂ ଭୂତୟେ ରାମନାମ ।।

ଶ୍ରୀରାମ ରାମ କୌଶଲ୍ୟାତ୍ମଜ ରାମ ରାମ, ଶ୍ରୀରାମ ରାମ ଲକ୍ଷ୍ମଣାଗ୍ରଜ ରାମ ରାମ ।
ଶ୍ରୀରାମ ରାମ ଶରଣ କୌଶଳୀ ରାମ ରାମ, ଶ୍ରୀରାମ ରାମ ଶରଣଂ ଭବ ମେ ରାମ ରାମ ।।

ଉଦ୍ଦାମଂ ଯୁଧି ତାଡକାଂ ପଶୁପତେଶ୍ଛିନ୍ଦାନ ମୁଚ୍ଚୈର୍ଧନୁ—
ର୍ଜେତାରଂ ଭୃଗୁନନ୍ଦନସ୍ୟ ବପିନଂ ଗନ୍ତାରମୁକ୍ତୌ ପିତୁଃ ।

ହନ୍ତାରଂ ଖରଦୂଷଣତ୍ରିଶିରସାଂ ବନ୍ଧାରମମ୍ଭୋନଧେ—
ର୍ଜ୍ଜେତାରଂ ଦଶକନ୍ଧରସ୍ୟ ଶରଣଂ ରାମଂ ପ୍ରପଦ୍ୟ ମହେ ॥
କୌଶଲ୍ୟାନନ୍ଦନଂ ରାମଂ ଜାନକୀମାନରକ୍ଷକଂ ।
ଦାନବପ୍ରାଣହର୍ତ୍ତାରଂ ନମାମି ଭରତାଗ୍ରଜଂ ॥

କୋଦଣ୍ଡମଣ୍ଡଳ-ବିନିଃସୃତ ଦଣ୍ଡବାଣ,—ଖଣ୍ଡେନ ଖଣ୍ଡିତଦଶାନନ-ବାହୁଦଣ୍ଡଃ
ଅଖଣ୍ଡଲାରିଗଳଖଣ୍ଡନଚନ୍ଦ୍ରହାସଃ, ଶ୍ରୀଜାନକୀପରିବୃତଃ ସୁଦୃଢ଼ପ୍ରତିଜ୍ଞଃ ॥
ନମାମି ରାମଂ ରଘୁବଂଶମୁଖ୍ୟଂ, ନମାମି ରାମଂ ସୁରକଳ୍ପ-ବୃକ୍ଷଂ ।
ନମାମି ରାମଂ କମଳାୟତାକ୍ଷଂ, ନମାମି ରାମଂ ରଘୁନନ୍ଦନାଖ୍ୟଂ ॥

ତ୍ରିଦଶକୁମୁଦଚନ୍ଦ୍ରୋ ଦାନବାମ୍ଭୋଜଚନ୍ଦ୍ରଃ
ସକଳଭୁବନଚନ୍ଦ୍ରୋ ଯୋଗିନାଂ ଜ୍ଞାନଚନ୍ଦ୍ରଃ ।
ବରନଳୁଚରଚନ୍ଦ୍ରୋ ମୈଥିଲୀନେତ୍ରଚନ୍ଦ୍ରୋ
ଦୁରିତତିମିରଚନ୍ଦ୍ରଃ ପାତୁ ନୋ ରାମଚନ୍ଦ୍ରଃ ॥

ନମୋଽସ୍ତୁ ରାମାୟ ସଲକ୍ଷ୍ମଣାୟ, ଦେବ୍ୟୈ ଚ ତସ୍ୟୈ ଜନକାତ୍ମଜାୟୈ ।
ନପାତିତଂ ଯେନ ସମସ୍ତରକ୍ଷୋ ନମୋଽସ୍ତୁ ତସ୍ମୈ ରଘୁନନ୍ଦନାୟ ॥

ଜୟତି ରଘୁବଂଶତିଳକଃ କୌଶଲ୍ୟାହୃଦୟାନନ୍ଦରାମଃ ।
ଦଶବଦନନିଧନକାରୀ ଦାଶରଥିଃ ପୁଣ୍ଡରୀକାକ୍ଷଃ ॥

ଶ୍ରୀରାଘବଂ ଦଶରଥାତ୍ମଜମପ୍ରମେୟଂ ।
ସୀତାପତିଂ ରଘୁକୁଳାନ୍ୱୟ-ରତ୍ନଦୀପଂ ॥
ଆଜାନୁବାହୁମରବିନ୍ଦଦଳାୟତାକ୍ଷଂ ।
ରାମଂ ନିଶାଚର-ବିନାଶକରଂ ନମାମି ॥

ଅଞ୍ଜନାନନ୍ଦନଂ ବୀରଂ ଜାନକୀଶୋକନାଶନଂ ।
କପୀଶମକ୍ଷ-ହନ୍ତାରଂ ବନ୍ଦେ ଲଙ୍କାଭୟଙ୍କରଂ ।
ଯଃ ପିବନ୍ ସତତଂ ରାମ-ଚରିତାମୃତ-ସାଗରଂ
ଅତୃପ୍ତସ୍ତଂ ମୁନିଂ ବନ୍ଦେ ପ୍ରାଚେତସମକଲ୍ମଷଂ ॥

---

# ଜାନକୀବଲ୍ଲଭ ବିଳାସ

## ପ୍ରଥମ ଛାନ୍ଦ

ବନ୍ଦନା—ରାଗ ଚକ୍ରକେଳି (ଅଦ୍ୟପ୍ରାନ୍ତ ଯମକ)

କର କରୁଣା ସର୍ବ ଗୁଣାକର । କର ଯୋଡ଼ି ଜଣାଉଛନ୍ତି କିଙ୍କର ।୧।
କୁମ୍ଭୀର* ଅଟେ ନାଶିଲ କୁମ୍ଭୀର । କୁରଙ୍ଗୀକୁ ରକ୍ଷା କଲ ଠାକୁର ।୨।
କରତା ଆପଣ ନାଗ ନାକର । କରମ-ହୀନ ମୁଁ ଇନ୍ଦ୍ର ଲୋକର ।୩।
କରେ ତବ ବନ୍ଦନା ଯୋଡ଼ି କରେ । ଖରେ ଦୁଃଖ ନିବେଦ ସମ୍ମୁଖରେ
ଖର-ପର ରାମ ବୀରଶେଖର । ଗରକଣ୍ଠ† ବନ୍ଦ୍ୟ କୃପାସାଗର ।୫।
ଘରେ ଥାଇ ସୁଦ୍ଧା ଡରି ଅଘରେ । ନରେ ନାମ ଜପନ୍ତି ଆନନରେ ।୬।
ଚରଣ ପୂଜନ୍ତି ସରଗରେ । ଚରମରେ ତାଙ୍କ କୃପା ଅଚର ।୭।
ଜନକ ବସୁଦେବ ପୁଣ୍ୟଜନ । ଜନମି ଗୋପେ ନାଶି ପୁଣ୍ୟଜନ ।୮।
ଠାକୁର ଅଜ ଶିବ କାହାଠାକୁ । ଡାକୁଅଛୁ ଡର ପାପଗୁଡ଼ାକୁ ।୯।
ଅନ୍ତର୍ଯାମି ହେ ନାହିଁ ଆଦଅନ୍ତ । ଅନନ୍ତ-ଅଙ୍କବାସୀ ଅନନ୍ତ ।୧୦।
ତମ-ଖଣ୍ଡନକାରୀ ନଟସତ୍ତମ । ତମ ହର କହେ ବରଜ ତମ ।୧୧।
ଦରନନ୍ଦକ-ଧର ଦାମୋଦର । ଦରପଣଜିତ ମୁଖ ସୁନ୍ଦର ।୧୨।
ଧରଣୀରେ ବିବିଧ ରୂପ ଧର । ଧରମକଲ୍ପ ପ୍ରାଣୀକୁ ଉଦ୍ଧର ।୧୩।
ନବଘନମୂର୍ତ୍ତି ଜିତ-ଦାନବ । ନବଧାଭକ୍ତି୧ କରନ୍ତି ମାନବ ।୧୪।
ପରମାନନ୍ଦ ଭକ୍ତ ପରାପର । ପର ଦନୁଜଙ୍କର ପରାତ୍ପର ।୧୫।
ପତିତପାବନ ଜଗତ-ପତି । ବିପତ୍ତି-ବାଧନ ନାଶ ବିପତ୍ତି ।୧୬।
ବରଜରାଜ ସୁତ ନଟବର । ବରବରନା ଶ୍ରୀ-ଜୀଙ୍କ ବର ।୧୭।
ଭାରତ ସନ୍ତୁ ସହାୟ ବି-ରତ । ଭରତ ଅଗ୍ରଜାତ ଶୁଭରେ ।୧୮।

---

*କୁମ୍ଭୀର—ହସ୍ତୀର    †ଗରକଣ୍ଠ—ଶିବ

(୧) ନବଧା ଭକ୍ତି—ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନା, ସ୍ତବ, ପରିଚର୍ଯ୍ୟା, ସଖ୍ୟ ଓ ଦାସ୍ୟ ।

ମିତ୍ରବଂଶଜାତ ସୁଗ୍ରୀବ ମିତ୍ର । ରଘୁ ସଂସାର ରକ୍ଷଣେ ନିରତ ।୧୯।
ସୁମ ଶ୍ୟାମଳତ ନେତ୍ରାଭିରାମ । ରମଣୀୟ ମୂରତି ମନୋରମ ।୨୦।
ରଣପଣ୍ଡିତ ଦୁଃଖ ନିବାରଣ । ଲକ୍ଷ୍ମଣ ଭ୍ରାତା ସର୍ବ ସୁଲକ୍ଷଣ ।୨୧।
ବନମାଳୀ ବିହର ବୃନ୍ଦାବନ । ବନଜ-ଚରଣ ଜଗଜ୍ଜୀବନ ।୨୨।
ବଳ ଶର ବର୍ଷିଥିଲ ପାବକ । ଶଙ୍କାରି କଳ୍ମଷ-ବିନାଶକ ।୨୩।
ସନକାଦି ଧ୍ୟେୟ ଗରୁଡ଼ାସନ । ସାନନ୍ଦ ସତତ ପୀତବସନ ।୨୪।
ଶୀତାଂଶୁବଦନୀ ବନିତା ସୀତା । ସିତାମ୍ବୁଜ-ଦଳ-ବର୍ଣ୍ଣ-ଅସିତା (୧) ।୨୫।
ବିଭୀଷଣର ନାଶି ବି-ଭୀଷଣ । ବଣରେ ବହି ମାରିଲ ରାବଣ ।୨୬।
ବାସନା ଦୂରନ୍ତ କର ଶ୍ରୀନିବାସ । (୨)ନାଶକର ତାପ ଅନ୍ତେ ବିନାଶ ।୨୭।
ଶୂରପଣେ ବଧ କଲ ଅସୁର । (୩)ପଥର ନାରୀ କରିଲ ପଥର ।୨୮।
ପୂତନା ମାରଣ ହେ ପୂତନାମା । ରମା-ହୃଦୟ ତବ ମନୋରମା ।୨୯।
କେଶବ ନାରାୟଣ ହୃଷୀକେଶ । ଶେଷ ମହିମା ନ କରିବେ ଶେଷ ।୩୦।
ନନ୍ଦକଧର ଶ୍ରୀ ସଚ୍ଚିଦାନନ୍ଦ । ନନ୍ଦସୁତ ଭଜିବ ଗୋକୁଳାନନ୍ଦ ।୩୧।

---

## ଦ୍ୱିତୀୟ ଛାନ୍ଦ
### ରାଗ—ବଙ୍ଗଳାଶ୍ରୀ (ଅନୁପ୍ରାସ)

ଶୁକ୍ଳକୀର୍ତ୍ତି ବୁଧବୃନ୍ଦ ହୃଦମଧ୍ୟେ ବୋଧ କର ଏ ଚରିତ ।
ମନ୍ଥି ଭଜିଲେ ରାଜୀବଲୋଚନଙ୍କୁ ତେଜିବ ସର୍ବ ଦୁରିତ ।୧।
ଶ୍ୟାମଳତ ବାମଦେବ ଯା ନାମକୁ ପ୍ରେମରେ ନିତ୍ୟ ଭଜନ୍ତି ।
ସରସ ରାମ ରସରେ ହରଷରେ ଲେଶ ମାତ୍ର ଦମ୍ଭ ମତି ।୨।
ପୂର୍ବେ ଥିଲେ ସର୍ବ ଜେତା ପୂର୍ବଦେବ ପର୍ବତାଙ୍ଗ ଗର୍ବଯୁକ୍ତ ।
ଗନ୍ଧସ୍ତ କଳିସ୍ତ ମାଳି ମାଲ୍ୟବନ୍ତ ସୁମାଲ୍ୟାଦି ତନୀଭ୍ରାତ ।୩।
ବିଦ୍ୟୁତକେଶ ବଂଶରେ ଅବତଂସ ହଂସବାତ ଦୀପ୍ତିମନ୍ତ ।
ଯୁଦ୍ଧ କରି ବୃନ୍ଦାରବାଦି ଦେବଙ୍କ ଦର୍ପ କଲେ ଉଦ୍‌ଘାତ ।୪।
ଅରି ଧରି ହରି ମାଳି ମାଲ୍ୟବନ୍ତ ଦୁହିଙ୍କ କଲେ ବିନାଶ ।
ଶଙ୍କା କରି ଲଙ୍କା ବର୍ଜି ସୁମାଳି ଭାଳୀ ସହିତ୍ରେ ତଳ ବାସ ।୫।

---

୧ । ଅସିତା—ଶ୍ୟାମା ସ୍ତ୍ରୀ, ୨ । ନାଶକରେ—ଯମ, ୩ । ପଥରେ—ମାର୍ଗରେ (ଅର୍ଥାତ ମାର୍ଗରେ ପ୍ରସ୍ତରରୂପିଣୀ ଅହଲ୍ୟାଙ୍କୁ ତାରିଥିଲ ।)

ଶୂନ୍ୟ ଭୁବନ ଦର୍ଶନ କରି ଜନବାଦର ରହିଲେ ତହିଁ ।
ଅସାର ସଂସାରେ ଏହି ପରକାରେ କେତେକାଳ ଗଲା ବହି ।୭।
ଭଲି ଭଲି ଦିନେ ସୁମାଳୀ ବାଳୀଏ ସଙ୍ଗରେ ଘେନି ଚଳିଲା ।
ବହନ ଗହନ ଗହନେ ବିଶ୍ରବା ଋଷିଙ୍କ ପାଶେ ମିଳିଲା ।
ତାଙ୍କେ ଗୃହିଁ ପଙ୍କେରୁହ-ନେତ୍ରା ଋଷି-ଅଙ୍ଗେ କଲା କାମପୀଡ଼ା ।
ତୁଷି ହୋଇ ଋଷି ସେ ଶଶୀହାସୀକି ଭୁଞ୍ଜିଲେ ବିନାଶି ବ୍ରୀଡ଼ା ।୮।
ରଜ ହୋଇ ଅଜ ରାଜୀବଲୋଚନା ଭଜିବୁ ରସରେ ମଜ୍ଜି ।
ବାଜି କାମବାଜୀରାଜ(୧) ଭାଙ୍ଗିଲଣି ଦର୍ପ ମୋ ହୃଦୟୁଁ ଗଞ୍ଜି ।୯।
ସମ୍ମତ ମତ୍ତକାଶିନୀର ଜାଣି ସାକ୍ଷୀ କରାଇଣ ବହ୍ନି ।
ରମଣୀମଣିର ପାଣି-ଗ୍ରହଣରେ ସୁଖୀ ହେଲେ ମୁନିମଣି ।୧୦।
ରାବଣ ଘଟଶ୍ରବଣ ବିଭୀଷଣ ଜାତ ହେଲେ ତିନି ସୁତ ।
ସୂର୍ପଣଖା ସୁତା ପ୍ରସୂତା ହେବାରୁ ଯତ ଅତ ଆନନ୍ଦିତ ।୧୧।
ରାବଣ ଶ୍ରାବଣ ସଦୃଶ ହୋଇଣ ବରଷି ବର ମାର୍ଗଣ ।
ଗୀର୍ବାଣଗଣଙ୍କ ଠାଣ ଭାଙ୍ଗି ଦେଲା ସ୍ୱର୍ଗକୁ କରି ପ୍ରୟାଣ ।୧୨।
ଖେଦ ନିଦବକୁ ଅଦତ୍ୟବୃନ୍ଦଙ୍କୁ ଘଟଶ୍ରୁତ କଲା ସାଧ ।
ବାଦରେ ନୀରଦବାହନ ଦ୍ୱିରଦ ରଦ(୨) କରି ଦେଲା ରଦ ।୧୩।
ନିତ ଭୀତହୀନ ହୋଇ ଏନ୍ତ ମତ ଦୁର୍ମତ କଲେ ଅନୀତ ।
ବୃଥା ଆନ କଥା ମିଥ୍ୟା ନୁହେ ବ୍ୟଥା ସହି ନ ପାରିଲା ଷିତ ।୧୪।
ଏହାପର ନାନା ବଧି ଅବଧିକି କରି ଦୈତ୍ୟକୁଳ-ନିଧି ।
ଅଧିକ ସିଦ୍ଧି ଲବ୍ଧାର୍ଥ ତପ ସାଧି ନିରବଧି ଭଜେ ବିଧି ।୧୫।
ଦତ୍ତପୁର ବୀତିହୋତ୍ରରେ(୩) ହସ୍ତରେ ସ୍ୱମସ୍ତକ ନ୍ୟସ୍ତ କଲା ।
ଶ୍ୱସନ ଅଶନ କରନ୍ତେ କମଳ-ଆସନଙ୍କ ଦୟା ହେଲା ।୧୬।
ହଂସପରେ ବସି ବିଶ୍ୱସ୍ରଷ୍ଟା ଆସି ପ୍ରବେଶି ଦଶାସ୍ୟ ପାଶ ।
ମନୋଭୀଷ୍ଟ ବର ପ୍ରଦାନ ଶେଷରେ ଭାଷିଲେ ଏ ବିଧ୍ନଭାଷ ।୧୭।
ଶ୍ରୀରାମବନିତା ଜନକ-ଦୁହିତା ଶୀତାମ୍ବୁଜମୁଖୀ ସୀତା
ହରଣ କଲେ ତୋ ମରଣ ବାରଣ ନୁହେ ରାବଣ ଜାଣିଥା ।୧୮।
କୁମ୍ଭଶ୍ରୁତ ଶ୍ରୁତବର ପାଶେ ସୁପ୍ତ କାରଣ ମାଗନ୍ତେ ବର ।
ଅତ ଭୀତ ଚିତ୍ତ ମନରେ ଶ୍ରୀ ସରସ୍ୱତୀଙ୍କ ପେଷ ଅମର ।୧୯।

(୧) ବାଜିରାଜି—ଶରସମୂହ, (୨) ରଦ—ଦନ୍ତ, (୩) ବୀତିହୋତ୍ର—ଅଗ୍ନି ।

ଗଲେ ବସିବାରୁ ଦେଖିବଳେ ବଳୀ କହିଲ କରିବ ନିଦ୍ରା ।
ଅସ୍ତୁ ହେଉ ବର୍ଷ ନ ପୂରୁ ଉଠିଲେ ମନରୁ କହିଲେ ବେଧା ।୨୦।
ଦୂଷଣହୀନ ବିଭୀଷଣ ଭୂଷଣ ପୂଷଣ(୧) ଥିବା ପର୍ଯ୍ୟନ୍ତ ।
ଥିବ ଏ ଭୁବରେ ସେବକ ବିଧିରେ ହେବ ତାହାଙ୍କ ଭକତ ।୨୧।
ହେଉ ବୋଲି କହି ମରାଳ ଅରୋହି ବିହି ବହିଗଲେ ବାଟ
ବଳୀ ଚଳିଗଲେ ବଳିଭୁବନକୁ ମିଳିଲେ ଗୋତ୍ର ନିକଟ ।୨୨।
ମାତାମହ ବଂଶ ପତାକୁଁ ଅଣାଇ ରାବଣ ଲଙ୍କାକୁ ଗଲା ।
ବି-ମାନେ ବିମାନ(୨) ଗତ ବିମାନକୁ କୁବେରଙ୍କଠାରୁ ନେଲା ।୨୩।
ଭ୍ରାତୃସ୍ନେହ ବର୍ଜ୍ଜି ଯାତୁଧାନ ବର୍ଜ୍ଜି ଯା ତୁ ବୋଲି ଦେଲା ତଡ଼ି ।
ଶୂଳି ମିତ୍ର ବଳୀ ବଳ କଳି କଳି ନ କରି ଗଲା ତା ଛାଡ଼ି ।୨୪।
ମନ୍ଦରଜରଜା ମନ୍ଦସୁତ-ଭାଷୀ(୩) ମନ୍ଦହାସୀ ମନ୍ଦୋଦରୀ ।
ମୟ ଦଇତ ଦୁହିତାକୁ ରାବଣ କଲା ନିଜ ମନୋହାରୀ ।୨୫।
ବଳିର ଦୁହିତା-ପୁତ୍ରୀ ବଜ୍ରଜ୍ୱାଳା ହେଲେ କୁମ୍ଭଶ୍ରୁତି ବାମା ।
କନିଷ୍ଠ ସୋଦର ବିଭୀଷଣ ନାରୀ ଶୈଳୂଷକନ୍ୟା ସରମା ।୨୬।
କାଳକେୟ ବିଦ୍ୟୁଜ୍ଜିହ୍ୱ ସୂର୍ପଣଖା ପାଣିକି ଗ୍ରହଣ କଲା ।
ଲଙ୍କାଭୁବନରେ ଭବନେକ ତୋଳି ରାବଣ ରଖାଇ ଦେଲା ।୨୭।
ଦଶାସ୍ୟ ଔରସେ ମନ୍ଦୋଦରୀଠାରୁ ଏକସୁତ ହେଲା ଜାତ ।
ଘଡ଼ଘଡ଼ିପରି ରଡ଼ି ଛାଡ଼ିବାରୁ ମେଘନାଦନାମ ଖ୍ୟାତ ।୨୮।
ବାପଠାରୁ ବଳି ଅମାପ ସନ୍ତାପ କୌଣପ ଋଷିଙ୍କି ଦେଲା ।
ପାକଶାସନଙ୍କୁ ସ୍ୱର୍ଗ ସନେ ଜିଣି ଇନ୍ଦ୍ରଜିତ ବୋଲାଇଲା ।୨୯।
ବୀର୍ଯ୍ୟବୃଦ୍ଧି ଅର୍ଜ୍ଜନପାଇଁ ବିଂଶଭୁଜ ଦିଗ ବିଜୟକୁ ଗଲା ।
ଦୁର୍ଜ୍ଜନପଣିଆ ସର୍ଜ୍ଜନା କରଣି ରାଜାଗଣେ କଷ୍ଟ ଦେଲା ।୩୦।
ବେଦମତୀଠାରେ ମତଙ୍କ ବଳାତ୍କେ ସତୀ ଅତି କ୍ରୋଧ କଲା ।
ମେ ହଯୋଗେ ତୋହର ବଂଶ ଧ୍ୱଂସ ହେଉ କହି ଅଗ୍ନିରେ ଝାସିଲା ।୩୧।
ନନ୍ଦୀଙ୍କି ସେ କପିମୁଖ ନିନ୍ଦିବାରୁ ରୋଷେ ଭାଷିଲ ଏ ଭାଷ ।
ନର କୀଶ ଈଶ ସଦୃଶ ବିଷୟ-ବିଷ ତୋ କରିବେ ଗ୍ରାସ ।୩୨।

---

(୧) ପୂଷଣ—ସୂର୍ଯ୍ୟ (୨) ବିମାନ—ଆକାଶଗମ୍ୟ ।
(୩) ମନ୍ଦସୁତଭାଷୀ—ପିକବଚନା

ନର୍ମଦାର ପାଣି ବହନ୍ତେ ଭଜାଣି ଜାଣି ତାହା ବଂଶପାଣି ।
ପରାକ୍ରମ ଦେଖାଇବାକୁ ଯାଅନ୍ତେ ବାନ୍ଧିଲ୍ଲ ସହସ୍ରପାଣି ।୩୩।
ଖଡ଼୍ଗେ ନ ଛିନ୍ଦିଲ୍ଲ ଜଳେ ନ ବୁଡ଼ିଲ୍ଲ ହୁତାଶନେ ନ ପୋଡ଼ିଲ୍ଲ ।
ବେଦବର ବରେ ତିନି ଏ ସଂସାରେ ଜାଣି ତାକୁ ଛାଡ଼ିଦେଲ୍ଲ ।୩୪।
ବିଶ୍ୱାମିତ୍ର ବିଟପ ଚାଳିବ ନିକଟ ଜଳ ପ୍ରକଟକୁ ଗଲ୍ଲ ।
ମର୍କଟେଶ ସୁତ ବିକଟ ମୂର୍ତ୍ତିକି ଉତ୍କଟ କରି ଖେଳିଲ୍ଲ ।୩୫।
ସଂକଟ ସଂଘଟ ହେବାରୁ ସେ ଘଟଶ୍ରବଣାଗ୍ରଜ ଫେରିଲ୍ଲ ।
ସ୍ୱଘଟର ପୀଡ଼ା ପ୍ରଘଟ ନ କରି ଅଘଟ ଘଟନା କଲ୍ଲ ।୩୬।
ବିଷ-ଈଶ ନିଶ ବଂଶବାହୁ ମୋଡ଼ି ଶ୍ୱେତଦ୍ୱୀପେ ଗଲ୍ଲ ଦିନେ ।
କ୍ରୀଡ଼ନକ ପରି କରେ ଧରି ନାରୀ ଖେଳିଲେ ଈଶ୍ୱରସମେ ।୩୭।
ବିବୁଧରେ ଫିଙ୍ଗି ଦିଅନ୍ତେ ସାଗରେ ସ୍ୱଗରେ ନାଗରୀମାନେ ।
ଶିବ ପରି ବାରଧିରେ ବୁଡ଼ି କରି ତରି ଫେରିଲ୍ଲ ବିମାନେ ।୩୮।
ଅଯୋଧ୍ୟାର ଅନରଣ୍ୟ ନୃପତିଙ୍କୁ ରଣରେ ଦେଲ୍ଲ ସନ୍ତାପ ।
ମରଣକାଳରେ କରୁଣ ସ୍ୱରରେ ନରସ୍ୱଣ ଦେଲେ ଶାପ ।୩୯।
ମୋର ଭବିଷ୍ୟତ ବଂଶେ ଅବତଂସ ହେବେ ଦାଶରଥି ରାମ ।
ବିନାଶ କରିବେ କୀନାଶପୁରେ ଯିବୁ ଜାଣିଥା ରାକ୍ଷସାଧାମ ।୪୦।
ଦେବତାମାନଙ୍କୁ ସେବକପଣରେ ଖଟାଇଲ୍ଲ ଅବିବେକ ।
ରାଜବର-ଗ୍ରାହ୍ୟ ହୋଇ ବଂଶଭୂଜ ରଖାଇଲ୍ଲ ନିଜ ଟେକ ।୪୧।
ବିଷ୍ଟରଶ୍ରବାଙ୍କୁ (୧) ସ୍ତବ କଲେ କଷ୍ଟ ପାଇ ବୃନ୍ଦାରକବୃନ୍ଦ (୨) ।
ନନ୍ଦନନ୍ଦନଙ୍କ ପାଦପଦ୍ମ ଦ୍ୱନ୍ଦ୍ୱ ଭାବଇ ଗୋକୁଳାନନ୍ଦ ।୪୨।

—୦—

ତୃତୀୟ ଛାନ୍ଦ ।

ରାଗ—ରାମକେରୀ (ପ୍ରାନ୍ତ ଯମକ)

ମତ ସ୍ଥିର କର ପ୍ରବୀଣ ନରେ କର ଶ୍ରବଣ ।
ଅତିଶୟ ପୀଡ଼ା ଗୀର୍ବାଣେ ଦେଲ୍ଲ ବଇଶ୍ରବଣ ।୧।

---

(୧) ବିଷ୍ଟରଶ୍ରବା—ନାରାୟଣ, (୨) ବୃନ୍ଦାରକବୃନ୍ଦ—ଦେବଗଣ,

କ୍ଷୀରସିନ୍ଧୁତୀରେ ଆତୁରେ ଗଲେ ସୁର ସକଳେ ।
ନୀର ନୟନରୁ ବୁହାଇ ସ୍ତବ କଲେ ବିକଳେ ।୨।
ମୀନାତପତ୍ର ଧ୍ୱଜ ଅବ୍ଜ ବଜ୍ର ଚିହ୍ନ-ଚରଣ ।
ଦୀନାର୍ତ୍ତିହାରୀ ଜନାର୍ଦ୍ଦନ ପଶୁଅଛୁଁ ଶରଣ ।୩।
ଅରି-ଦର-କର * ହରି ହେ ସରିଲୁ ସର୍ବ ଦେବ
ଅରି ଦରେ କରୁଁ ବିନତି ବାରେ ଅଭୟ ଦେବ ।୪।
ବିନାୟକାସନ (୧) ପ୍ରସନ୍ନେ କର କ୍ଳେଶ ମୋଚନ ।
ବିନାୟକ (୨) ଏବେ ଅସୁର ହେଲା ବିଂଶ ଲୋଚନ ।୫।
ପୁଣ୍ୟଜନ (୩) କଲା ବିନାଶ ପୁଣ୍ୟଜନେ (୪) ସଗରେ ।
ଶୂନ୍ୟ କରି ସ୍ୱର୍ଗ ସ୍ଥାପିଲା ନେଇ ଲଙ୍କା ନଗରେ ।୬।
ଇନ୍ଦ୍ରପ୍ରମୁଖ ବହିର୍ମୁଖ ନିବେଦନ୍ତେ ଏସନ ।
ସୁଦର୍ଶନଧର ତାହାଙ୍କୁ ପ୍ରଦାନି ସୁ-ଦର୍ଶନ ।୭।
କହିଲେ ବହିକି କାହିଁକି ଏଡ଼େ ବର ପ୍ରଦାନି ।
ସହି କଷ୍ଟ ସ୍ୱୟଂ ମହୀରେ କହି ହେଉଛ ଦାନୀ ।୮।
ଧିଷଣ (୫) ଭୀଷଣ ଦଶାସ୍ୟ କଷଣ ବି-ଭୀଷଣ ।
ବିଷଣ୍ଣ ହେଲେଣି ତା ଦ୍ୱାରୁ ରକ୍ଷା କର ପକ୍ଷଣ ।୯।
ଶଶାଙ୍କଙ୍କ ଦଶା ଭାଷାରେ କେ କହିବ ସଂସାରେ ।
ନିଶାରେ ଆଲୋକ ପ୍ରସାରି ହେଉ ନାହିଁ ଆଶାରେ ।୧୦।
ଭବଶାଖୀ ଭବ ପାବକ ଶାବକଙ୍କ ସେବକ ।
ତାଣ୍ଡବେ ଦ୍ୱିପଞ୍ଚ ମୁଣ୍ଡକୁ ତୋଷନ୍ତି ତ୍ରି-ଅମ୍ବକ ।୧୧।
ଜନ୍ମଙ୍କ ଭାଗ୍ୟରେ ଘଟିଛି ତା'ର ବସନ-କଷ୍ଟ ।
ଅଶନି ପଡ଼ିଲି ମସ୍ତକେ କାମ ହୋଇଲେ ଭସ୍ମ ।୧୨।
ଋତୁଏ ମୃତବତ୍ ହେଲେଣି ଯାତୁଧାନ ତ୍ରାସରେ ।
ମଧୁରି ମଧୁ-ମୃଦୁଳ ଗନ୍ଧ ହୁଏ ବାସରେ ।୧୩।
ବଳାହାରେ ବଳାଗ୍ରଭଙ୍କ ମାଳା ଗୁନ୍ଥାଏ ମନ୍ଦ ।
ବିଳାସଭବନେ ପବନ ଗନ୍ଧ କରନ୍ତି ମନ୍ଦ ।୧୪।

---

* ଅରିଦରକର—ଚକ୍ରଶଙ୍ଖକର.

(୧) ବିନାୟକାସନ—ଗରୁଡ଼ାସନ, (୨) ବିନାୟକ—ଅନ୍ତରାୟ,
(୩) ପୁଣ୍ୟଜନ—ରାକ୍ଷସ, (୪) ପୁଣ୍ୟଜନ—ସଜ୍ଜନ, (୫) ଧୀଷଣ—ବ୍ରହ୍ମା ।

ଦଣ୍ଡଧର-ଦଣ୍ଡ ପୂଣ୍ଡରୀକାକ୍ଷ ତୁଣ୍ଡେ ନ ଧର ।
ଅଣୁପାଇଁ ଘାସ କାଠନ୍ତି ପରମାଣ ଭୂଧର । ୧୫ ।
ଧାତା ତା ପୂତପୌତ୍ରଙ୍କର ଅଟନ୍ତି ଅଧ୍ୟାପକ ।
କଥାଟିରେ ତ କହୁ ନୁହଇ ବ୍ୟଥା ସ୍ୱର୍ଗାଧିପଙ୍କ । ୧୬ ।
ହସି ହୃଷୀକେଶ ଭାଷିଲେ ବସିଥାଅ ସୁଖରେ ।
ବର୍ବର କର୍ବୁର କର୍ବୁରପ୍ରସ୍ଥ ନାଶିବି ଖରେ । ୧୭ ।
ଗରୁଡ଼ରେ ଯାଇ ତୁମ୍ଭର ଗରୁ ଡର ହରିବି ।
ଅରି ଦ୍ୱାରା ଅରି ଦର(୧)କୁ ବିପରୀତ କରିବି । ୧୮ ।
ଦ୍ରୁହଣ(୨) କହିଲେ ନୋହିଲେ ଆପଣ ନର ଦେହ ।
ଅମରେ ସମରେ ପାମରେ ମାରିବାର ସନ୍ଦେହ । ୧୯ ।
ନଳିନଲୋଚନ ବଚନ ରଚନ ହେ ଦଇବ ।
ଜନମିବ କାହିଁ ଜନନୀ ଜନକ କେ ହୋଇବ ? । ୨୦ ।
ବେଧା କହିଲେ ଅଯୋଧ୍ୟାରେ ମେଧାବୀ ଯୋଦ୍ଧାବର ।
ଶୁଦ୍ଧ-କୀର୍ତ୍ତି ବୁଧପ୍ରବର ଦଶରଥ ନୃବର । ୨୧ ।
ଅଦିତି କୌଶଲ୍ୟା କଶ୍ୟପ ଦଶରଥ ପୂର୍ବରେ ।
ଥିଲେ ଅବର୍ତ୍ତିତ ହେଉନ୍ତୁ ତାହାଙ୍କର ନିକରେ । ୨୨ ।
ଭକତବତ୍ସଳ ବ୍ୟକତ ପୂର୍ବେ ଦେଇଛୁ ବର ।
ସୁତରୂପେ ଜାତ ହୋଇବି ମୁଁ ତ ହେ ବେଦବର । ୨୩ ।
ବୃଦ୍ଧଶ୍ରବା(୩) ଆଦି ବିବୁଧ ବୋଧ ହେଲେ ବଚନେ ।
ଫେରିଲେ ହରିଙ୍କି ଜୁହାରି ଉରି ବିଂଶଲୋଚନେ । ୨୪ ।
ବାରଣ-ତାରଣ ବିପତ୍ତି ବାରେ କର ହରଣ
ଶରଣ କରଣ ଗୋକୁଳାନନ୍ଦ ପଦ୍ମଚରଣ । ୨୫ ।

—✳—

(୧) ଦରର ବିପରୀତ—ରଦ, ଅର୍ଥାତ୍ ଚ୍ଛେଦ ବା ଦୂର କରିବା ।
(୨) ଦ୍ରୁହଣ—ବ୍ରହ୍ମା । (୩) ବୃଦ୍ଧଶ୍ରବା—ଇନ୍ଦ୍ର ।

## ଚତୁର୍ଥ ଛାନ୍ଦ—ରାଗ ମଙ୍ଗଳଗୁଜ୍ଜରୀ

### ଆଦ୍ୟ ଯମକ ।

ବର ଜନମାନେ ମନ୍ଦା ମଜାଅ ତୁରିତ ।
ବରଜନ କର ପାପ ଶୁଣି ଏ ଚରିତ । ୧ ।
ବରଷ ବାର ପର୍ଯ୍ୟନ୍ତ ଚମ୍ପାବତୀ ପୁରେ ।
ବରଷିଲ ନାହିଁ ନୀର ଭୂସୁର ଶାପରେ । ୨ ।
ବିରସ ହେଲେ ସେ ଲୋମପାଦ ନରପତି ।
ବିରସ ହେବାରୁ ଦୁଃଖ ଲଭି ପ୍ରଜାପନ୍ତି । ୩ ।
ବୀରବର ଚିତ୍ତ ଚିନ୍ତାନଳ ଦାହ କଲା ।
ବିରକ୍ତ ହୋଇ ନୃପତି ପ୍ରତିକାର କଲା । ୪ ।
ନାଗରୀ ଦେଇ ନଗରେ ଥାଳି ବୁଲାଇଲା ।
ନାଗରୀବୃନ୍ଦ ଜରତୀ ରତୀ ହୋଇ ନେଲା । ୫ ।
ମୁଁ ଆଜେ ଯିବି ବନକୁ ନୃପତିଙ୍କୁ କହି ।
ମୁନି ଯେଉଁଠାରେ ଥିବେ ଅଣିବି ନିଶ୍ଚୟ । ୬ ।
ସରିତରେ ଯିବାକୁ ତ୍ୱରିତ କର ନାବ ।
ସରିବ ନାହିଁ ବିବିଧ ଦ୍ରବ୍ୟ ଦେଇଥିବ । ୭ ।
ରମଣୀ କହିବାରୁ ସନ୍ତୋଷେ ନରଗଣ ।
ରମଣୀୟ କର ନାବ କରିଲେ ନିର୍ମାଣ । ୮ ।
ବିବର୍ଜିତ ଇକାର ଲକ୍ଷଣ ନାକ ନାବ ।
ବିବର୍ଦ୍ଧନ କଲା ସୁରାଳୟ ଶୋଭାଭାବ । ୯ ।
ରମ୍ଭା ଉରୁବଶୀ ଅଛନ୍ତି ସୁରଲୋକରେ ।
ରମ୍ଭା-ଉରୁ ବସି ଅଛନ୍ତି ଏ ନଉକାରେ । ୧୦ ।

---

୯ମ ପଦାଥ—ନାବ ଏହି ବର୍ଣ୍ଣ ଦ୍ୱୟ ମଧ୍ୟରୁ "ବ"ର ତଳ ଶୂନ୍ୟାରେ ଇକାର ଦେଲେ ନାକ (ସ୍ୱର୍ଗ) ପଦ ହେଲା ।
ତେଣୁ ନାବ ସୁରାଳୟ ( ସ୍ୱର୍ଗ ) ଶୋଭାକୁ ବଢ଼ାଇଲା ।
୧୦ମ ପଦାର୍ଥ—ସୁରଲୋକରେ ( ସ୍ୱର୍ଗରେ ) ରମ୍ଭା, ଉର୍ବଶୀ ଅପ୍ସରା ଅଛନ୍ତି । ଏ ନାବରେ ରମ୍ଭା ଉରୁ (କଦଳୀଗଛପରି ଜଙ୍ଘ ଯାହାଙ୍କର) ସ୍ତ୍ରୀମାନେ ବସି-ଅଛନ୍ତି ।

ତରଣୀ ଅଶୋକ ବୃଷା ଧୀବରେ ଶୋଭିତ ।
ତରଣୀ ଅଶୋକ ବୃଷା ଧୀବରେ ବାଧିତ । ୧୧ ।
ଐରାବତ ତାରକ ଅଳକା ବିଦ୍ୟମାନ ।
ଐରାବତ ତାରକ ଅଳକା ଏଥି ଘେନ । ୧୨ ।
ପୟୋଧର ଗନ୍ଧର୍ବ ସୀତାରେ ଦୀପ୍ତିମନ୍ତ
ପୟୋଧର ଗନ୍ଧର୍ବ ସୀତାରେ ଦୀପ୍ତିମନ୍ତ । ୧୩ ।
ବାର ବାର ବାରନାରୀ ବାହାବଲେ ଶୁଭେ
ବାର ବାର ମଙ୍ଗଳସୂଚକ ଗାନ ଶୁଭେ । ୧୪ ।

---

ଦ୍ୟୁମଣିସ୍ତରଣିର୍ମିତ୍ରଶ୍ଚିତ୍ରଭାନୁର୍ବିରୋଚନଃ ଇତ୍ୟମରଃ
ସୁତ୍ରାମା ଗୋତ୍ରଭିଦ୍‌ବଜ୍ରୀ ବାସବୋ ବୃତ୍ରହା ବୃଷା ।

୧୧ଶ ପଦାର୍ଥ—ସ୍ୱର୍ଗ ତରଣୀ (ସୂର୍ଯ୍ୟ) ଅଶୋକ (ଶୋକଶୂନ୍ୟତା) ବୃଷା (ଇନ୍ଦ୍ର) ଧୀବରେ (ଧୀମନ୍ତ) ଅର୍ଥାତ୍ ଦେବତାମାନଙ୍କଦ୍ୱାରା ଶୋଭିତ ।

ସ୍ତ୍ରୀୟାଂ ନୌ ସ୍ତରଣିସ୍ତରିଃ ( ଇତ୍ୟମରଃ )
କଦଳୀ ବାରଣବୁଷା ରମ୍ଭା ମୋଚାଂଶୁମତ୍ଫଳା ।
କୈବର୍ତ୍ତେ ଦାସଧୀବରୌ ( ଇତ୍ୟମରଃ )

ତରଣୀ ( ନାବ ) ଅଶୋକ ଗଛ ବୃଷା ( କଦଳୀଗଛ) ଧୀବରେ (କେଉଟଦ୍ୱାରା ଶୋଭମାନ)

୧୨ଶ ପଦାର୍ଥ—ସ୍ୱର୍ଗ, ଐରାବତ ( ହାତୀ ) ତାରକ (ଜାଣକରି) ଅର୍ଥାତ୍ ଭଗବାନ୍, ଅଳକା ( କୁବେର ପୁର ) ଦ୍ୱାରା ଶୋଭମାନ ।

ଐରାବତୋ ନାଗରଙ୍ଗେ ନାଦେୟୀ ଭୂମିଜମ୍ବୁକା (ଇତ୍ୟମରଃ) ତାରକ ମନ୍ତ୍ର, ତାରକ ଦୈତ୍ୟ ଭେଦେ ପୁଣି ତାରକ ନାବିକ (ଗୀତାଭିଧାନ) ଏ ନାବରେ ଐରାବତ (ନାଗରଙ୍ଗ) ତାରକ (ନାବିକ) ଅଳକା (ସ୍ତ୍ରୀମାନଙ୍କର ମସ୍ତକର ଅଳଙ୍କାର ବିଶେଷ) ଅଛନ୍ତି ।

୧୩ଶ ପଦାର୍ଥ—ପୟୋଧରେ, ନାରିକେଳେ ମେଘେ ସ୍ତନସମୁଦ୍ରୟୋଃ
( ଶବ୍ଦବଲ୍ଲରୀ )

ଗନ୍ଧର୍ବୋଽଶ୍ୱପତୌ ଦେବେ; କୋକିଲେ ବନ୍ୟଗାୟନେ(ଶବ୍ଦବଲ୍ଲରୀ)
ସୀତା ଲକ୍ଷ୍ମୀଃ; **ସୀତା ସୀତା**, ସୀତା ଶସ୍ୟାଧିଦେବତା (ଧ୍ୱନିମଞ୍ଜରୀ)
ସ୍ୱର୍ଗ, ପୟୋଧର (ମେଘ) ଗନ୍ଧର୍ବ (ସ୍ୱର୍ଗଗାୟକ) ସୀତା (ଲକ୍ଷ୍ମୀଙ୍କଦ୍ୱାରା ଶୋଭିତ) ।

ହରଣୀ ହରଣ କେଉଁଠାରେ କ୍ରୀଡ଼ାରତ
* ହରଣୀ—ହର ଶିକାର କରନ୍ତି ନରତ ।୧୫।
୧ ସୁକରଜା ୨ ଶୂକରଜାତଙ୍କୁ ଦେଖି ତୋଷ
୩ ଶୁକ୍ତରଜା ଶାସ୍ତ୍ର ଭୂଷା ଶ୍ରବଣେ ଉଲ୍ଲାସ ।୧୬।
ନାଗ ନାଗୁଣୀ ଖେଳନ୍ତି ଫୁଟୁକାର ଗର୍ଜି
୪ ନାଗ ନାଗୁଣୀ ବିଳାସ ରତ ଭୃତ୍ୟ ବର୍ଜି ।୧୭।
ଶଶାଯୂଥ ତଟେ ପାନ କରୁଛନ୍ତି ବନ
ଶଶାଙ୍କବଦନା ଦେଖି ହରଷିତ ମନ ।୧୮।
କୂଳରେ ନକୁଳକୁଳ ବିଳାସ-ସଂକୁଳ
କୁଳହୀନା ବାରନାରୀ ଦେଖି ପ୍ରେମେ ଭୋଳ ।୧୯।
ଶୋଭାଞ୍ଜନ କମଳାକ୍ଷୀର ଚ୍ୟୁତ ଅଶନ
ଶୋଭାଞ୍ଜନ କମଳା କ୍ଷୀର ଚ୍ୟୁତ ଅଶନ ।୨୦।
ବନେ ଘନ ଅଶୋକ ଶ୍ୟାମା ବିଟପୀ ଜାଇ
ବନେ ଘନ ଅଶୋକ ଶ୍ୟାମା ବିଟପୀ ଯାଇ ।୨୧।

---

ନାଦ—ଷଟ୍‌ପ୍ରୁାଧରେ (ନର୍ତ୍ତକ) ଗନ୍ଧର୍ବ (କୋକିଳ) ଗୀତାରେ
(ଏହିପ୍ରକାରେ ବାଦ୍ୟ) ମନ୍ଦ୍ରଦ୍ୱାରା ଶୋଭିତ ।
* ସିଂହ ଓ ସିଂହ
୧ ଉତ୍ତମ ନଖବାଣିଙ୍କୁ ୨ ବରାହ ୩ ଶୁଆ ଚେହ୍ରା ୪ ହାତୀ ହାତୁଣୀ
୨୦ଶ ପଦାର୍ଥ—ବନ ମଧ୍ୟରେ ଶୋଭାଞ୍ଜନ (ସଜନା) କମଳା, କ୍ଷୀର
ଚ୍ୟୁତ (ଅମ୍ବ) ଅଶନ ଗଛ ଦେଖି ଶୋଭାଞ୍ଜନ
(ଅଞ୍ଜନଦ୍ୱାରା ଶୋଭିତ) କମଳାକ୍ଷୀରେ (ପଦ୍ମାକ୍ଷୀ) ମାନଙ୍କର
ଅଶନ (ଭୋଜନ) ଚ୍ୟୁତ (ତ୍ୟକ୍ତ) ହେଲା ।
ଅର୍ଥାତ୍ ସେହି ବନରୁ ଦେଖି ସେମାନଙ୍କୁ ଭୋକ ଶୋଷ କଲା ନାହିଁ
୨୧ଶ ପଦାର୍ଥ—ଶ୍ୟାମା ପାଳଟେଶ୍ୟୀ ତୁ ସୁଟପର୍ଣିକା ଇତ୍ୟମରଃ
ବୃକ୍ଷୋ ମହୀରୁହଃ ଶାଖୀ ବିଟପୀ ପାଦପସ୍ତରୁ ଇତ୍ୟମରଃ
ବନରେ ଅଶୋକ, ଶ୍ୟାମା (ଛତ୍ରୁଡ଼ୀ) ଜାଇଗଛ ଘନ
(ନିବିଡ଼) ହୋଇଅଛି ।
ବନେ (ବନରେ) ଘନ (ଚଞ୍ଚଳ) ଅଶୋକ (ଶୋକଶୂନ୍ୟ)
ହୋଇ ବିଟପୀ (ବେଶ୍ୟା) ଯାଆନ୍ତି ।

ପୁରୁଷ କରଜ ଗ୍ରାହୀ କତକରେ ପୂର୍ଣ୍ଣ
ପୁରୁଷ କରଜଗ୍ରାହୀ କତବରେ ପୂର୍ଣ୍ଣ । ୨୨ ।
ଶଙ୍ଖିନୀ ବୟସ୍ଥା ଗଣିକା ଏ ପ୍ରଫୁଲ୍ଲିତ ।
ଶଙ୍ଖିନୀ ବୟସ୍ଥା ଗଣିକାଏ ପ୍ରଫୁଲ୍ଲିତ । ୨୩ ।
କୁଟିଳ-କେଶୀଏ ଏହାପର ଦେଖିଯାଇ ।
କୁଟୀର ଉପକଣ୍ଠରେ ପ୍ରବେଶିଲେ ଯାଇ । ୨୪
ବିଭାବରୀ ନାଶେ ବିଭାବସୁ ବିଭାସିତ ।
ବିଭାଣ୍ଡକ ତପୀ ତପସ୍ଥାନେ ଉପସ୍ଥିତ । ୨୫ ।
ବିଭାବ ବିଯୁକ୍ତ ହୋଇ ବିଭା ବ ମଣ୍ଡିତ ।
ବିଭାବରୀଶ-ବଦନା ଗମନ ଉଦ୍ୟତ । ୨୬ ।
ତରୁଣବୟସ୍କ ଋଷି ତରୁତଳେ ଥିଲେ
ତରୁଣୀଙ୍କି ମୁନି ମଣି ପ୍ରଣାମ ବହିଲେ । ୨୭ ।
ବାରଣଗଣ୍ଡ ମଣ୍ଡରେ ଅଣ୍ଡ ଭ୍ରାନ୍ତ ପ୍ରାପ୍ତ ।
ବାରଣ ନ କରି ତାଙ୍କୁ କଲେ କୋଳାଗତ । ୨୮ ।

---

୨୨ ଶ ପଦାର୍ଥ—ପୁନ୍ନାଗେ ପୁରୁଷ ସ୍ତୁଙ୍ଗଃ କେଶରୋ ଦେବବଲ୍ଲଭଃ ଇତ୍ୟମରଃ
ଚିରବିଲ୍ୱେ ନକ୍ତମାଲଃ କରଜଶ୍ଚ କରଞ୍ଜକେ ଇତ୍ୟମରଃ
ଅଥ କପିତ୍ଥେସ୍ୟୁର୍ଦଧିତ୍ଥ ଗ୍ରାହିମନ୍ମଥାଃ ଇତ୍ୟମରଃ
ଉନ୍ମତ୍ତଃ କିତବୋ ଧୂର୍ତ୍ତୋ ଧତ୍ତୁରଃ କନକାହ୍ୱୟଃ ଇତ୍ୟମରଃ
ସେ ବନ ପୁରୁଷ [ ପୋଲାଙ୍ଗ ] କରଜ (କରଞ୍ଜ) ଗ୍ରାହୀ
( କଇଥ) କତବ (ଦୁଦୁରା ) ରେ ପୂର୍ଣ୍ଣ ହୋଇଅଛି ।
ପୁରୁଷଙ୍କର କରଜ [ନଖ] କ୍ଷତ ଗ୍ରହଣ କରୁଥିବା ବେଶ୍ୟା-
ମାନେ କତବ [କପଟରେ] ପୂର୍ଣ୍ଣ ହୋଇ ଅଛନ୍ତି ।
୨୩ ଶ ପଦ—ଅର୍ଥ—ଶଙ୍ଖିନୀ ଚୋରପୁଷ୍ପୀ ସ୍ୟାତ୍ ଇତ୍ୟମରଃ
ଅଭୟାବ୍ୟଥା ପଥ୍ୟା ବୟସ୍ଥା ପୂତନାଽମୃତା ଇତ୍ୟମରଃ
ଗଣିକା ଯୂଥିକାମ୍ବଷ୍ଠା ଇତ୍ୟମରଃ
ଶଙ୍ଖିନୀ—[ ଶ୍ୱେତ ପୁନ୍ନାଗ ] ବୟସ୍ଥା ( ହରିଡ଼ା ) ଗଣିକା (ଯୂଈ) ଏମାନଙ୍କୁ
ପ୍ରଫୁଲ୍ଲିତ ହେବାର ଦେଖି ଶଙ୍ଖିନୀଜାତୀୟା ବୟସ୍ଥା (ବୟଃ-
ପ୍ରାପ୍ତା) । ଗଣିକାଏ (ବେଶ୍ୟାମାନେ) ଆନନ୍ଦିତା ହେଲେ ।

ପରିଚର୍ଯ୍ୟା ତାହାଙ୍କର ଯଥାବିଧି କଲେ ।
ପରିବ୍ବରଙ୍କ ସାମନ୍ତ ପାଶେ ଯଥା ଥିଲେ । ୨୯ ।
ପଶଚଯ୍ଯ ପଚୁରିଲେ ତାଙ୍କ ମୁନିବର ।
ପରିତୋଷ କରି କହ କାନ୍ତର କି ନର । ୩୦ ।
କାମିନୀଚଯ୍ଯ ଭାଷିଲେ ଶୁଣ ତପୋବନ୍ତ ।
କାମୀ ନଚଯ୍ଯ ଅମ୍ଭର ଅଟନ୍ତି ଭଜତ । ୩୧ ।
ବନେ ଥାଅ ତୁମ୍ଭେ ଅମ୍ଭେ ବପୂର୍ବଭକାରେ୧ ।
ବନେଚୁଦନେନ୍ଦ୍ରା କହିଲେ ଏ ପରକାରେ । ୩୨ ।
ଦଇତ-ପୀଡ଼ାରେ ତୁମ୍ଭେ ପ୍ରାପ୍ତ ହୁଅ କ୍ଳେଶ ।
ଦଇତ୨ ପୀଡ଼ା ଅମ୍ଭର ନ ଥାଏ ତ ଲେଶ । ୩୩ ।
ପାଣି ଦାନେ ଶମ୍ଭୁ ଅରାଧନା କର ତୁମ୍ଭେ ।
ପାଣିଦାନେ କୁଚ-ଶମ୍ଭୁଦ୍ୱୟ ପୂଜ୍ୟା ଅମ୍ଭେ । ୩୪ ।
ପ୍ରତୀକ୩ରେ ଅମ୍ଭେ ବହୁଅଛୁଁ ଦେବତାଙ୍କୁ ।
ପ୍ରତ କରେ ଅର୍ଥଲଭେ ସମର୍ପୁ ତାଙ୍କୁ । ୩୫ ।
ନାରିକୁଳ ଏହା କହି ହେଲେ ତୋଷମନ ।
ନାରିକେଳ ବନ ଦେଲେ କରିବାକୁ ପାନ । ୩୬ ।
ରଜନୀକରବଦନୀ ରଷିଙ୍କ ଗାତ୍ରରେ ।
ରଜନୀକର-ରଜ-ନିକର ଲେପିତରେ । ୩୭ ।
ଅନୁଭବ କରି ସୁଖ ତପୀ ହେଲେ ବୋଧ ।
ଅନୁକୂଳ କରିବାକୁ କଲେ ଅନୁରୋଧ । ୩୮ ।
ଖଣ୍ଡପରଶୁ-ପରମୋହିନୀ ଆଦିକରି ।
ଖଣ୍ଡପରଶୁ ପରଶୁ ଅସିଲେ ବାହାରି । ୩୯ ।
ପିତୃପ୍ରସୂ(୪) ସମାଗତ ମିତ୍ର ଅସ୍ତମିତ ।
ପିତୃପ୍ରସୂ କଲ୍ପ ବ୍ରହ୍ମାଣ୍ଡକ ଉପସ୍ଥିତ । ୪୦ ।
ଭାଷିଲେ ଏଠାକୁ ଅସିଥିଲ କେ ନନ୍ଦନ ।
ଭାସି ଯାଉଛୁ ସୁବାସ-ସାଗରେ ଏ ସ୍ଥାନ । ୪୧ ।

---

(୧) ବନେ—ଏହି ଶବ୍ଦର 'ବ' ପୂର୍ବରେ ଭ ଯୋଗ କଲେ 'ଭବନେ' ହେବ। (୨)ଦୟିତ—ସ୍ୱାମୀ, (୩)ପ୍ରତୀକ—ଶରୀର ।[୪] ପିତୃପ୍ରସୂ—ସନ୍ଧ୍ୟା ।

ତପସ୍ଥାନକୁ ଅର୍ପଣ କରନ୍ତେ ପ୍ରମାଣ ।
ତପସ୍ୱୀ ଏଠାକୁ ଆସିଥିଲେ ଦୁଇଜଣ । ୪୨ ।
ଅଜନମୁ ଯାହା ଦେଖି ନ ଥିଲା ନୟନ ।
ଆଜ ମୁଁ ଦର୍ଶନ କରି ହେଲି ଭାଗ୍ୟବାନ । ୪୩ ।
ଅବଧାନ କର ପିତା ବଡ଼ ଅସମ୍ଭବ ।
ଅବୟବୁଁ ତାହାଙ୍କର ଦେବତା ସମ୍ଭବ । ୪୪ ।
କରଡ଼ା ବିଶେଷ ଅମ୍ଭମାନଙ୍କ ଶଙ୍କର ।
କରକୁ କୋମଳ ସେହୁ ସ୍ପର୍ଶ ସୁଖକର । ୪୫ ।
ଡାକିଣୀ ଗୁଡ଼ାଏ ସେ ତ ତପସ୍ୱୀ ନୁହନ୍ତି ।
ଡାକି ନେଇ ଜନସ୍ଥାନେ ମନୁଷ୍ୟ ଭକ୍ଷନ୍ତି । ୪୬ ।
ବାରଣ କରୁଛୁ ବାପ ମୋର ବୋଲ କର ।
ବାରତାରେ ବିଶ୍ୱାସ ନ ଯିବୁ ତାହାଙ୍କର । ୪୭ ।
ବିଜୟ କଲେ ତପସ୍ୱୀ କହି ତପସ୍ଥାନେ ।
ବିଜନତା ଦେଖି ବାହାରିଲେ ନାରୀମାନେ । ୪୮ ।
*ଦରଶ ପରି ମଳିନ ଥିଲା ମନଚିତ୍ତ ।
ଦରଶନ କରି ହେଲେ ପୌର୍ଣ୍ଣମାସୀ ମତ । ୪୯ ।
ସୁରଭି ପଙ୍କରେ ଯଥା ଗେଡ଼ାଏ ଗର୍ବୀଣ ।
ସୁରତରେ ବାହାରିଲେ ତଥା ମୁନିଗଣ । ୫୦ ।
ତରତରେ ତରଣୀରେ ତରୁଣୀ ବସିଲେ ।
ତରଙ୍ଗିଣୀରେ ଧୀବରେ ଧୀରେ ବାହାରିଲେ । ୫୧ ।
ଚମ୍ପାବତୀ ସମୀପବର୍ତ୍ତୀ ହୁଅନ୍ତେ ନାବ ।
ଚମ୍ପାଗେଶ୍ୱ ଋଷ୍ୟଶୃଙ୍ଗେ ଜଣାଇଲେ ସର୍ବ । ୫୨ ।
ଅସାରେ ଏ ସଂସାର ରଖନ୍ତୁ ଦୁଷ୍ଟ୍ୟବନ† ।
ଅଗାରେ ମୁଦିର ବ୍ୟାଜ ବରଷିଲେ ବନ । ୫୩ ।
ସରସୀ ସର୍ବ ସରସ ସରସ ହୋଇଲା ।
ସରଣୀରେ ସମ୍ଭର୍ବରେ ନୃପ ବାହାରିଲା । ୫୪ ।

* ଦରଶ—ଅମାବାସ୍ୟା । * ଦୁଷ୍ଟ୍ୟବନ—ଇନ୍ଦ୍ର

ବନ୍ଦ ମୁନିଙ୍କ ପଯୁରେ ଅବାସକୁ ନେଲେ ।
ବନ୍ଦୀମାନେ ସମ୍ମୁଖରେ ସ୍ତବ ପାଠ କଲେ । ୫୫ ।
ସମ୍ଭାବନା କଲେ ତାଙ୍କୁ ବିବଧ ପ୍ରକାରେ ।
ସମ୍ଭାର ଯା କରିଥିଲେ କିଏ ବର୍ଣ୍ଣିପାରେ । ୫୬ ।
ବିଭାଣ୍ଡକ ସୁତ କହ ଚମ୍ପାବତୀଶଙ୍କୁ ।
ବିଭା ହେଲେ ଶାନ୍ତଶୀଳା ଶାନ୍ତା କୁମାରୀଙ୍କୁ । ୫୭ ।
ଜମଭ୍ରାନ୍ତ ନାଶ ଅର୍ଥେ ଚିନ୍ତି ରମାକାନ୍ତ ।
ଯମକ ଅଦ୍ୟେ ଗୋକୁଳାନନ୍ଦ ରଚେ ଗୀତ । ୫୮ ।

---

ପଞ୍ଚମ ଛାନ୍ଦ ।

( ରାଗ—ଶଙ୍କରାଭରଣ )

ସୁର-ଜ୍ୟେଷ୍ଠ ଶ୍ରେଷ୍ଠ ଶିଳ୍ପ ପରିକାଷ୍ଠା ଦ୍ରଷ୍ଟା
ଅଯୋଧ୍ୟା ରାଷ୍ଟ୍ର କଷ୍ଟାରେ ହୋଇଥିଲା ଶ୍ରେଷ୍ଠ,
ଯୁକ୍ତ ରତନନିଚୟ,
ବୈଜୟନ୍ତୀ ଜିଣିବା ବଇ ଜୟନ୍ତ ଜୟ । ୧ ।
ରତ୍ନ-ସାନୁ ତୁଲ୍ୟ ରତ୍ନ ମାନୁଛି ଯତନେ
କିରଣଗଣ ସତେଜ ସରିତ ପତନେ,
ଯେଉଁ ଶୋଭା ହୁଏ ଜାତ,
ସୁନାସୀର-ପୁର୧ ନପାରେ ହୁଏ ପରାହତ । ୨ ।
ସାକେତପୁର୨ ଏକେ ତ ଲୋକେ ସୁବିଖ୍ୟାତ ।
ନାକେ ସ୍ଥିତ ଲୋକେ ଲୋକନରେ ପରିତୃପ୍ତ,
ପାପ ସନ୍ତାପ ବିହୀନ,
ପୁଣ୍ୟଜନ ପଣ୍ୟଦ୍ରବ୍ୟ ଧନ-ଧାନ୍ୟପୂର୍ଣ୍ଣ । ୩ ।
ସୁରସଖା ଶୂରବର ସୂର୍ଯ୍ୟବଂଶ ଜାତ
ଅସୁରଙ୍କର କଣ୍ଟକ ଭୂସୁର-ଭକତ,
ନାରାୟଣପରାୟଣ,
ବିଶେଷ ପ୍ରଶଂସ୍ୟ ଦଶରଥ-ନରରାଣ । ୪ ।

---

(୧) ସୁନାସୀରପୁର—ଇନ୍ଦ୍ରପୁରୀ, (୨) ସାକେତପୁର—ଅଯୋଧ୍ୟାପୁର ।

ପୂର୍ବ-ନୀତିଶେଷେ ପ୍ରଜା କରନ୍ତି ପାଳନ ।
ବୃଦ୍ଧ ଅରି ମିତ୍ର ପରି କରନ୍ତି ସମ୍ମାନ,
ସର୍ବଭକ୍ତ ସର୍ବବନ୍ଦ୍ୟ,
ସନ୍ତାନ-ସନ୍ତାପେ * ସନ୍ତାପିତ ସଦା ହୃଦ ।୫।
ମିଷ୍ଟଭାଷୀ ଶିଷ୍ଟ ଶ୍ରେଷ୍ଠ ମହର୍ଷି ବଶିଷ୍ଠ
ଭଣି ନର ଇଷ୍ଟ କଷ୍ଟ ବିଳୋକ ଗରିଷ୍ଠ,
କର ପୁତ୍ରେଷ୍ଟି ଯଜ୍ଞ,
ଅଣାଇ ଲୋମପାଦରାଜ୍ୟରୁ ଋଷ୍ୟଶୃଙ୍ଗ ।୬।
ବାଣୀ ଶୁଣି ନୃପମଣି ମଣି ସୁଧା ଭୁଞ୍ଜି
ଦ୍ୱିଜେ ଘେନି ଚମ୍ପାବତୀ ରାଜ୍ୟ ବଜେ ନାଜେ
ହାଟ ଘାଟ ନଷ୍ଟ କରି,
ଭାଟ ନାଟକାରି-ଥାଟ ବାଟେ ଛନ୍ତି ପୂରି ।୭।
ରଥରେ ପଥରେ ଯାଇଁ ସେଠାରେ ମିଳିଲେ
ଶାନ୍ତା ଶାନ୍ତାଭର୍ତ୍ତା ସଙ୍ଗେ କଥାବାର୍ତ୍ତା ହେଲେ,
ପୂର୍ବ ନ ଥିବା ଖବର,
ଜଣାଇ ମଣାଇ ଅଣାଇଲେ ତପୀବର ।୮।
ବାଜିମେଧ ଯଜ୍ଞକାର୍ଯ୍ୟ କଲେ ଅନୁଷ୍ଠାନ
ଅଶରେ ଶୁଚରେ ଶୁଚିରେ † ଘୃତ ପ୍ରଦାନ,
କରି ତପସ୍ୱୀପ୍ରବର,
ପ୍ରାର୍ଥନା କଲେ ନୃପତ ମନୋଭୀଷ୍ଟ ବର ।୯।
ବ୍ରତାଗ୍ନିରଣୀ ହରିଣୀନେତ୍ରା ତିନି ରାଣୀ-
ହସ୍ତେ ହୁତ ଅବଶେଷ ଲେଶ ଦେଲେ ଅଣି ।
ସେବ ଶନ୍ତି ଅଧମୂଳ,
ଭାବ ଭାବ ଭାବୀ ଶୁଭ ଭାବନା ସକଳ ।୧୦।
ଦ୍ୱିଜଙ୍କୁ ଭୋଜନ ଦେଲେ ଅଜଙ୍କ ନନ୍ଦନ
ଋଷିଙ୍କୁ ତୋଷିଲେ ଦସି ପ୍ରଦାନ ଅଜିନ,
କରାଇଲେ ଧନ ଲୁଟି,
କୁଣିତ ନୋହି ପଣ୍ଡିତ୍ତ କଣ୍ଠେ ଖଣ୍ଡ କଣ୍ଡି ।୧୧।

---

* ସନ୍ତାନ ସନ୍ତାପେ—ସନ୍ତାନ ବାହୁଡନେ । † ଶୁଚିରେ—ଅଗ୍ନିରେ ।

କୌଶଲ୍ୟାଙ୍କଠାରୁ ଆବିର୍ଭୂତ ହେଲେ ରାମ
କଇକେୟୀଙ୍କ ଗର୍ଭରୁ ଭରତ ଜନମ,
        ଲକ୍ଷଣ-ଯୁକ୍ତ ଲକ୍ଷ୍ମଣ
ଶତ୍ରୁଘ୍ନ ସୁମିତ୍ରାଠାରୁ ଜାତ ହେଲେ ଜାଣ । ୧୨ ।
ବଜାର କର୍ମି ଯାଉଛୁ ବିବିଧ ବଜାରେ
ମଜାରେ ଅଛନ୍ତି ଲୋକ ହଜାରେ ହଜାରେ,
        ଖଞ୍ଜା ଦେବାଳୟେ ପୂଜା,
ସଜାଭୋଗୀ ପ୍ରଜା ଛାଡ଼ି ଦେଉଛନ୍ତି ରାଜା । ୧୩ ।
ଚଣ୍ଡୀ-ମନ୍ଦିରେ ପଣ୍ଡିତ ହୋଇ ଚୁଣ୍ଡୀଭୂତ
ମୁଣ୍ଡିଆ ମାରନ୍ତି ଦଣ୍ଡ ଖଣ୍ଡିବା ନିମିତ୍ତ,
        ପୂଜା ଗଜା ଖଜାମଣ୍ଡା,
ଗଣ୍ଡା ଗଣ୍ଡା ପଣ୍ଡା ଲାଗି କରୁଛନ୍ତି ଧନ୍ଦା । ୧୪ ।
ଧାଇଁ ଧାଇଁଛନ୍ତି ନେବାପାଇଁକି ବଧାଇ
ନୃପତି ସମ୍ପତ୍ତି ଦିଅନ୍ତି ଭୂପତି ହୋଇ,
        ଅଣ୍ଟିଲ ପ୍ରକାରେ ବାନ୍ଧି
ଅଣ୍ଟି ଅଣ୍ଟିକର ସୁନା ରୁପା କଲେ ଗଣ୍ଠି । ୧୫ ।
ଜଳ୍ପିତ କଳ୍ପକଳାପ କଲେ ସଙ୍କଳ୍ପ
କଳ୍ପ କଳ୍ପନାରେ ଗଳ୍ପ ନ କରିବେ ଅଳ୍ପ,
        ଅନୁଭବୀ ବ୍ୟତିରେକେ,
ମନୁ ଗର୍ଭି ସେ ଉତ୍ସବ ବର୍ଣ୍ଣିପାରିବ କେ । ୧୬ ।
ଉତ୍ପନ୍ନ ହେଉଁ ତପନକୁଳେ ରାମଚନ୍ଦ୍ର
ବୃନ୍ଦାରକବୃନ୍ଦ ହୃଦ-କୁମୁଦ ପ୍ରମୋଦ,
        ଶଚୀ ସଙ୍ଗେ ଶଚୀପତି,
ନାଚିଲେ ଅଚିରେ ପାଞ୍ଚି ରାବଣ-ଦୁର୍ଗତି । ୧୭ ।
ଦଶାସ୍ୟର ଦଶା ଭାଷାରେ ଠିକ ଷଦ୍ୱପାରେ
କାକ ଗିଧିଲେ ବସାରେ ନ ରହି ନିଶାରେ,
        ଭସ୍ମରାଶି ହେଲା ବୃଷ୍ଟି,
ବୃକଙ୍କ ଦାନ୍ତ ଉଠିଲା ଗୃଧ୍ର କଲେ ଗୋଷ୍ଠୀ । ୧୮ ।

ରାଜିରେ ମନ୍ତ୍ରୀଙ୍କି ଡାକି ପୁଚ୍ଛିଲ କାରଣ
ରାଜ୍ୟରେ ଏ କାର୍ଯ୍ୟ କିମ୍ପା ହୁଏ ଅକାରଣ,
ଶୁଣି ଭଣି ବିଭୀଷଣ,
ଅପଣ ଗୀର୍ବାଣଗଣେ ଦେବାରୁ କଷଣ । ୧୯ ।
ଦାନବ ଦଳନପାଇଁ ମାନବରୂପରେ
ବୈକୁଣ୍ଠ ତେଜି ବୈକୁଣ୍ଠ* ଜାତ ମର୍ତ୍ତ୍ୟପୁରେ
ହାସ୍ୟ କରଣି ଦଶାସ୍ୟ,
ଭାଷିଲ ନାଶିପାରେ କି ମୋ ବଂଶ ମନୁଷ୍ୟ । ୨୦ ।
ଯଥାରୀତିଙ୍କି ଭୂପତି କରି ଏକତ୍ରିତ
ସୁତଙ୍କର ଜାତକର୍ମ କଲେ ଯଥୋଚିତ,
ବିଂଶ ଏକ ଦିବସାନ୍ତେ,
ନାମକୁ ପ୍ରଦାନ କଲେ ନରେଶ ବିହିତେ । ୨୧ ।
ରମଣୀୟ ମୂର୍ତ୍ତି ଦେଖି ଦେଲେ ରାମ ନାମ
ରଘୁବଂଶଜ ହେତୁରୁ ରାଘବ ରଘୂତ୍ତମ,
ଦଶରଥ ଯେଣୁ ତାତ,
ଦାଶରଥି ନାମ ତେଣୁ ବିହିଲେ ସାକ୍ଷାତ । ୨୨ ।
ଅବିରତ ଶୁଭେ ରତ ହେବେ ଭୁବିରେ ତ
ଭରତ ନାମ ବିହିଲେ କୈକେୟୀଙ୍କ ସୁତ,
ସର୍ବ ସୁଲକ୍ଷଣେ ଜାତ,
ଲକ୍ଷ୍ମଣ ନାମେ ସୁମିତ୍ରା-ପୁତ୍ର ହେଲେ ଖ୍ୟାତ । ୨୩ ।
ଶତ୍ରୁଘ୍ନ ହେବେ ଶତ୍ରୁଘ୍ନ ନାମକୁ ବିହନ୍ତୁ
ମାତୃ ଅନୁସାରେ ବେନି ସୌମିତ୍ରି ବୋଲନ୍ତୁ,
ନାମ ଦେଲେ ଯଥାବିଧି,
ବିଧୁ ଶୁକ୍ଳପକ୍ଷ ବିଧୁପରି ହେଲେ ବୃଦ୍ଧି । ୨୪ ।
ଚାରି ପୁତ୍ରଙ୍କର ଚାରି ଏକ ବର୍ଷ ବାରି
ବ୍ରତୋପଯୁକ୍ତ କାର୍ଯ୍ୟ ସାରି ଦଣ୍ଡଧାରୀ,
ମାହେନ୍ଦ୍ର ସମୟ ଜାଣି,
ବିଦ୍ୟା ଅଧ୍ୟାପନା କଲେ ଅଧ୍ୟାପକ ଆଣି । ୨୫ ।

* ବୈକୁଣ୍ଠ—ବିଷ୍ଣୁ

ଚିନ୍ତ କି ବିରଦା ହେବା ଶାରଦା ବରକୁ
ଦାସୀପରି ବସି ଘଷି ଦିଅନ୍ତି ପାଦକୁ,
ବିଦ୍ୟା ଯାହାଠାରୁ ଜାତ,
ସନ୍ତ ଦେଖି ମାନେ ଗ୍ରନ୍ଥ କଲେ ସେ ଅଦ୍ଭୁତ । ୨୬ ।
ସର୍ବବିଧ ଅସ୍ତ୍ର ଶସ୍ତ୍ର ଶାସ୍ତ୍ରରେ ପ୍ରବୀଣ
ଶକ୍ୟ କାହାର ବାକ୍ୟରେ କରିବ ବଖାଣ,
ସ୍ୱୟଂ ପରଂବ୍ରହ୍ମରୂପୀ
ସଚରାଚର ବ୍ରହ୍ମାଣ୍ଡ ଯା ଉଦରେ ବ୍ୟାପୀ । ୨୭ ।
ପିତୃମାତୃ-ଭ୍ରାତୃଭକ୍ତବତ୍ସଳ ସେ ଗୁରୁ
ଗୁଣାକରଙ୍କର ଗୁଣାକାର ଏକାପରି
ଧୀର ଗିର ସୁମଧୁର,
ଦୀନଙ୍କର ଦୁଃଖ-ତମଦାନେ† ଦିନକର । ୨୮ ।
ଗଜେ ବାଜେ କରି ନାଜେ ରାଜ୍ୟେ ପର୍ଯ୍ୟଟନ
କଣା ପଡ଼ିଲା ପ୍ରକୃତ ପ୍ରକୃତି-ରଞ୍ଜନ,
ଜନେ ତୁଣ୍ଡ ହୋଇ ଦାଣ୍ଡେ,
ମାନ୍ୟ କରି ଧନ୍ୟ ଧନ୍ୟ ପ୍ରକାଶିଲେ ତୁଣ୍ଡେ । ୨୯ ।
ବଳ ବୀର୍ଯ୍ୟ ପରାକ୍ରମ ବନୃବତ ହେଲା
ଜନ ବଦନ-ବହ୍ନିଏ ତାହା ବହିନେଲା,
ଦେଶେ ଦେଶେ ପ୍ରଚୁରିତ,
ହୋଇ ପର ନୃପଙ୍କର ଦର କଲା ଜାତ । ୩୦ ।
ମିତ ରାଜାଙ୍କର ଚିତ୍ତ ପ୍ରଫୁଲ୍ଲିତ ହେଲା
ଅପଚୟ-ଚୟ ଅଯୋଧ୍ୟାରୁ କ୍ଷୟ ଗଲା
ଦୀନ ଗୋକୁଳାନନ୍ଦର
ଥୟ ଚିତ୍ତେ ଲୟ ରହୁ ପୟୋଜପୟର । ୩୧ ।



† ଦାନେ—ଛେଦନେ

## ଷଷ୍ଠ ଛାନ୍ଦ

### ରାଗ—ଆଷାଢ଼ଶୁକ୍ଳ ( ପ୍ରାନ୍ତ ଯମକ )

ମନୁଜମାନେ ଶୁଣ ସବ୍ରଗରେ । ଦନୁଜ ବାଧ୍ନ କରନ୍ତେ ଯାଗରେ
ଅମରେ କହିଲେ ଥାଇ ସ୍ୱର୍ଗରେ । ରାମ ଜନ୍ମିଲେ ଅଯୋଧ୍ୟାନଗରେ
ଅଣି ଯା ବେଗରେ । କୌଣପଙ୍କୁ ନାଶିବେ ସେ ରାଗରେ ।୧।
କନ୍ଦର୍ପି କଣ୍ଡ ହେଲେ ଧ୍ୟାନରେ । କଦ୍ରୂହୁଲରେ ବୁଲି ବନରେ ।
କଜଣପ କରିବେ ନିସୂଦନ । କଜଣଲ୍ୟାଠାରୁ ମଧୁସୂଦନ
ଜନମ ମର୍ତ୍ତ୍ୟରେ । ଜନରୂପରେ ଦେବଙ୍କ ହିତରେ । ୨ ।
ବାଷ୍କର-ଶ୍ରବା ବୁଝୁଙ୍କ ମାରିବେ । ବାଷ୍କପର୨ କଷ୍ଟ ନଷ୍ଟ କରିବେ
ଶିଷ୍ଟ ମିଷ୍ଟ-ଭାଷୀ ଋଷିପ୍ରବର । ତୁଷ୍ଟ ହେଲେ ଭାବି ଭାବୀ ଖବର
ଅଯୋଧ୍ୟା-କଟକେ । ସୁଯୋଗରେ ବାହାରିଲେ ଛଟକେ ।୩।
ବସିଥିଲେ ରାଜା ନିଜ ବାସରେ । ବଶିଷ୍ଠାଦି ଋଷି ଥିଲେ ପାଶରେ
ଦ୍ୱାରୀ ଗୃହ କହିଲେ ନୃପଙ୍କୁ । ବିଶ୍ୱାମିତ୍ର ଅସିବେ ସମୀପକୁ
ବିଶ୍ୱାସ ବଚନ । ବିଶ୍ୱାବସ୍ତୁର କରିବେ ରଚନ । ୪ ।
ଶୁଣି ନରମଣି ମଣି ଚକିତ । ବାଣୀ ନ ଭଣିଲେ ହେଲେ ଶଙ୍କିତ
ହରଶ୍ଚନ୍ଦ୍ର ସଦୃଶ ତପୋଧନ । ହରିବେ କି ମୋର ଏ ରାଜ୍ୟଧନ
ଏମନ୍ତ ବିଗୃହ । ସୁମନ୍ତ ଭେଟାଇଲେ ତପଗୃହୀ । ୫ ।
ଯିତ୍ତପତ ଆଗେ କଲେ ବ୍ୟକତ । ଦାଣ୍ଡ-ପୂଜ କଲେଣି ବିରକତ
ବାଡ଼ହାଣରେ ଡାକିଲେ ରକତ । ଯତଗୋଜ୩ ହେଲେଣି ହରକତ
ଶୂରଶ୍ରେଷ୍ଠ ରାମ । ସୁର-ଜ୍ୟେଷ୍ଠ ନାଶିବେ ଅବିରାମ । ୬ ।
ଭାଷିଲେ ଋଷିଙ୍କ ହସି ନୃପତି । ଭାସିଯିବ ମୋର ସବ ସମ୍ପତ୍ତି
ନାଶିବ ମୋତେ ଦେଇ ଏ ବିପତ୍ତି । ନାଶିବେ ଲେଖିଥିଲା ବେଦପତି
ଅପଣ ମୋ ପ୍ରତି । ଏପରି ଦଣ୍ଡ ନ ବାହ ସମ୍ପ୍ରତି । ୭ ।
ମୁନି ବୋଇଲେ ନ ଦେଲେ ସୁତକୁ । ମୁଁ ନିଶ୍ଚେ ହରିବି ତୋର ବିତ୍ତକୁ
ଇଚ୍ଛା କର ଯେବେ ନିଜ ହିତକୁ । ତୁଚ୍ଛରେ ବ୍ୟଥା ନ ଅଣ ଚିତ୍ତକୁ ।
ଲଭ ସୁକୃତକୁ । ହୁତଭୁକେ ଦାନ କର ହୁତକୁ । ୮ ।

---

(୧) କୌଣପ—ରାକ୍ଷସ (୨) ବାଷ୍କପ—ଜଗତ (୩) ଗୋଜ—କୂଳ—ସମୂହ

ଶୁଣି ନରପତି ମନୋଦୁଃଖରେ । ଅଣି ଭରତ ଶତ୍ରୁଘ୍ନଙ୍କୁ ଖରେ
ମିଳିଲେ ଯାଇଁ ମୁନିଙ୍କ ପାଖରେ । ଚଳିଲେ ତପସ୍ୱୀ ମହାସୁଖରେ
କହିଲେ ସତ୍ୱରେ । କହିଛୁ ଅପୂର୍ବ ଏକ ବର୍ତ୍ମରେ । ୯ ।
ଦାନବୀ ଯଦ ଅସିବ ଏକ୍ଷଣ । ମାନବ ଦେଖି କରିବ ଭକ୍ଷଣ
ଆନ ପଥେ ଯିବାପଇଁ ମୋ ମତ । ସାନନ୍ଦେ ଭରତ ହେଲେ ସମ୍ମତ
ମୁନି ଭାବି ଚିତ୍ତେ । ବେନି ଭାଇ ଡରିଲେଣି କହୁଁତେ ।୧୦।
ଏପରି ଡରିଲେ ଦେଖି ଏ ବଣ । କପରି ମାରିବେ ଦଇତ୍ରବଣ
ବାରିଲେ ନୁହନ୍ତି ଏ ପିତପଞ୍ଚ । ଦଶରଥ କଲେ ମୋତେ କପଟ
ଫେରିଲେ ବହନ । ରାଗରେ ନଗର କଲେ ଦାହନ । ୧୧ ।
ଜାଣି ନୃପମଣି ଅସି ତକ୍ଷଣ । ଅଣି ସମର୍ପିଲେ ରାମ ଲକ୍ଷ୍ମଣ
କହିଲେ ତୁମ୍ଭେ ନ କଲେ ରକ୍ଷଣ । ଦହିବେ ଅଗ୍ନି ଏ ପୁର ଏକ୍ଷଣ
ଅହେ ବିଚକ୍ଷଣ । କହେ ନିବେଶନ୍ତୁ କୃପା ଈକ୍ଷଣ । ୧୨ ।
ରାଗ ତେଜି ମୁନି ଅନୁରାଗରେ । ସଙ୍ଗେ ଦୁଇ ଭାଇ ନେଇ ମାର୍ଗରେ
ଯାଗ ରକ୍ଷାର୍ଥେ ଗମିଲେ ବେଗରେ । ଯୋଗଜ୍ଞ କହିଲେ ବନଭାଗରେ
ଅପୂର୍ବ ଅଗରେ । ମିଳିଲେ ଡଷିବ ମତ୍ତନାଗରେ ।୧୩।
ରାମ ନାମ ଶୁଣି ଜନ୍ତୁ ଥର । ଜୀବ ଯିବ, ଯିବା ଆନ ପଥର
ଅସିବ ସେ ପେଷି ବଡ଼ ପଥର । ନାଶିବ ଗ୍ରାସିବ ନିଷ୍ଠେ ଏଥର
ଶ୍ରୀରଘୁନାଥର । ପ୍ରତ୍ୟୁତ୍ତର ମୃତ୍ୟୁ ନୁହେ ଦ୍ୱିଥର ।୧୪।
ମୃତ୍ୟୁକୁ ଯଦ୍ୟପି ମୁହିଁ ଡରିବି । ଶତ୍ରୁକୁ କପରି ରକ୍ଷା କରିବି
ଯାତୁଧାନଙ୍କୁ କେମନ୍ତେ ମାରିବି । କ୍ଷତ୍ରସହ ଧନୁ ଶର ଧରିବି
ଅତୁର ହରିବ । ନିତ୍ତୁଭୁଜଙ୍କ[୧] ଶତ୍ରୁ ସଂହାରିବି । ୧୫ ।
ରଡ଼ି ଘୁଡ଼ି ଦଉଡ଼ିଲା ତାଡ଼କା । ଛୁଡ଼ିବ ଅକାଶ ଶୁଣି ତା ଡକା
ଘୁଡ଼ିଲା ନିଶ୍ୱାସ ହୋଇ କଡ଼କା । ଉଡ଼ିଲା ବୃକ୍ଷାଦ ଯେହ୍ନେ ଫଡ଼କା
ଭଡ଼ି ଓଷ୍ଠେ ରଦ । ଉଡ଼ି ଅସିଲା ଯେସନେ ନୀରଦ । ୧୬ ।
ରାଜୀବ-ଲୋଚନ ବାଜୀକୁ ମାରି । ବାଜ ମରିଲା ସୁକେତୁ-କୁମାରୀ[୨]
ସୁମନାଙ୍କ[୩] ସହିତେ ସୁନାସୀର[୪] । ସୁମନା ବର୍ଷିଲେ ରାମଙ୍କ ଶିର
ସୁମନା ସ୍ୱର୍ଗରେ । ସୁମନେ ନାଚିଲେ ଅନୁରାଗରେ ।୧୭।

(୧) ନିତୁଭୁକ—ଦେବ (୨) ସୁକେତୁ-କୁମାରୀ—ତାଡ଼କା
(୩) ସୁମନା—ଦେବତା, ପୁଷ୍ପ (୪) ସୁନାସୀର—ଇନ୍ଦ୍ର

ଦେଖିଲେ ବାଟେ ଗାଧିଙ୍କ ନନ୍ଦନ । ଶୁଖିଛୁ ଦୁଇଭାଇଙ୍କ ବଦନ
ସ୍ୱେଦରେ ଶରୀର ହୁଏ କ୍ଳେଦନ । ଖେଦ ଲଭିଲେ ଜଗତବନ୍ଦନ
ଶ୍ରୀମଧୁସୂଦନ । ଶ୍ରମ ହରଣେ ବୋଲିଲେ ଚନ୍ଦନ । ୧୮ ।
ପଥରେ ବୃକ୍ଷମୂଳେ ରଖାଇଲେ । ବଳାତିବଳା ବିଦ୍ୟା ଶିଖାଇଲେ
ବୋଇଲେ ଏହା ବଳରେ ଆପଣ । ଦେଖାଇବ ବିଶେଷ ବୀରପଣ
କ୍ଷୁଧା ତୃଷା ଦୂର । ବାଧା ନ ହେବ ଗଲେ ଯେତେ ଦୂର । ୧୯ ।
ତିନିହେଁ ତରିରେ ତହିଁ ବସିଲେ । ମୁନି ସେ ବେନି ଭାଇଙ୍କି ଭାଷିଲେ
ଅଗସ୍ତି ଯେପରି ଅବ୍ଧି ଶୋଷିଲେ । ଅତାପୀ ବାତାପୀଙ୍କି ବିନାଶିଲେ
ବିନ୍ଧ୍ୟକୁ ଶାସିଲେ । ଦକ୍ଷିଣ ଯାଇଁ ଆଉ ନ ଆସିଲେ । ୨୦ ।
ଯେତେ କହିଲେ ହେ ଗୁଣନିଧାନ । ବାଣୀକି ମୋର କର ଅବଧାନ
ଶର ମଧ୍ୟେ ଏ ଅଟନ୍ତି ପ୍ରଧାନ । ନିଅ ରଖ ହୋଇଣ ସାବଧାନ
ଅଧାନ ସନ୍ଧାନ । ବତାଇଲେ ଯାବତୀୟ ବିଧାନ । ୨୧ ।
ଗହନ ବନେ ନ କର ମଠକୁ । ବହନ ଚଳିଗଲେ ସେ ମଠକୁ
ଦିବସ ଶେଷ ପ୍ରବେଶ ଆଶ୍ରମେ । ବିଶେଷ କ୍ଳେଶ ଲଭି ପରିଶ୍ରମେ
ପକାଇ ଆସନ । ଭ୍ରାତୃଦ୍ୱୟ କଲେ ଉପବେଶନ । ୨୨ ।
ଶଙ୍କସି ମହାନନ୍ଦେ ପୂଜାଇଲେ । ପୂର୍ବ ହରତରେ ହର ଜଇଁଲେ
ସର୍ବଯତ ଯାଗେ ହେଲେ ବାହାର । ପୂର୍ବ ଦେବଶତ ଧରି ବାହାର
ପର୍ବତ ଗୁହାର । ଗର୍ବରେ ବର୍ବର କଲେ ବିହାର । ୨୩ ।
ହୋମ ଆରମ୍ଭ କଲେ ହରଷରେ । ଧୂମ ଉଠିଲା ଯାଇଁ ଆକାଶରେ
ଯମସୁ ବାରି ଆସିଲେ ଅଶରେ* । ତମ ତମ ହୋଇ ମିଳୁଁ ପାଶରେ
ରାମ ପେଶି ଶରେ । ଯମପୁରେ ପେଷିଲେ ଅକ୍ଳେଶରେ । ୨୪ ।
ମାରିଚ ଦେଖି ସୁବାହୁ ମରଣ । ଧରି ବୃଷ ରୂପ କରନ୍ତେ ରଣ
ମାରିଲେ ବାୟୁବାଣ ରଘୁରାଣ । ଉଦ୍ଧତ ଉଡ଼ାଇ ରଖି ପରାଣ
ବାରିଧି ପାଖରେ । ଗୃହଣ କୋଣରେ ପଡ଼ିଲା ଖରେ । ୨୫ ।
ଦିତି-ସୁତ ତାପୁଁ ହୋଇ ବର୍ଜିତ । ଯତି ସମୁଦାୟ ହେଲେ ନିଶ୍ଚିନ୍ତ
ବାଟେ ବହିଲେ ଆଶିଷ ଉଚିତ । ଦୀନ ଗୋକୁଳାନନ୍ଦର ରଚିତ
ବହୁ ମୋର ଚିତ୍ତ । ରାମ ତାମରସ-ପାଦେ ଜଡ଼ିତ । ୨୬ ।

—*—

* ଅଶରେ—ରାକ୍ଷସେ ।

## ସପ୍ତମ ଛାନ୍ଦ ।

ରାଗ—କଳହଂସ କେଦାର ।

କୃତ ସକଳ ଶ୍ରୁତ ନିବେଶି ଶୁଣ
ଗୀତହୋଇ ଏରସ କଳୁଷ-ତୃଣ ।
ଖଣ୍ଡବତ କୋଦଣ୍ଡଧର ଚରିତ
ଦଣ୍ଡଧର ଦଣ୍ଡକୁ ଖଣ୍ଡେ ତ୍ୱରିତ । ୧ ।
ମୁନି କହିଲେ ଘୃଇ ବେନିଙ୍କ ଆଗ
ଜନକରାଜେ୍ୟଯିବା ଦେଖିବା ଯାଗ ।
ଜନକୀନାମେ ତାଙ୍କ ଏକ ଦୁହିତା
ମନ ନିବେଶି ରାମ ଶୁଣ ସେ କଥା । ୨ ।
ମିଥିଳା ଦେଶ ଅଧିପତି ଜନକ
ପ୍ରଜା ପାଳନ୍ତି ପୁତ୍ରେ ଯଥା ଜନକ ।
ପୃଥ୍ୱୀରେ ହୋଇଥିଲେ ରାଜା ଅନେକ
ନ ଥିଲେ ତାଙ୍କପର କେହି ଧାର୍ମିକ । ୩ ।
ପୁତ୍ର-ବିହୀନ ଧ୍ୟାନ-ହବ୍ୟବାହନ (୧)
ଭଷିମନ-ଗହନ କରେ ଦହନ ।
ନିରନ୍ତର ଅନ୍ତର କାତରଯୁକ୍ତ
ବଂଶକୁ ରଖିବାରେ ଇଚ୍ଛନ୍ତି ଚିତ୍ତ । ୪ ।
ସଚିବଙ୍କୁ କହିଲେ ମିଥିଳ ନୃପ
ଗଙ୍ଗା ତୀରକୁ ଯିବି କରିବି ତପ ।
ଭଜିବି ଅଜଠାରୁ ରାଜୀବନେତ୍ର
ଭାଜିବ ଦୁଃଖରାଜି ଦେବେ ବା ପୁତ୍ର । ୫ ।
ରାଜ୍ୟର ଭାର ଦେଇ ମନ୍ତ୍ରୀସମୀପେ
ଅତପ-ତାପେ ତପ କଲେ ସନ୍ତାପେ ।
କୁଶାସନ ପବନାଶନ ବ୍ୟତୀତ
ଅନ୍ୟ ପଦାର୍ଥଠାରେ ନ ଦେଲେ ଚିତ୍ତ । ୬ ।
ସନକାଦମେ.ହିଣୀ ମେନକାପ୍‌ସରୀ
ଏମାନେ ଯାଉଥିଲେ ଶାପରୁ ଡରି ।
କନକାଙ୍ଗୀକୁ ଦେଖି ଚିନ୍ତି ଜନକ
ଏପରି କନ୍ୟକା(୨)ର ହୋନ୍ତି ଜନକ । ୭ ।

---

(୧) ହବ୍ୟବାହନ—ଅଗ୍ନି । (୨) କନ୍ୟକା—ଝିଅ ।

ଜାଣି ରମଣୀମଣି ଭଣିଲ ବାଣୀ
ସୁକୁମାରୀ କୁମାରୀ ପାଇବ ପୁଣି ।
ସିନ୍ଧୁ-କୂଳେ ସିନ୍ଧୁକ ମଧ୍ୟରେ ଅଛି
ବନ୍ଧୁକାଧରୀ ମୁଖ ଇନ୍ଦୁ ନିନ୍ଦୁଛି । ୮ ।
ବିଳମ୍ବ ଛେଦ ଋଷି ଚଳିଲ ଚଳ
ଲଙ୍ଗଳ ଘେନି ହଳ କର ସେ ସ୍ଥଳ ।
ନ ଭୁଲ ହେ ଭୂପାଳ ଫଳିବ ଫଳ
ମିଳିବ ବାଳିକା ଏ ନୁହେଁ ନିଷ୍ଫଳ । ୯ ।
ସ୍ୱର୍ଗ ଅଙ୍ଗନା ବେଗ ହୋଇ ଗମିଲ
ନଗଭିଦଙ୍କ ପଦଯୁଗେ ନମିଲ ।
ନାଶି ସନ୍ତାପରାଶି ଅସିଲେ ଋଷି
ହସି ଭାଷିଲେ ଯାହାଥିଲ ସେ ଭାଷି । ୧୦ ।
ହର୍ଷରେ କର୍ଷଣ କଲେ ସେ ଭୂମିକି
ମଞ୍ଜୁ ମଞ୍ଜୁଷ ପ୍ରାପ୍ତ ହେଲ ମୁନିକି ।
କୃପଣ ବିତ୍ତ ପ୍ରାପତରେ ତୃପତ
ହୁଅଇ ଯଥା ତଥା ହେଲେ ନୃପତ । ୧୧
ଜାନକୀ ସୀତା ମଇଥିଳୀ ବୈଦେହୀ
ଯୋଜନଗନ୍ଧା ପାଞ୍ଚ ନାମକୁ ଦେଇ ।
ଦ୍ୱାତ୍ରିଂଶ ଲକ୍ଷଣ ଅଙ୍ଗରେ ପ୍ରକାଶ
ତଦର୍ଦ୍ଧ ବୟସ ହୁଅନ୍ତେ ପ୍ରବେଶ । ୧୨ ।
ଗତକି ଦେଖି ଭୀତ ଚନ୍ଦ୍ର ମଣ୍ଡଳରେ
ବାରଣ ଶରଣ ନୃପଣ କଣ୍ଡରେ ।
ଜୀବ ଯିବାକୁ ବିଷ-ପ୍ରସୂନ-ନାଳ
ମରାଳ ବିକଳରେ କରେ କବଳ । ୧୩ ।
କଣ୍ଠୀରବ୨ କଟିକି ଅଣ୍ଟି ନ ପାରି
କ୍ଷିତ୍‌ ସେବାରେ ସାରେ ଦରୀ ଶଙ୍କରୀ ।
ବ୍ୟଞ୍ଜନ ବର୍ଣ୍ଣାଶ୍ରୟ କଲ ବିସର୍ଗ
ହରିବାକୁ ତମ୍ବୁ ଧରିଲେ ଭର୍ଗ । ୧୪ ।
ଶମ୍ପା ଶମ୍ପାକ୩ ଚମ୍ପା କେତକୀ ସ୍ୱର୍ଣ୍ଣ
ବର୍ଣ୍ଣକୁ ହାରି ବନ ଦରେ ଗୋପନ

(୧) ନଗଭିଦ—ଇନ୍ଦ୍ର (୨) କଣ୍ଠୀରବ—ସିଂହ (୩) ଶମ୍ପାକ—ସୁନାରିଫୁଲ

ଶଶାଙ୍କ ଦେଖି ଯୋଷାଉଣ ବଦନ
ମଦନ ଦହନଙ୍କ ଶିରେ ସଦନ । ୧୫ ।
ଖଞ୍ଜନ ମୃଗ ମୀନ ପଦ୍ମ ନୟନ
ଦେଖି ଲଜରେ ବନେ କଲେ ଭବନ ।
କୁଞ୍ଚିତ କେଶେ ସମ ନୋହୁ କଞ୍ଚିତ
ଗୃମର ଭ୍ରମର କମଳ ଜୀମୂତ । ୧୬ ।
ବରବରନାପାଇଁ ଖଞ୍ଜିବେ ବର
ସ୍ୱୟମ୍ବର କରନ୍ତି ଯତତ୍ପରର ।
ମିଛ ନୁହେ ରାଘବ ଯେ ହେବ ପତି
ତୁଷ୍ଟ ମଣିବ ସୁରପତି ସମ୍ପତ୍ତି । ୧୭ ।
ମାନବ କି ଦାନବ ଗନ୍ଧର୍ବ ଦେବ
ଯେ ଧନୁ ଭାଙ୍ଗିବ ସେ କନ୍ୟାକୁ ନେବ ।
ଏପରି କହୁ କହୁ ଯାନ୍ତି ପଥରେ
ଅବଳ ରୂପରେ ଦେଖିଲେ ପଥରେ । ୧୮ ।
ସ୍ମରଣ ମାତ୍ରେ ରାମ ଗୃହ୍ଣ ଚରଣ
ମହିଳା ହୋଇଲା ବିଷାଣ ପାଷାଣ ।
ବସିଷ୍ଠେ ସପିଷ୍ଟେ କୋଦଣ୍ଡଧାରଣ
ବିଶ୍ୱାମିତ୍ରଙ୍କୁ ପୃଚ୍ଛା କଲେ କାରଣ । ୧୯ ।
କୁଶିକବଂଶିକ କୌଶିକ ତପସ୍ୱୀ
ଅତୀତ ଚରିତ କହିତ ପ୍ରକାଶି ।
ଗୌତମୀସହ ଗଉତମ ବିବାହ
ଶକ୍ର-ହରଣ ଆଦ-କଥା ସମୂହ । ୨୦ ।
ବନିତା ବନ-ଶୋଭା ଧରଣ ଜଭା
କାନ୍ତିରେ ରତିପତି ହୋଇବ ଲୋଭା ।
ତପସ୍ୱିନୀ ଚକ୍ରବର୍ତ୍ତିନୀ ମହିଳା
ତପସ୍ୱିନୀ ଚକ୍ରବର୍ତ୍ତିନୀ ମହିଳା । ୨୧ ।

---

୨୧:ଶ ପଦାର୍ଥ—ବନିତା (ସ୍ତ୍ରୀ ଅହଲ୍ୟା) ବନଶୋଭା ଧରି ଠିଆ ହେଲେ କାନ୍ତିରେ (ଶୋଭାରେ) ରତିପତି (କନ୍ଦର୍ପ) ଲୋଭା ହେବ ଅର୍ଥାତ୍ ସେ ବନିତା ବନତୁଲ୍ୟ ହେଲା ।

ସୁମନା ଜୟା ଶିବା ରମ୍ଭା କମଳା,
ସୁମନା ଜୟା ଶିବା ରମ୍ଭା କମଳା ।
ଶୁକ ନାଶା ଅଞ୍ଜନ କେଶିନୀ ବଧୂ
ଶୁକ ନାଶା ଅଞ୍ଜନ କେଶିନୀ ବଧୂ । ୨୨ ।
ମଲ୍ଲିକଚ୍ଛି କେଶର ବଳା ବସ୍ତକ
ମଲ୍ଲୀକଚ୍ଛି କେଶର ବଳା ବସ୍ତକ ।
ମଧୁବ୍ରୁ ସହଚରୀ ବର କରକ
ମଧୁବ୍ରୁ ସହଚରୀ ବର କରକ । ୨୩ ।

---

ତପସ୍ୱିନୀ ଜଟାମାଂସୀ ଜଟିଳା ଲୋମଶା ମିସୀ-ଇତ୍ୟମରଃ
କାନ୍ତା ଲତୁକା ରଜନୀ ଲଜ୍ଜୁବୁଲପବର୍ତ୍ତିନୀ ଇତ୍ୟମରଃ
ଶ୍ୟାମା ତୁ ମହିଳା ହ୍ୱୟା । ଇତ୍ୟମରଃ
ସେ ବନ ତପସ୍ୱିନୀ (ଜଟାମାଂସୀ) ଚନ୍ଦ୍ରବର୍ତ୍ତିନୀ (ରଜନୀଗନ୍ଧା) ମହିଳା (ପ୍ରିୟଙ୍ଗୁ) ଦ୍ୱାରା ଶୋଭିତ, ମହିଳା (ଅବଳା) ତପସ୍ୱିନୀ-ମାନଙ୍କ ମଧ୍ୟରେ ଶ୍ରେଷ୍ଠା ଅଟନ୍ତି ।

୨୨ ଶ ପଦାର୍ଥ—ସୁମନା ମାଳତୀ ଜାତିଃ—ଇତ୍ୟମରଃ
ଜୟା ଜୟନ୍ତୀ ତର୍କାରୀ ନାଦେୟୀ ବୈଜୟନ୍ତିକା ଇତ୍ୟମରଃ
ହରୀତକୀ ହୈମବତୀ ଚେତକୀ ଶ୍ରେୟସୀ ଶିବା ଇତ୍ୟମରଃ
କଦଳୀ ବାରଣବୁଷା ରମ୍ଭା ମୋଚାଂଶୁମତ୍ଫଳା ଇତ୍ୟମରଃ ।
ସେ ବନ ସୁମନା ( ଜାଇ ) ଜୟା ( ଜୟନ୍ତୀ) ଶିବା ( ହରିଡ଼ା ) ରମ୍ଭା (କଦଳୀ) ଓ କମଳାଗଛଦ୍ୱାରା ଶୋଭିତ, ଅନ୍ୟାର୍ଥ ସୁମନା (ସ୍ତ୍ରୀ) ଅର୍ଥାତ୍ ଅବଳା ଶିବା (ଦୁର୍ଗା) ରମ୍ଭା (ଅପ୍ସରା) କମଳା (ଲକ୍ଷ୍ମୀ) ରୂପରେ ଏମାନଙ୍କୁ ଜିଣିପାରେ ।

୨୩ଶ ପଦାର୍ଥ— ଏତସ୍ୟ ଜଳଜା ଗନ୍ଧଫଳୀ ସ୍ୟାଦଥ କେଶରେ ଇତ୍ୟମରଃ
ବଳା ବ୍ୟାଟ୍ୟାଳକା ଘଣ୍ଟାରବା ତୁ ଶଣପୁଷ୍ପିକା ଇତ୍ୟମରଃ
ଶତପୁଷ୍ପା ସିତଚ୍ଛତ୍ରାତିଚ୍ଛତ୍ରା ମଧୁରା ମିସିଃ ଇତ୍ୟମରଃ ।
ପୀତା କୁରୁଣ୍ଟକୋ ଝିଣ୍ଟୀ ତସ୍ମିନ୍ ସହଚରୀ ଦ୍ୱୟୋଃ ଇତ୍ୟମରଃ
ସେ ବନରେ ମଲ୍ଲୀକଚ୍ଛି କେଶର (ବଉଳ) ବଳା (ଅଇଁଳା) ବସ୍ତକ (ପକ୍ଷୀସମୂହ ଅଛନ୍ତି) । ଅବଳାଙ୍କ କେଶରେ ମଲ୍ଲୀକଚ୍ଛି ପାଦରେ ବଳା (ବସ୍ତକ) ଶୋଭା ପାଉଅଛି । ମଧୁବ୍ର (ଶତାବରୀ) ସହଚରୀ (ଦାସକେରଣ୍ଟା) ବର ଓ କରକ ବୃକ୍ଷ ସେ ବନରେ ଶୋଭାପାଏ ।

ମଧୁବ୍ର (ମନୋହର) ସହଚରୀ (ସଖୀ) ଅର୍ଥାତ୍ ଅବଳାମାନଙ୍କର କରକ (ନଖ) ବର (ଶ୍ରେଷ୍ଠ) ଅର୍ଥାତ ସୁନ୍ଦର ।

ଶକ୍ର କର୍କଶ କାର୍ଯ୍ୟେ ହର ସୁରସା
ଶକ୍ର କର୍କଶ କାର୍ଯ୍ୟେ ହର ସୁରସା ।
ବନପ୍ରିୟ ବୀରତରୁ ସାପଯୁକ୍ତ
ବନପ୍ରିୟ ବରତରୁ ଶାପଯୁକ୍ତ । ୨୪ ।
ଦଳା କଳା କୁନ୍ତଳା ଅବଳା ଶୀଳା
ରୂପରୁ ତବ ସମେ ନମି ଚଳିଲା ।
ଶୂର ସୁର-ସରିତ ତାରେ ମିଳିଲେ
ଜହ୍ନୁସୂ(୧) ଜାହ୍ନବୀରୂପେ ବିଦିତ ହେଲେ । ୨୫ ।
ଗାଧି-ସୁତଙ୍କ ବୁଦ୍ଧିମନ୍ତ କହିଲେ
ଭଗୀରଥି ନାମ ଏ କନ୍ୟା ବହିଲେ ।
ତଥ୍ୟ କହ ମର୍ତ୍ତ୍ୟକୁ କନ୍ୟା ଅଗତ
ସତ୍ୟବନ୍ତ କଥିତ ସମ ଅଗତ । ୨୬ ।
ତବ ବଂଶେ ସଗର ନୃବର ଥିଲେ
ବାଜି ଶତାଶ୍ୱମେଧ ଯଜ୍ଞ କରିଲେ ।
ହରିହୟ(୨) ହୟକୁ ଭୟେ ହରିଲେ
ଛପି କପିଳଙ୍କର ପଛେ ବାନ୍ଧିଲେ।୨୭।

---

୨୦ ଶ ପଦାର୍ଥ—ଇନ୍ଦ୍ରାଥ ବୃତ୍ରହଃ ଶକ୍ରୋ ବସ୍ତୁକୋ ଗିରିମଲ୍ଲିକା (ଇତ୍ୟମରଃ)
କାଙ୍ଖିଲଃ କର୍କଶସ୍ତନ୍ଦ୍ରେ । ଉତ୍ପାଙ୍ଗୋ ସେଚନୀତ୍ୟପି(ଇତ୍ୟମରଃ)
ସାଲେ ତୁ ସର୍ଜ୍ଜକାର୍ଯ୍ୟାଶ୍ୱକର୍ଣ୍ଣକାଃ ସସ୍ୟସମ୍ବରଃ (ଇତ୍ୟମରଃ)
ନାକୁଳୀ ସୁରସା ରସ୍ନା ସୁଗନ୍ଧାଗନ୍ଧନାକୁଳୀ (ଇତ୍ୟମରଃ)
ହେ ବନ ଶକ୍ର (କୋରୁଅଁ) କାର୍ଯ୍ୟେ (ଶାଳରେ) ହର
(ସିଂହ) ସୁରସା (ରସଣା) ଗଛଦ୍ୱାରା ଶୋଭିତ ।
ସୁରସା ( ଉତ୍ତମରସଯୁକ୍ତା ) ଅହଲ୍ୟାଙ୍କୁ ଶକ୍ର ( ଇନ୍ଦ୍ର ) କର୍କଶ
କାର୍ଯ୍ୟଦ୍ୱାରା ହରଣ କଲେ ।
ନଦୀସର୍ଜ୍ଜୋ ବୀରତରୁରିନ୍ଦ୍ରଦ୍ରୁଃ କକୁଭୋଽର୍ଜ୍ଜୁନଃ
ହେ ବନ ବନପ୍ରିୟ (କୋଇଲି) ବୀରତରୁ (ଅର୍ଜ୍ଜୁନ ଗଛ)
ସାପମାନଙ୍କଦ୍ୱାରା ଯୁକ୍ତ ହୋଇଅଛି ।
ହେ ସ୍ତ୍ରୀ ଅହଲ୍ୟା ବନପ୍ରିୟ (ଋଷି) ବରତରୁ (ବରଭରୁ)
ଶାପଯୁକ୍ତ ହେଲ ।

(୧) ଜହ୍ନୁସ—ଗଙ୍ଗା । (୨) ହରିହୟ—ଇନ୍ଦ୍ର

ରଜାର ଏକଷଠିହଜାର ପୁତ୍ର
ବାଜୀକୁ ଖୋଜି ଖୋଜି ତହିଁ ମିଳତ ।
କୁଟିଳପ୍ରକୃତଙ୍କ ଯହୁଁ ଯୁଟିଲେ
ଜଟିଳଙ୍କ(୧) ଚୂଟିକୁ ଧରି କୁଟିଲେ ।୨୮।
କୋପ କରି ତପସ୍ୱୀ ବହ୍ନଲେ ଶାପ
‘ଜଳି ଯା ଜଳଜଳା’ ଦେଲ ସନ୍ତାପ ।
ପ୍ରତିକାର ମାଗିଲେ ପଦେ ଔଳଗି
ତରିବ ଗଙ୍ଗାବାରି ଶସ୍ପରେ ଲାଗି ।୨୯।
ସେ ବଂଶେ ଭଗୀରଥ ହେଲେ ଉତ୍ପନ୍ନ
ଯୋଗବଳରେ ସ୍ୱର୍ଗେ କଲେ ଗମନ ।
ଶୂନ୍ୟରୁ ଜହ୍ନୁ ତନୟାଙ୍କୁ ଅଣିଲେ
ଶଙ୍ଖପାଣିଙ୍କ(୨) ନଖକୋଣେ ଏ ଥିଲେ ।୩୦।
ଧୀବର ପ୍ରତି ସୁଧୀବର ଭାଷଣ
ଅମ୍ଭ ପାଖକୁ ଜବେ(୩) ତୋ ନାବ ଅଣ ।
ଦାଶରଥିର ବାକ୍ୟେ ଦାସରଥିର
ଉତ୍ତର କାତର ମୁଁ ତୁମ୍ଭ ସ୍ୱତର ।୩୧।
ଡରିଲିଣି କପରି କରିବି ପାର ?
ତସ୍ପ ତରୁଣୀ ହେଲେ ସରିବ ଶିସ୍ପ ।
ଶ୍ରୀପଦ ଧୋଇବି ମୁଁ ଷଟପଦଭୟେ
ଆଦେଶ ପ୍ରଦାନ ସଦୟ ହୃଦୟେ ।୩୨।
ଦେଖାଇ ଦେଲେ ପାଦ ପଖାଳି ଦାସ
ଅଛିଲେ ରଖିଗଲ୍ଲ ଖ୍ୟାତ ବାଟଶଷ ।
କୈବର୍ତ୍ତିକୁ ପାବନ କରି ଭାବରେ
ଭାବଗ୍ରାହୀ ପ୍ରବେଶ କଲେ ନାବରେ ।୩୩।
ଯାର ଶୋଭାକୁ ହେରି ହାରଇ ମାର
ପାର ହୋଇଲେ ସଂସାରସାରନର ।
ମୁନି ଏ ବେନିଙ୍କ ଭଜିହେଁ ଗଲେ
ମିଥିଳାବୀଥି(୪)ରେ ପଥିକ ହୋଇଲେ ।୩୪।

(୧) ଜଟିଳ—ଋଷି (୨) ଶଙ୍ଖପାଣି—ବିଷ୍ଣୁ (୩) ଜବେ—ଶୀଘ୍ର (୪) ବୀଥି—ପଥ

ବିଦେହବାସୀ ବିସ୍ମରିଲେ ବିଦେହ
ଦେହଧର ଅସିବା ବଡ଼ ସନ୍ଦେହ ।
ରମଣୀଏ ମଣିଲେ ଏ ରମଣୀପ୍ରେ
ଜଣି ପାରିବେ ଇନ୍ଦ୍ରନୀଳମଣି ଏ ।୩୫।
ସନ୍ତୁ ମତରେ ହରି ହର ଅମ୍ବୁଜ[୧]
ନରରୂପେ ବିହାର କରନ୍ତି ପ୍ରଭୁ ।
ରାମଙ୍କ କମନୀୟ ରୂପ-ବଡ଼ଶ
ଜନଙ୍କ ମନ-ମୀନ କଲା ଆକର୍ଷ ।୩୬।
ବାଳୀ-ଅଳି ବାଳଣ[୨] ପରି ହୋଇଲେ
କାମ ବାଧାରେ କାମ ଶ୍ରଦ୍ଧା ଖଣ୍ଡିଲେ ।
ପଥ କତରେ କେଉଁ ଯୁବତୀ ଥିଲା
ଶ୍ରୁତରେ ଶୁଣି ଅତିବେଗେ ଧାଇଁଲା ।୩୭।
ପାଶରେ ବସିଥିଲା କେ ଶଶୀହାସୀ
କ୍ରୀଡ଼ା ବ୍ରୀଡ଼ା ବରଜି ତୁରିତ ଅସି ।
ଅବଳା ପ୍ରବଳା ହୋଇ ବଳାଇଲେ
ମନା ନ ମାନି ମାନିନୀ ପଳାଇଲେ ।୩୮।
ସୁରତ-ରଙ୍ଗିଣୀ ସୁର-ତରଙ୍ଗିଣୀ
ସମ ଧାମନ୍ତି ରାମଙ୍କ ଅବ୍ଧି ମଣି ।
ଅବାରିତ ସରିତସ୍ରୋତ ଯେସନ
ଉଛୁଳେ ଉଛୁଳ ଏ ଦେଖିଲେ ତେସନ ।୩୯।
ଚୂର କଲେ ବାରଣ-ସିକତାସେତୁ
ଦୂର କଲେ ବିବେକ-ବନ୍ଧନ ହେତୁ ।
ସ୍ଥିର କଚ୍ଛପ ନୟନ ମୀନବତ
ଗମନ ଭୁବନରେ କ୍ରୀଡ଼ାରେ ରତ ।୪୦।
ଗଣ୍ଡଦେଶେ ମକରୀ ମକର ଛୁଲି
ନାଭି-ଭଉଁରୀ ଶୈବାଳକ-ଧମିଲ୍ଲ[୩] ।
କୁମ୍ଭୀର-ଗତି[୪] ସମ ଗତି କ୍ଷିପ୍ରତା
ଦାଣ୍ଡରେ ଲୁଣ୍ଠିଭୂତା ସର୍ବ ବନିତା ।୪୧।

---

(୧) ଅମ୍ବୁଜ—ବ୍ରହ୍ମା (୨) ବାଳଣ—ବାତୁଳ (୩) ଧମିଲ୍ଲ—ମୁଣ୍ଡା, ଖୋସା
(୪) କୁମ୍ଭୀରଗତି—ଗଜଗତି

ମନରେ ବିଗୃଦନ୍ତି ଧନ୍ୟ ଏ ଜନ
ଜନନୀ ଜନକଙ୍କ ଅଶେଷ ପୁଣ୍ୟ ।
ନିର୍ମାଣ କଲାବେଳେ ଏହି ଦୁହିଙ୍କି
ବହୁତ କଷ୍ଟ ହୋଇଥିବ ବିଧିଙ୍କ ।୪୨।
ଶ୍ଳାଘ୍ୟା ସେ ନାରୀ ଥିବ ପୂର୍ବ ପୁଣ୍ୟ ଯା,
ଗିରିଜା କୃପାବଳେ ହେବ ଭାରିଯା ।
ସୀତା ଚିନ୍ତା-ବିତାପ ଚିରବେ ଏ କି
ଗିରୀଶାସନ୧ ଶରାସନ୨କୁ ଦେଖି ।୪୩।
ଲୋକରେ ଅଲୌକିକ ଯାହାଙ୍କ ପ୍ରଭା
ସଭାରେ ଉଭା ହୋଇ ଦିଶିଲେ ଶୋଭା ।
ହର ସୁର ଚରିତ ଗୋକୁଳାନନ୍ଦ
ସ୍ଫୁର ଏଗାର ପଦେ ସାରିଲି ଛାନ୍ଦ ।୪୪।

---

## ଅଷ୍ଟମ—ଛାନ୍ଦ ।

### ରାଗ କଲ୍ୟାଣିକ ।

ଶକ୍ତ ଭକ୍ତ ବ୍ୟକ୍ତ୩ ବିଷୟାନୁରକ୍ତ ହେଲେ ତ୍ୟକ୍ତ ହେବ ପାପ ।
ଜୀବଧବ-ପୁରେ ଜୀବନ ନ ଯିବ ତେଜବ ନିଷ୍ଟେ ତ୍ରିତାପ୪ ସେ-ସୀତା
ଦେଖି ମନ ମଧ୍ୟେ କଲେ ଚିନ୍ତା । ସତେ ହେବେ କି ଏ ମୋର ଭର୍ତ୍ତା ।୧।
ଭାଳିବାରୁ ବାଳୀ ଆଳୀଆଳି୫ ମିଳି ଛଳି କହିଲେ ଏ ଭାଷା ।
ଶୋଚତା ନ ହୁଅ କୁଞ୍ଚିତକୁନ୍ତଳା ପୁଞ୍ଜିବ ସଞ୍ଚିତ ଦଶା ଗୋ ବାର ।
ବରବରନା ହେଲେ ଏ ବର । କି କରିବ ହର-ଧର ଛାର ।୨।
ପାଞ୍ଚି ପାଞ୍ଚି କର ବିରଞ୍ଚି ତୋପାଇଁ ରଚି ସଞ୍ଚିଥିଲା କାହିଁ ।
ଭଞ୍ଜି-ଖଞ୍ଜନ-ଗଞ୍ଜନଲୋଚନା ତୁ ଶୋଚନା କରୁ କିମ୍ପାଇଁ ଗୋ-ଧେନ ।
ଧୀନ ଭାବରେ ନ ନିଅ ଧନ । କ୍ଷୀଣମଧ୍ୟା ଦେହ ନୋହୁ ଖିନ ।୩।

---

(୧) ଗିରୀଶାସନ—ଶିବ (୨) ଶରାସନ—ଧନୁ (୩) ବ୍ୟକ୍ତ—ବିଷ୍ଣୁ
(୪) ତ୍ରିତାପ—ଆଧ୍ୟାତ୍ମିକ, ଆଧିଦୈବିକ, ଆଧିଭୌତିକ ଦୁଃଖତ୍ରୟ ।
(୫) ଆଳୀଆଳି—ସଖୀସମୂହ

ଅଶିଷ ମନାସି କାଶୀବାସୀ ତୋଷି ଥିଲୁ କି ପୂର୍ବେ ସୁଭଟେ ।
ପୌର୍ଣ୍ଣମାସୀ ମୁଖ ଶଶୀ ପ୍ରକାଶିଲା ନାଶି ଦୁଃଖ-ତମୋରାଶି ଗୋ-ମିତ ।
ହିତ ହୋଇବ ଯଥା ବିହିତ । କି ମନ୍ତ୍ର ଏକା ତ ଏକାନ୍ତ କାନ୍ତ ।୪।
ସଙ୍ଗୀତପଟିମା ସଙ୍ଗିମାଙ୍କ ଭାଷି ଭ୍ରୂମ୍ଭ ଇଙ୍ଗିତ ଭଙ୍ଗିତ ।
ବୃକ୍ଷ ନ ଥାଇ ଶାଖା ହେବା କଥାକୁ ଲେଖା ହୋଇବ ଯଥାର୍ଥ ଗୋ ଶୁଣ ।
ଶଶୀ ଦଶା ପରି ହେବ ପ୍ରାଣ । ମରୁଭୂମିରେ ହେବ କି ତୃଣ ।୫।
ଜନଙ୍କ ମନରଞ୍ଜନ ପୁରୁଷକୁ ଦେଖି ଜନକ ରାଜନ ।
ବିଶ୍ୱାସେ ବିଶ୍ୱାମିତ୍ରଙ୍କୁ ପଚାରିଲେ ଭାଷି ଆଶ୍ୱାସ ବଚନ ହେ ମୁନି ।
କେଉଁଠାରେ ଜନମି ଏ ବେନି । ଧନ୍ୟ କରିଛନ୍ତି ସେ ଅବନୀ ।୬।
ମିଥିଳା କ୍ଷିତିପତିଙ୍କ ପ୍ରତି ଯତି ବଦତି ଗିର ଅମିୟ ।
ଅଯୋଧ୍ୟାପୁର-ପୁରନ୍ଦରଙ୍କର ଏ ସୁନ୍ଦର କୁମର ଦ୍ୱୟ ହେ-ଶୁଣ
ଯାବତୀୟ ବିଦ୍ୟାରେ ନିପୁଣ । ବ୍ୟାଖ୍ୟା କରି ପାରିବି କେ ଗୁଣ ।୭।
ମାରିଚମାତା-କଶ୍ୱାକ ହରି ପରି ମାରି ଧନୁଶର ଧରି ।
ଯଜ୍ଞ ରକ୍ଷା କରି ଗଉତମନାରୀ ତାରି ପାଦ ରଜ କରି ଏ ଯାଗ ।
ଦେଖିବାକୁ କଲେ ଅନୁରାଗ । ତେଣୁ ଆଗତ ହେ ମହାଭାଗ ।୮।
ଦର୍ଶନ କଲେ କି ହେବ ଶରାସନ ସ୍ପର୍ଶନ କରିବା କ୍ଳେଶ
କଳୀ ବାଳ ବଇଶ୍ରବଣ ଶ୍ରବଣ ଛୁଇଁଗଲେ ନିଜଦେଶ ଏ-ସତ
କାର୍ତ୍ତିବୀର୍ଯ୍ୟ ବଳବୀର୍ଯ୍ୟ ହତ । ପରଶୁରାମ ପରଶୁ ଭୀତ ।୯।
ବାଜାବଜା ରଜା ହଜାର ହଜାର ମଜ୍ଜାରେ ଲଜ୍ଜାକୁ ପାଇ ।
ମସ୍ତକରେ ହସ୍ତ ନ୍ୟସ୍ତ କରି ପଳାୟିତ ଅସ୍ତବ୍ୟସ୍ତ ହୋଇ ହେ-ଶୁଣ
ବଜ୍ର ଦଶେ କିଂଶୁକ ପ୍ରସୂନ । ଜାଣି ସହିତ ସମ କି ଗୁଣ ।୧୦।
ସୁଧାଂଶୁ ଜଡ଼ିତ ମଣ୍ଡଳ ତ ଖଣ୍ଡ ଖଣ୍ଡକାରେ ନିଯୋଜିତ ।
ମୀନରାଶି ରାମଯୁକ୍ତ ହେଲେ ସମ ସୋମ ଖଲୀନ ହୋଇ ତ ହେ-ଶାନ୍ତ
ଏହା କହିବାର ଅବହିତ । ବାଳକ ବୋଲି ନ ଭାଳ ଚିନ୍ତ ।୧୧।
ବିଶାଳ ହେଲେ ହେଁ ଏରଣ୍ଡପାଦପ ଶାଳ ସମାନ ହେବ କି ।
ଅପୂଜ୍ୟ ପୃଥୁଳକାୟ ମୂର୍ଖ ପୂଜ୍ୟ ଅଟଇ କ୍ଷୀଣ ବିବେକୀ ହେ-ଜାଣ
ଅବଲମ୍ବେ ଶିବଧନୁ ଆଣ । ଦେଖ ବୀରଶେଖରଙ୍କ ଟାଣ ।୧୨।
ସାଞ୍ଜୁ ପିନ୍ଧା ଯୋଦ୍ଧା ମଞ୍ଜୁଳ ମଞ୍ଜୁଷ ଅଣିଲେ ହଙ୍କାଳ୍ପା ପାଇ ।
ସ୍ୱର୍ଣ୍ଣକାନ୍ତି ମତ ବର୍ଣ୍ଣ ଅତଦୀପ୍ତି ଧନୁ ନାଗଭୀତ ଦେଇ ସେ-ସଭା-
ମଧ୍ୟେ ରାମ ପ୍ରେମଚିତ୍ତେ ଜଭା । ଏହୁ ରବି ସବେ ଖଦ୍ୟୋତାଭା ।୧୩।

ଉଠିବା ବେଳରେ ଯୁଟିଥିବା ରାଜା ରହିଲେ ପଛିରେ ଏହା ।
ଟୋକାଏତ ଟିକାଏତ ବୁଦ୍ଧି ନାହିଁ ସାହସ କରନ୍ତି କିଆଁ ଏ
ଏକା-ଗର୍ବେ ଗ୍ରାବକୁ[୧] ମାରନ୍ତି ଠେକା । ପୂର୍ବେ ନ ଥିଲା ଏ କଥା ଦେଖା ।
କେହି ବା କହନ୍ତି ବହି ଲହିଥିଲେ ରହିବ ଦୁହିଁଙ୍କ ପଣ ।
ସାନ ବୋଲି ଜ୍ଞାନ କରିବା ଏ ଅମ୍ଭମାନଙ୍କ ଅଜ୍ଞାନପଣ ହେ
ମାନ-ରୂପେ ବାମନ ଥିଲେ ସାମାନ୍ୟ । ଦଳିଲେ ବଳିକି ମାଗି ଦାନ ।୧୫।
ଯତି ମଧ୍ୟେ ବହୁ ଯତି ତ ଅଛନ୍ତି ସିନ୍ଧୁ ଶୋଷିଲେ ଅଗସ୍ତି ।
ଉତ୍ତାନପାଦଙ୍କ ସନ୍ତାନ ନିତାନ୍ତ ପିଲର ବୃତ୍ତାନ୍ତ ପ୍ରତି ହେ
ମନ-ଦେଲେ କିସ ହୁଏ ଅନୁମାନ । ଅପଣ ନ ମଣ ଯୋଗ୍ୟ ସାନ ।୧୬।
ଅନୁମାନ କରି ଅନୁଜ କହିଲେ ଧନୁକୁ ଧରିଲେ ନାହିଁ ।
ମନୁଜ ବଦନେ ଊର୍ମିମ ବାକ୍ୟର ନମସ୍କାର କଲେ ଏହି ସେ
ଖରେ-ବାମପାଦ ବୃଦ୍ଧ ଅଙ୍ଗୁଳିରେ । ଠେକି ଶରାସନ ଧରି କରେ ।୧୭।
ଗୁଣବନ୍ତ ଗୁଣ ଚଢ଼ାଇ ଆକର୍ଣ୍ଣ ଟାଣନ୍ତେ ଭଗ୍ନ କମାଣ ।
ଶତକୋଟି ଶତକୋଟି[୨] ନାଦସହ ବାଦ-କଲା ଏ ପ୍ରମାଣ ସେ ।
ରଢ଼-ଶୁଣି କ୍ଷ୍ମାଭୃତ[୩] ମୋହରେ ପଡ଼ି । କିବା କ୍ଷ୍ମାଭୃତ ପଡ଼ିଲା ଝଡ଼ି ।୧୮।
ବିଶ୍ୱାମିତ୍ର ରାମ ଲକ୍ଷ୍ମଣ ଜନକ ଭିନ୍ନ ଅନ୍ୟ ମୂର୍ଚ୍ଛା । ପ୍ରାପ୍ତ
ଚେତା ପାଇ ବହୁକ୍ଷଣ ପରେ ଭଗ୍ନ ଧନୁ କଲେ ଦୃଷ୍ଟିପାତ ସେ
ସନ୍ତ-ଜନମାନଙ୍କ ମାନସତୃପ୍ତ । ମୂର୍ଖଙ୍କର ମୁଖ ଦୁଃଖଯୁକ୍ତ ।୧୯।
ମତ୍ସ କଚ୍ଛ ମ୍ଲେଚ୍ଛ ନୃପ ବସ୍ତ୍ର ତୁଚ୍ଛ ହୋଇ ପଛକୁ ନ ଚାହିଁ ।
ମଦାଙ୍ଗ ପୁନ୍ନାଗଙ୍ଗ କଳିଙ୍ଗ ତୈଲଙ୍ଗ ଅଙ୍ଗ ବଙ୍ଗ ଭଙ୍ଗ ଦେଇ ସେ
ଭଦ୍ର-ଦେଶ ନରପାଳ ମଣିଭଦ୍ର । ଅସ୍ୟ କ୍ଲେଶ-ବଶେ ହେଲେ ଆର୍ଦ୍ର ।୨୦।
ଉତ୍କଳ କାମଳ ଭୂପାଳ ନେପାଳ ଭୂପାଳ[୪] କପାଳ ଠୁକି ।
କାକୁତ୍ସ୍ଥ ଦେଶେଶ କାକୁତ୍ସ୍ଥ[୫] ହୋଇଲେ କାକୁତ୍ସ୍ଥଙ୍କ ଶକ୍ତିଦେଖି ସେ
କାଶୀ-ଦେଶ ନରେଶ ବିଶେଷ କ୍ଲେଶୀ । ନ ବସି ନ ହସି ଗଲେ ଖସି ।୨୧।
ଭୈରବ ଆରବ ଭୈରବ ଆରବ ନରବର କରି ଗଲେ ।
କେଶରୀ[୬] କେଶରୀ ଏହାଙ୍କୁ କେ ସରି ବିଚାରି ଅପସରିଲେ ହେ
ଶୁଣି-କୋକମୁଖେ ଦେଲାପରି ଲୁଣ । ହେଲେ ଗର୍ବଯୁକ୍ତ ନରଗଣ ।୨୨।

---

(୧) ଗ୍ରାବ—ପର୍ବତ (୨) ଶତକୋଟି—ବଜ୍ର (୩) କ୍ଷ୍ମାଭୃତ—ରାଜା, ପର୍ବତ
(୪) ଭୂପାଳ—ରାଜ୍ୟବିଶେଷ, ରାଜା । (୫) କାକୁତ୍ସ୍ଥ—ସ୍ୱତହସ୍ତ, ରାମଚନ୍ଦ୍ର
(୬) କେଶରୀ—ରାଜା, ସିଂହ ।

ଅଯୋଧ୍ୟା ନଗର ଦେବାକୁ ଖବର ବିଦେହବର ନୃପବର ।
ଲେଖି ସମାଚାର ଦେଖି ଭଲ ଚାର ପେଷିଲେ କରି ବିଚାର ସେ ।
ଦୂତ-ସଙ୍ଗେ ନେଲେ ପଦାର୍ଥ ବହୁତ । ରାଜା ଭେଟିକି ଯେ ଉପଯୁକ୍ତ ।୨୩

ରାମ ଲକ୍ଷ୍ମଣ ରାମ-ଲକ୍ଷ୍ମଣ+ ମୁଖ-ନ ଦେଖି ଅଜନନ୍ଦନ ।
ସନ୍ତୋଷ-ଭାନୁକୁ ସନ୍ତାପ-ସ୍ୱର୍ଭାନୁ* ଗ୍ରାସିଲା ହୃଦଗଗନ ସେ ।
କ୍ଷୀଣ-ହେଲା ପ୍ରତୀତ ପ୍ରତ୍ୟେକ ଦିନ । ଭାବିଲେ ମୋ କର୍ମ କେଡ଼େ ହୀନ ।

କ୍ରୋଧି ଗାଧିସୁତ ନିଧିକି ହରିଲେ ଖେଦବ୍ୟାଧି କଲେ ବୃଦ୍ଧି ।
ସୁତଙ୍କ ବ୍ୟତୀତ ଚିତ୍ତକୁ ପ୍ରତୀତ ବିଷ ବତ ଏ ସମୃଦ୍ଧି ସେ
ବାଧି-ବୃଦ୍ଧ ପ୍ରାପ୍ତ କରି ଏ ଅବାଧି-ଅରଜାବ ଅବା କେଉଁ ସିଦ୍ଧି ।୨୫।

ଏ ସମୟେ ଦ୍ୱାସ୍ଥ ହୋଇ ଯୋଡ଼ହସ୍ତ ଭୂପ ସମୀପସ୍ଥ ହେଲା ।
ସ୍ତମ୍ଭ କରି ସ୍ତମ୍ଭରେ ରହି ମଣିମା ଶୁଣିମା ହେଜ ବୋଇଲା ହେ
ଦେବ-ବାରେ ଏଣେ ଅନୁଗ୍ରହ ହେବ । ଦାସ ପାଶରେ କିଛି କହିବ ।୨୬।

ମିଥିଳା-ଦୂତ ଦ୍ୱିଦନ୍ତ-ଅରିଦ୍ୱାରେ୧ ଉଭା ଅଛି କି ଉଦନ୍ତ ।
ଆଦେଶ ହେଲେ ସେ ବିଦେଶ-ସନ୍ଦେଶବହ ଆସିବ ତୁରନ୍ତ ସେ ।
ରାଜା କହିଲେ ନ ରହି ବେଗେ ଯା ଯା । ଅମ୍ଭ ପାଖକୁ ତାକୁ ଆଣ ଯା ।୨୭

ପ୍ରଣିପାତ କରି ପ୍ରଣିଧି୨ ନୃମଣି ପାଣିରେ ଦେଲା ଲିପିକୁ ।
ଜେନାମଣି୩ଙ୍କର ବାଣୀ ଅଛି ଆଣି ଜାଣିବ ଶୁଣିଲେ ତାକୁ ସେ
ପଢ଼ି-ନୃପ ଆନନ୍ଦରେ ଗଲେ ଗଡ଼ି । ପେଣ୍ଡ ଫେଡ଼ି କାଢ଼ିଦେଲେ ଶାଢ଼ୀ

ମାତାଙ୍କ ଜ୍ଞାତାର୍ଥେ ଦାସୀ ହାତେ ପେଷି ଦେଲେ ଏ ଶୁଭ ସମ୍ବାଦ ।
ମିଥିଳା ଯିବାକୁ ଗଜ-ବାଜିରାଜି ସାଜିଲେ ହୋଇ ଆନନ୍ଦ ସେ ।
ମନ୍ତ୍ରୀ-ପାତ୍ର ପୁରୋହିତ କୃତୀ୪ପଞ୍ଚ । ଗହଳରେ ପଥ ଜନ୍ତାଜନ୍ତ ।୨୯।

---

+ ରାମ-ଲକ୍ଷ୍ମଣ — ଚନ୍ଦ୍ର

* ସ୍ୱର୍ଭାନୁ — ରାହୁ (୧) ଦ୍ୱିଦନ୍ତ-ଅରିଦ୍ୱାରେ — ସିଂହଦ୍ୱାରେ (୨) ପ୍ରଣିଧି — ଚର, ସମ୍ବାଦବାହକ (୩) ଜେନାମଣି — ଯୁବରାଜ (୪) କୃତୀ — ପଣ୍ଡିତ

ଶୂର-ସଂକନ୍ଦନ ଅଜଙ୍କ ନନ୍ଦନ ସ୍ୟନ୍ଦନ ଉପରେ ବିଜେ ।
ପୁତ୍ରଙ୍କ ବିବାହ ନିର୍ବାହ ନିମନ୍ତେ ସମାଟିବ୍ରହେ କଲେ ବିଜେ ସେ ।
ସୈନ୍ୟ-ଦଳ ଯେସନ ଅଧୋଭୁବନ । ବଳୀ ଅନନ୍ତନାଗଶୋଭନ ।୩୦।
ଜନତାର କେଉଁ ପ୍ରଦେଶ ଅମରାବତୀ ମତ ଦୀପ୍ତିମାନ ।
ସୁକେଶୀ ବିମାନ ସୁନାସୀର ରତ୍ନ-ସାନୁରେ ଦେଦୀପ୍ୟମାନ ହେ ।
ସୁର-ପ୍ରଭେଦରେ ଶକାର ଉକାର । ବିଳସନ୍ତି ଉଭୟ ସ୍ଥାନର ।୩୧।
ସୁଧର୍ମା ଗନ୍ଧର୍ବ ଶତକୋଟି ସର୍ବ ପ୍ରକାରେ ଯୁଗଳ ସମ ।
ଗଣାଧିପ ସେନାନୀ ରୁଦ୍ର ମୂର୍ତ୍ତିରେ କୈଳାସ ସଦୃଶ ରମ୍ୟ ସେ
ବନ-ପର ଦେଖାଯାଏ କେଉଁ ସ୍ଥାନ । ମକର-କୁଣ୍ଡଳୀ ବିଦ୍ୟମାନ ।୩୨।

---

୩୦ଶ ପଦାର୍ଥ — ମିଥିଳାକୁ ଯାଉଥିବା ସୈନ୍ୟମାନଙ୍କର କେଉଁସ୍ଥାନ ଅଧୋଭୁବନ ( ପାତାଳ ପରି ଦେଖାଗଲା ) ପାତାଳରେ ବଳି (ରାଜା ବିଶେଷ ) ଅନନ୍ତ ( ବାସୁକୀ ) ନାଗ ( ସର୍ପ ବିଶେଷ ) ଶୋଭା ପାଆନ୍ତି । ଏଥିରେ ବଳୀ ( ବଳୁଆ ) ଅନନ୍ତ ( ଅଶେଷ ) ନାଗ (ହସ୍ତୀ) ଶୋଭା ପାଆନ୍ତି ।

୩୧ଶ ପଦାର୍ଥ—ଜନତା (ଲୋକ ଗହଳ) ର କେଉଁ ସ୍ଥାନ ଅମରାବତୀପୁର (ଇନ୍ଦ୍ରପୁର) ପରି ଶୋଭନୀୟ; ଇନ୍ଦ୍ରପୁର ସୁକେଶୀ ( ଅପ୍ସରା ) ବିମାନ (ପୁଷ୍ପକ ଯାନ) ସୁନାସୀର (ଇନ୍ଦ୍ର) ରତ୍ନସାନୁ (ସୁମେରୁ-ପର୍ବତ) ସୁର (ଦେବ)ରେ ଶୋଭନୀୟ ।

ଅନ୍ୟାର୍ଥ—ଏ ଜନତାରେ ସୁକେଶୀ (ଉତ୍ତମ କେଶୀ) ସ୍ତ୍ରୀ, ବିମାନ (କୋଠାଘର ସୁନାଶୀର (ଶିରରେ ସୁନାଥିବା ଲୋକ) ସାନୁରେ (ପଥରେ) ରତ୍ନ ଶୋଭନୀୟ ଉଭୟ ସ୍ଥାନରେ ସୁର (ଦେବତା)ଶୂର (ଯୋଦ୍ଧା) ବିଳାସ କରନ୍ତି । ମାତ୍ର (ଶ ଓ ଉ କାର ପ୍ରଭେଦ)

୩୨ଶ ପଦାର୍ଥ—ଅମରାବତୀରେ ସୁଧର୍ମା ( ଦେବସଭା ) ଗନ୍ଧର୍ବ ଶତକୋଟି ( ବଜ୍ର ) ଶୋଭାପାଏ, ଏଠାରେ ସୁଧର୍ମା ( ଧାର୍ମିକ ବ୍ୟକ୍ତି ) ଗନ୍ଧର୍ବ ( ଘୋଡ଼ା ) ଶତକୋଟି (ଅସଂଖ୍ୟ) ଶୋଭା ପାଆନ୍ତି । ସର୍ବ ପ୍ରକାରେ ଦୁହେଁ ସମାନ । ପୁନଶ୍ଚ ସେ ସ୍ଥାନ କୈଳାସପରି ସୁନ୍ଦର ଦେଖାଯାଉଅଛି, କୈଳାସ ଗଣାଧିପ (ଗଣେଶ) ସେନାନୀ ( କାର୍ତ୍ତିକେୟ ) ରୁଦ୍ର ( ଶିବ ) ମୂର୍ତ୍ତିରେ ଶୋଭିବନ୍ତି । ଏ ସ୍ଥାନ ଗଣାଧିପ ( ଯାଉଥିବା ଲୋକଙ୍କର ନାୟକ ) ସେନାନୀ (ସେନାପତି) ଙ୍କର ରୁଦ୍ର (ଭୟଙ୍କର ) ମୂର୍ତ୍ତିରେ ଶୋଭନୀୟ ।

ପାଲଙ୍କୀ,ପୁନ୍ନାଗ, ନାଗେଶ୍ୱର ଶୃଙ୍ଗୀ, ଅଭୀରୁ ବନ୍ଧୁକ ଦାସୀ ।
ଜନଗହଳର କେଉଁ ସ୍ଥାନରେ ବା ସପ୍ତବାର ଅଛୁ ମିଶି ସେ
ରାଜେ-ଦୀନବନ୍ଧୁ ଦ୍ୱିଜରାଜ କୁଜେ । ବୁଧ ଗୁରୁ କବି ଶୌରି ଭଜେ ।୩୩।
ଉଲ୍ଲାସ କଲ୍ଲୋଳେ ସନ୍ତରି ସମସ୍ତେ ଉଭ ବନ୍ଧୁ ରାମ ନାମ
ବିବିଧ ଶୋଭାରେ ଯାଉଁ ସେ ସମ୍ଭାରେ ପ୍ରବେଶ ମିଥିଳା ଗ୍ରାମ ସେ
ରୁଦ୍ର-ପୂଜ୍ୟ ଅଜ ରଘୁବଂଶଚନ୍ଦ୍ର । ଭାବେ ଗୋକୁଳାନନ୍ଦ ଦରିଦ୍ର ।୩୪।

---

## ନବମ ଛାନ୍ଦ ।

### ରାଗ—କଲ୍ୟାଣ ଆହାରୀ ।

ଜନ-ଅନନ କାନନେ ବିଳସିଲ୍ଲ ଭୂପାଗମ ବାର୍ତ୍ତା-କେଶରୀ
ଅନେକ ଢୌକନ୧ ସହିତ ଜନକ କନକ-ଦଣ୍ଡଛତ୍ର ଧରି
ପୁରୁ ବାହାରି । ଗୁରୁ ପୁରୋହିତ ସଙ୍ଗରେ
ଦଶରଥ ରଥ ପଥରେ ଦେଖିଲେ ତୋଳାଗ୍ରତ କଲେ ସ୍ୱାଗତ୨ । ୧ ।

---

୩୩ଶ ପଦାର୍ଥ—ଜନତାର କେଉଁ ସ୍ଥାନ ବନ ( ଜଳ ) ପରି ଦେଖାଯାଏ ।
ଜଳରେ ମକର (ଜଳଜନ୍ତୁ ବିଶେଷ) କୁଣ୍ଡଳୀ (ସର୍ପ) ଥାଆନ୍ତି
ଏଠାରେ ମକରକୁଣ୍ଡଳ ଲଗାଇଥିବା ଲୋକ ଅଛନ୍ତି । ଜନ-
ଗହଳର କେଉଁ ସ୍ଥାନ ବନ(ଅରଣ୍ୟ) ପରି ଦେଖାଯାଏ ।
ପାଲଙ୍କ୍ୟାଂ ତୁ କୁନ୍ଦଃ କୁନ୍ଦଃ କୁନ୍ଦରୁଃ (ଇତ୍ୟମରଃ)
ପାଲଙ୍କୀ (କୁନ୍ଦ) ପୁନ୍ନାଗ (ପୋଲଙ୍ଗ) ନାଗେଶ୍ୱର; ଶୃଙ୍ଗୀ
( କର୍କଟଶୃଙ୍ଗୀ ) ଅଭୀରୁ (ଶତାବରୀ )
ତେମ୍ବଲୀ ବହୁସୁତାଽଭୀରୁରିନ୍ଦୀବରୀ ବରୀତ୍ୟମରଃ ।
ବନ୍ଧୁକ (ବଧୂଲି) ଦାସୀ (ଦାସକେରଣୀ) ବନରେ ଥାଏ ।

ପାଲଙ୍କୀ (ଯାନବିଶେଷ) ପୁନ୍ନାଗ (ଶ୍ରେଷ୍ଠପୁରୁଷ) ନାଗେଶ୍ୱର (ଶ୍ରେଷ୍ଠ ହସ୍ତୀ) ଶୃଙ୍ଗୀ ( ଶୃଙ୍ଗଥିବା ଜନ୍ତୁ ) ଅଭୀରୁ ( ଭୟହୀନ ଲୋକ ) ବନ୍ଧୁକ-ଦାସୀ (ଧାଈ) ଏ ଜନତାର କେଉଁ ପ୍ରଦେଶରେ ଶୋଭା ପାଆନ୍ତି । ଜନ-ଗହଳର କେଉଁ ସ୍ଥାନରେ ସାତବାର ମିଶିଛି । ଦୀନବନ୍ଧୁ ( ଦୁଃଖୀଙ୍କର ବନ୍ଧୁ ) ଦଶରଥ ଦ୍ୱିଜ (ବ୍ରାହ୍ମଣ) ରାଜ ( କ୍ଷତ୍ରିୟ ) କୁଜେ ( ମଙ୍ଗଳରେ ) ଯାଉ ଅଛନ୍ତି; ବୁଧ (ପଣ୍ଡିତ) ଗୁରୁ ( ବଶିଷ୍ଠ ) କବି; ଶୌରି ( ବିଷ୍ଣୁଙ୍କୁ ) ଭଜୁଅଛନ୍ତି; । ଦିନବନ୍ଧୁ ( ରବି ) ଦ୍ୱିଜରାଜ ଚନ୍ଦ୍ର (ସୋମ) କୁଜେ (ମଙ୍ଗଳ) ବୁଧ, ଗୁରୁ; କବି (ଶୁକ୍ର) ଶୌରି (ଶନି) ଏ ସପ୍ତବାର

(୧) ଢୌକନ—ଉପହାର (୨) ସ୍ୱାଗତ—ସ୍ନେହରେ

ସମୀପରେ ସପକ୍ଷ ରଣ ଭୂମିପ ଭୂମିପରେ କଲେ ବିଜୟ
ପଦଣ୍ଡ ମଣାଇ ନୃପ ଉପଗୃହରେ କଲେ ପରସ୍ପରନାଗମ
ଛନ୍ଦ ଗୃହ । ଅଚ୍ଛି ପଡ଼ଇ ଅପାର
ଦଣନ୍ତି ସେ ବେଳ ଅତେଣୀ ଉପରେ ହରହର ଡେଇ ପ୍ରଚାର ।୨।
ଦଣ୍ଡେ ମାନ ଦାଣ୍ଡେ ଯାନ୍ତେ ଖଣ୍ଡେକୁର ବଅସ ପାଶରେ ମିଳିଲେ
ରାଜର୍ଷି ନିଜ ପ୍ରାସାଦରେ ସାଦରେ ଅଜାତ୍ମଜଙ୍କ ବସାଇଲେ
ପାରିଷଦଙ୍କ । ଦେଲେ ଯଥାଯୋଗ୍ୟ ଆବାସ
ବେନି କୁମାରଙ୍କ ଘେନି ମୁନିବର ରାଜା-ସନ୍ନିକଟେ ପ୍ରବେଶ ।୩।
ତାଙ୍କ ଚରଣେ ପ୍ରଣିପାତ କଲେ ସୁତଦ୍ୱୟ ହୃଷ୍ଟ ମତରେ
ବଶିଷ୍ଠାଦ ଋଷି ଯେତେ ଥିଲେ ବସି ତୋଷିଲେ ତାହାଙ୍କ ବକ୍ତ୍ରରେ
ଏହୁ ସମୟେ । ଜନକଙ୍କ ଡାକଅଣି ଯେ
ଭଣିଲେ କୌଶିକ ପାଣିଗ୍ରହଣର ସମୟ ଆସି ହେଲଣି ଯେ ।୪।
ଉପକରଣକୁ ଯୋଗାଇ ବରକୁ ବରଣ କଲେ ଶତାନନ୍ଦ
ମଣ୍ଡପ ନିକଟେ ଛୁଣ୍ଡ ହେଉ ତୂର୍ଯ୍ୟ-ବାଦ୍ୟ ଦଅନ୍ତି ନାରୀବୃନ୍ଦ
ବେଦ ଉପରେ । ବସି ଦଶରଥ ବଶିଷ୍ଠ
ବାରଣ-ମୁଖଂକୁ ବରଣି କଲେ ଯେ ବରଣ ନିମନ୍ତେ ଅଭୀଷ୍ଟ ।୫।
ସୁନା-କଳଶରେ ସ ତଙ୍କରୁ ନ ଶ୍ରୀ ବାରି ଗୈରି କରି ତୋଳିଲେ
ଗନ୍ଧସାର ଆଦି ସୁଗନ୍ଧ ଦ୍ରବ୍ୟରେ ଦେବ-ଗନ୍ଧର୍ବଣ୨ ସ ହେଲେ
ଚୂଆ ଘେନି । ଦର୍ପୂର ଅଙ୍ଗରେ ବୋଳିଲେ
କୋକିଳସ୍ନାନ୩ ସେ କୋକିଳଭାଷୀଙ୍କ ସକଳ ବାଳୀ ମିଳି କଲେ ।୬।
ଗୃମର-ଶକ୍ତିର ଗୃମୀକର-ପ୍ରସାଧନୀରେ ସାମଳିଲେ ୪ ମୀ ।
ନାନା ଅଳଙ୍କାରେ ଭୂଷିତ କରିଲ ସୁମତନ ମଣ୍ଡାଇଲେ ଦମ୍ପତୀ
ଅଛ ଯତନ । ସୁଗନ୍ଧ ତେଲ ଲଗ ଛଲେ
ଭଡ଼ା ଭଡ଼ା୫ ଯୁବା-ଧୈର୍ଯ୍ୟ-ଭଞ୍ଜା ଜଡ଼ା ମଲ୍ଲୀପ ଖଡ଼ା ବେଢ଼ାଇଲେ ।୭।

(୧) ବାରଣମୁଖ---ଗଣେଶ (୨) ଗନ୍ଧର୍ବଣ--ବିବାହର ପୂର୍ବଦିନ ବରକନ୍ୟାଙ୍କ ଠାରେ ଗନ୍ଧା ... ସ୍ନାନ-ବିଧି (୩) କୋକିଳ-ସ୍ନାନ—ବାହୁଡ଼ା ଚାଥ ... (ବିବାହ ଦିବସର ପ୍ରତ୍ୟୁଷରେ କନ୍ୟା କରିବା ସ୍ନାନ) (୪) ଗୃମୀକର-ପ୍ରସାଧନୀ—ସୁନାପାନିଆ (୫) ଭଡ଼ା ଭଡ଼ା---ଗଠେ ଗୁଳିରେ ବନ୍ଧା

ପାଟଳୀ ନଳିନ ତଳ ଜାତ ମଲ୍ଲୀ ବନ୍ଧୁକ ଚମ୍ପକ ସମ୍ଭବ
କର୍ଣ୍ଣ ନୟନ ନାସିକା ହାସ୍ୟ ଓଷ୍ଠ ବର୍ଣ୍ଣରେ ଥିବାରୁ ଏତେକ
ଗୁଣା ଗଣିବ । ବିଗ୍ରହ ନ ଦେଲେ ଦେହରେ
ଧବଳୀ-ପୁଳୀକୁ ଧାନୀ ଧାନୀ(୧)-ପୁଷ୍ପମାଳା ଦେଲେ ଅତି ସ୍ନେହରେ ।୮।
ସୁଙ୍ଗୀନ ବସନ କ୍ଷୀଣମଧ୍ୟମାଙ୍କୁ କୁମ୍ଭ ପିନ୍ଧାଇଲେ ଯତନେ
ଅନୁମତ ହେଲା ବାସ ଅନ୍ତର୍ଯ୍ୟଳ ଲବଣ-ଗୃମସ୍ତ ପତନେ
କାମ ତଶିଖ । ଯୋଗି ଲଖ କଲ୍ପ ରସିକେ
ଅତତ ହେଲେହେଁ ଷଡଠାରୁ ବଳୀ ପୀଡ଼ା ଜାତ କଲ୍ପ ଅଙ୍ଗକେ । ୯ ।
ବର-କନ୍ୟାଙ୍କର କର ବିପ୍ରବର ଦର୍ଭରେ(୨) କରନ୍ତେ ବନ୍ଧନ
ମାରଣା ମାରର ଶର ବାରଣକୁ ଉପାୟ ହେଲା କି ସାଧନ
ଶିଳା-ରୋହଣ । ତାଙ୍କୁ କରାଇ ବହନ
ଶଯ୍ୟାରେ ଲଜ୍ଜାକୁ ସଜ୍ଜାଦେବାଲାଗି ଲାଜକୁଞ୍ଜ(୩) କଲେ ସେ ଦହନ ।୧୦।
ବନ୍ଦାପନା ସାରି ଅଗ ପଛ କରି ବସ ତଳେ ନେଲେ ବାସକୁ
ପାଞ୍ଚମନେ ପାଞ୍ଚ ପଞ୍ଚଶରପ୍ରାସ ନାଶପାଇଁ ପଞ୍ଚଗ୍ରାସକୁ
ଯଥାବିଧିରେ । ସାରିଲେ କ ରଦ-କେଶାଏ
ବରକନ୍ୟାଙ୍କୁ ଯଥାସ୍ଥାନେ ବସାଇଲେ ଜନକପୁରସ୍ଥ ଦାସୀଏ । ୧୧ ।
ସୁମିତ୍ରାଙ୍କ ଜ୍ୟେଷ୍ଠ ସୁତକୁ ଊର୍ମିଳା କନିଷ୍ଠଙ୍କୁ ଶ୍ରୁତକୀର୍ତ୍ତି ଯେ
ଦର୍ଭରେ ଭରତ ମାଣ୍ଡବୀ କରକୁ ମୋଦଭରେ ବାନ୍ଧ ଯନ୍ତ ସେ
ଦେଲେ ଯୌତୁକ । ତୁରଙ୍ଗ ମାତଙ୍ଗ ଦାସୀ ଯେ
ଦଶଦୋଷ କ୍ଷମା କରିବ ହେ ଦଶରଥ ବିଦେହେଶ ଭାଷେ ଯେ ।୧୨।
ମଧୁଶଯ୍ୟାପୁର ମଧୁର କରଣ ବନ୍ଧୁକ-ଅଧରୀ(୪) ମଣ୍ଡିଲେ
କେଳିପୁରେ ରତ୍ନଦୀପାବଳୀ ଜାଳି କର୍ପୂର-ଧୂଳିକ ବାଣ୍ଟିଲେ
ମଣି ମାଣିକ୍ୟ । ଖଞ୍ଜି ଚନ୍ଦ୍ରାତପ ଟାଣିଲେ
ବିଧୂହାସୀ ମଧୁପକେଶୀ-ବଧୂଙ୍କୁ ବଧୂଙ୍କ(୫) ପାଶରେ ଛାଡ଼ିଲେ ।୧୩।
ମଦନ ସଂହନ ପରି ସେ ସଦନ ବୋଧ ହେଲା ବୁଧ ଗଣରେ
ମଣ୍ଡିତ ଅଶୋକ ପଦ୍ମ ନୀଳୋତ୍ପଳ ନିଅଳ କୁସୁମ ଚୂତରେ

---

(୧)ଧାନୀ—ଧାଈ, ଅଁଳା (୨) ଦର୍ଭ—କୁଶ (୩) ଲାଜ—ଲିଅ—(ବିବାହ ବେଦୀରେ ଲିଆ ହୋମ) (୪) ବିଦେହେଶ—ଜନକ(୫) ବଧୂ—ବନ୍ଧୁ (ଶ୍ରୀରାମଚନ୍ଦ୍ର)

ମୀନକେତନ । ନିକେତନବାଢ଼େ ଜନିତ
ଧନଦଭବନ ୧ ସମ ଶୋଭିବନ ମନରେ ହୁଅଇ ପ୍ରତୀତ ।୧୪
ଅଳକା ସର୍ବମିଜ ପୁଣ୍ୟଜନେଶ ୨ ପୁଷ୍ପକରେ ତଥି ସଦନ
ନୀଳ ଲୋହିତକର ରଞ୍ଜିତ ହୋଇଛନ୍ତି ସ୍ୱଚ୍ଛ ହରନୀଳ ଲୋହିତ
କେଉଁ ଉପମା । ଦେବା ସେ ପୁର-ସୁଷମାକୁ
ସ୍ୱର୍ଗ ବୋଲିଇବା ଅଯଥା ନୁହଇ କହିବାରୁ ବସ୍ତୁ ରମାଙ୍କ ।୧୫।
ପରିହାସ କରି ସଖୀଏ ଭଣିଲେ ଧନୁର୍ଦ୍ଧର ବୀର ପୁରୁଷ
ଶିରୀଷଅଙ୍ଗୀକୁ ନ ସହିବ ଅଙ୍ଗ ଗିରିଶ-କାର୍ମୁକ ସଦୃଶ
ଦାରୁ-ଭେଦନ । ଯମ ହେଲେ ହେଁ ଷଟ୍ପଦ
କମଳ ମୁଦ୍ରିତ ହେଲେ ବନ୍ଦୀ ହୁଏ,ସହି ସ୍ନେହବଶେ ଆପଦ ।୧୬।
କୃପାଣ ମାର୍ଗଣ ଚାଳିବାରେ ଟାଣ ହୋଇଥିବ କର ଦୁଇ ଯେ
ଆପଣ ତ ବଳୀ ସେନ୍ତ ତ ଅବଳା ବଳଇ ପାରିବ ନାହିଁ ସେ
ବଙ୍କ ସର୍ବଙ୍କ । ଅଧିକ କି କହିବୁଁ ପାଶେ
ଅଳିପରି କେଳି କରିବ ଯେଭଳି ପ୍ରସୂନ ବଣି ମଧୁ ଚୂଷେ ୧୭।
ଏହିପରି କହି ସଖୀମାନେ ତହିଁ ନ ରହି ଫେରିଲେ ସ୍ୱବାସେ
କୋଦଣ୍ଡ-କମାଣଧାରଣ ପ୍ରମାଣ କଲେ ଯୋଜନଗନ୍ଧା ପାଶେ
ଅନ୍ୟ ପ୍ରମଦା । କଦାପି ବିବାହ ନୋହିବ
ସୀତା ବର୍ଜ୍ଜି ତୁଇଁ କହିଲେ ମୁଁ ଅନ୍ୟ ପୁରୁଷ ମୁଖ ନ ଚାହିଁବି ।୧୮।
ମଦଜକ ଅଂସେ ଦରଜପକ୍ଷୀଅ ଗରଜ ସରଜଲ୍ପ କାମ
ନିଧୁବନ ୩ ସୂଚୀଭେଦନେ ସୀବନ ୪ କଲ୍ପ ସମ୍ଭବ ସୀତା-ଶ୍ରମ
ଘନ କୋଳରେ । ଚପଳା କଲ୍ପ କି କ୍ରୀଡ଼ା ଯେ
ଦମ୍ପତି ରତି-ସମ୍ପତ୍ତିରେ ମାତିଲେ ମତିରେ ନ ରଖି ବ୍ରୀଡ଼ା ୫ ଯେ ।୧୯।
ରଜନୀଶେଷରେ ସଜନୀସମାଜ ସଜ ନୀରଜବଦନୀଙ୍କ
ଛଳ ଶ୍ଳେଷ ହାସ ରସରେ ଭୂଷନ୍ତେ ଆସ୍ୟ ପୋଛିଲେ ମେଦିନୀକ
ପୀଠ ଉପରେ । ବସାଇଲେ ବସନ୍ତଧିକ୍କି
ସୁବାସବାରିରେ ସ୍ୱଚ୍ଛଜଣଙ୍କର ସାରିଲେ ମାର୍ଜଣାଧିକ ।୨୦।

---

(୧) ଧନଦଭବନ-କୁବେରପୁର (ଅଳକା)
(୨) ପୁଣ୍ୟଜନେଶ-କୁବେର (୩) ନିଧୁବନ-ରତିକ୍ରୀଡ଼ା
(୪) ସୀବନ—ସେଲାଇ (୫) ବ୍ରୀଡ଼ା—ଲଜ୍ଜା ।

ଦଶରଥଙ୍କର ଗୃହ ଜଣାଇଲ ମିଥିଳନାଥଙ୍କ ଅଗରେ
ରାଜାଙ୍କ ଆଦେଶ ଯିବାକୁ ସ୍ୱଦେଶ ବିଦାୟ କରନ୍ତି ବେଗରେ
ଶୁଣି ଜନକ । ମୋଦଭରେ କଲେ ମେଲାଣି
ଦାସ ଦାସୀ ଗଜ ଅଶ୍ୱ ରଥ ଧେନୁ ନାନା ଯୌତୁକ ଦେଲେ ଆଣି ।୨୧।
ବାଦ୍ୟନାଦ କରି ସମସ୍ତେ ଗମନ୍ତି ସ୍ୱର୍ଗରେ ଦେଖନ୍ତି ଅମର
ଯମସମ ଭୀମମୂର୍ତ୍ତି ଧରି କରି ଯମଦଗ୍ନିଙ୍କର କୁମର
ହେଲେ ବାହାର । କରକୁ ପକାଇ ବାହାର
ରାଗ କରି ବାଘପରି ଗରଜିଲେ ଭାର୍ଗବ ରାଘବ ଆଗରେ ।୨୨।
ଛୋକାଠା ତୁ ପୋକା ଧନୁ ଭାଙ୍ଗି ଧୋକା ନ କରି ଶଙ୍କା ବରଜିଲୁ
ଶଶା ସିଂହକୁ ଦଶା ଦେଲ ପରିପ୍ରାୟେ ସଂସାରେ ପ୍ରଶଂସା ଅର୍ଜିଲୁ
ଧନମଦରେ । ଏ ବୀର-ବାଜା ବଜାଉଛୁ
ଖଗ ହୋଇ ମୃଗରାଜ ମାର୍ଗରେ ତୁ ବଡ଼ସରାଗରେ ଯାଉଛୁ ।୨୩।
ଭୂସୁର୧କୁଳରେ ଅସୁରାଚରଣେ ପ୍ରସୂକୁ୨ ପଶୁପ୍ରାୟ ଜାଣି
ବସୁଧା ମଧ୍ୟରେ ଯୋଦ୍ଧା ବୋଲାଉଛ ପ୍ରଶଂସି ହେଉଅଛ ଅସି
କ୍ଷତ୍ରିଧର୍ମ୍ମକୁ । ବ୍ୟଭିଚାରପରି କରିଛ
ମରଣ ବରଣ କରି କି କାରଣ ଭାଷିଲେ ସୁମିତ୍ରାଙ୍କ ବତ୍ସ ।୨୪।
ରେଣୁକାତନୁଜ୩ ରାମଅନୁଜଙ୍କୁ କହିଲେ ରେ ପାପୀ ମନୁଜ
ପିତା ତୋର ଚିନ୍ତା କରି କାନ୍ତାମଧ୍ୟେ ଲୁଚିଲା ଦେଖି ମୋ ଗର୍ଜନ;
ତା'ର ସୁତ ତୁ । ବୋଲାଉଛୁ ବୀରଶେଖର
ଚଳାଉଛୁ ପୁଣି ଉଗ୍ରଫଣୀକୁ ନ ଜାଣୁ କି ବିଷ ପ୍ରଖର ।୨୫।
କହିଲେ ଲକ୍ଷ୍ମଣ ମେ ତ ବିଚକ୍ଷଣ୪ ରକ୍ଷଣାନାମରେ ତୁମ୍ଭର
ମୁହିଁ ଲଚିବାରୁ ବଢ଼ିଅଛ ତୁମ୍ଭେ ଘୁଞ୍ଚିଯା ପହ୍ଲଜ୫ ନ କର
ଉପକାରୀର । ପ୍ରତ୍ୟୁପକାରୀ କି ହେଉଛ
ବୃଦ୍ଧ ବୋଲି ଉପରୋଧ କରିବାରୁ ପ୍ରତିଶୋଧ କିବା ଦେଉଛ ।୨୬।

---

(୧) ଭୂସୁର—ବ୍ରାହ୍ମଣ (୨) ପ୍ରସୂ—ଜନୟିତ୍ରୀ (ମା) (୩) ରେଣୁକା-ତନୁଜ—ପରଶୁରାମ (୪) ବିଚକ୍ଷଣ—ପଣ୍ଡିତ, ପ[illegible] (୫) ପହ୍ଲଜ—ଗଣ୍ଡ[illegible], ଗୋଳମାଳ, ବିବାଦ ।

ଘନେ ବନ (୧) ପାନ କରୁଥିଲେ ଘୂର୍ଣ୍ଣି (୨) ଦୃଷ୍ଟି କରି ବନପତି ଯେ
ବ୍ୟାଘାତ କରିବି ବଗ୍ରୃହ ଲଲିତ ଦେଖି ବଲ୍ଲହ ବଦତି ଯେ
ଜଣା ପଡ଼ିଲା । ଭୟରେ ହୋଇଲା ଗୁପତ
କେଶରୀ ଭାଷିଲ ଏ କଥା ଜଗତ ମଧ୍ୟରେ କରିବୁ ବ୍ୟକତ ।୨୬।
ସେ ପ୍ରକାରେ ଅମ୍ଭ ବାପା କୃପା କରି ଗୋପନ କଲେ ଅପଣାକୁ
ପାପକୁ ଡରି ସେ ନ ମାରିବାରୁ ଏ ସିଦ୍ଧି ହୋଇଲା ଅପଣଙ୍କୁ
ବଢ଼ ବ୍ୟାଘ୍ରକୁ । ଯନ୍ତ୍ରୁ ବାଢ଼ିଲ ଯେପରି
ଖାଇବାକୁ ସେହି ଉଦ୍ୟତ ହୋଇଲା ତୁମ୍ଭର ପ୍ରକୃତ ସେପରି ।୨୮।
ଶିଶୁ ପରି ଦଣ୍ଡ ମାତ୍ର ଯାହା ଭ୍ରଷ୍ଟ ନାଶୁ ମୋହର କଟିବଳକୁ
ମୋଢ଼ ଫୋପାଡ଼ିବ ଗ୍ରୀବାକୁ ଟିକିବାକୁ ଦେବ ଯଥା ଅଳ-ବେଳକୁ
ପିଲଟିଏ ତୁ । ତୋହ ସଙ୍ଗେ କି ସମ୍ଭାଷଣ
ଧନୁ ଯେ ଭାଙ୍ଗିଛୁ ଅଗ ତାହା ଦେଖା ଶୁଣି ରଘୁନାଥ ଭାଷଣ ।୨୯
ପିଲ ଯା ବୋଇଲ ଅପଣ ତ ବଳ୍କ ସେ କଥା ନ ନାଥ କାନକୁ
କ୍ଷତ୍ରିୟ-ହନ୍ତା ବଳତା ନୈଷ୍ଠାଭାଗ କରି ତୁ ମୋହର ନାମକୁ (୩)
ପ୍ରାନ୍ତ ଭାଗକୁ । କହି ଦେଖାଉଛୁ ଧୀରତ୍ୱ
ବଢ଼ାଇ ଛଡ଼ାଇ ଦେବ ଅଜ ତୋର ଏ କାର୍ମୁକ ଦେଖି ଧର ତ ।୩୦
ଭାନୁବଂଶଜଙ୍କ ଯମଦଗ୍ନିସୂନୁ ଧନୁକୁ ବଢ଼ାଇ ଦେବାରୁ
କଳାଶୂନ୍ୟ ହେଲ ଦଳାସ୍ତବଦନ ବଳହୀନ ହେଲ ଶିବାରୁ
କରକୋ ରକ୍ଷ (୪) । କର କଲେ ସ୍ତୁତି ପଠନ
ହରି ତୁମ୍ଭେ ଅବତରି ଅଛ ଧରି ମାନବ-ମୂର୍ତ୍ତି ଏ ଭୁବନ । ୩୧ ।
ପରଶୁପାଣି ପରଶୁ ଦର୍ପହତ ହୋଇ ମହେନ୍ଦ୍ରକୁ ଚଳିଲେ
ବଳଳ ବରଜ ଦଳ ବଳ ଘେନି ନୃପାଳ ଅଯୋଧ୍ୟା ମିଳିଲେ
ପୁତ୍ର-ବଧୂଙ୍କୁ । ଅବାସକୁ ନେଲେ ତକ୍ଷଣ
କଟକ (୫)-ଛଟକ ଦେଖିଲେ ଷଟକ ଦେବ ଦର୍ଶକରି ଈକ୍ଷଣ (୬) ।୩୨।

---

(୧) ବନ — ଜଳ (୨) ଘୂର୍ଣ୍ଣି — ବରାହ
(୩) ପରଶୁରାମଙ୍କ ପ୍ରାନ୍ତଭାଗ ସ୍ୱର୍ଗ (୪) କରକୋରକ — ଯୋଡ଼ହସ୍ତ
(୫) କଟକ — ରାଜଧାନୀ (୬) ଈକ୍ଷଣ — ନେତ୍ର

ଜ୍ୟେଷ୍ଠ ମଧ୍ୟମ କନିଷ୍ଠ ନନ୍ଦନଙ୍କୁ ଯୁଧାଜିତଙ୍କର ୧ ସହିତେ
ମାତୁଳାଳୟକୁ ପଠାଇଲେ ରାଜା ଶ୍ୱଶୁର ଦେଖିବା ନିମନ୍ତେ
ରାମରାଜ୍ୟରେ । ଶ୍ଳାଘ୍ୟ ହେଲେ ଶୁଭକାର୍ଯ୍ୟରେ
ଏପରି ବେନି ଅଧିକ ଦଶବର୍ଷ ଗତ ହେଲା ଅଭଶ୍ୟରେ । ୩୬ ।
ମରିବା କାଳରେ ଯମକୁ ଡରିବା କଥାକୁ ହରିବା ହେବ ହେ
କୁଣ୍ଠିତ ନ ହୋଇ ଦାସକ୍ରୀ ବୈକୁଣ୍ଠ ବୈକୁଣ୍ଠରେ ବାସ ଦେବ ହେ
ଏହି ବିନତ । ଅରବିନ୍ଦ-ପଦଦ୍ୱନ୍ଦ୍ୱର
ସଂସାର-ସରିତୁଁ ତରିବା ନିମନ୍ତେ ବୃଜିନ୨ ଗୋକୁଳାନନ୍ଦର । ୩୪ ।

—*—

## ଦଶମ ଛାନ୍ଦ

### ରାଗ—କାମୋଦୀ ।

ଅଦ୍ଭୁତ ଉପୋଦ୍ଧାତ କରି ମନର ହିତ ସନ୍ତତ ଚିତ୍ତରେ ଯେ ଚିନ୍ତି
ଶୁଣିବେ ଏ ଛାନ୍ଦ ତାଙ୍କ ହୃଦ-କୁମୁଦ ମୁଦକୁ କରିବ କଥିତ
ସେ ନରଈଶ । ଶୁଶୁରିବାସେ ବେନିଶିଷ । ଯେଷେ ଚିନ୍ତିତ ଅହର୍ନିଶ
ଦେଶଶାସନେ ଦଶରଥ ହୋଇ ଅବଶ କଲେ ଅବସରାଭିଳାଷ । ୧ ।
ଏକଦା କରି ପାରମିକ ସାମନ୍ତ ଗୋହପ୍ରଜ-ମସ୍ତକେ ରାଜଛତ୍ର
ଟେକାଇବା କଥାକୁ ଉତ୍ଥାପନ କରନ୍ତେ ତଥାସ୍ତୁ ଭାଷିଲେ ସମସ୍ତ
ସେ ଦଶରଥ । ସୁମନ୍ତ୍ରକୁ ଭାଷି ଏମନ୍ତ । ସୁତ ମୋ କରିବ ରାଜ୍ୟ
ଉଚିତ ନାଗରିରେ ଏ ଖବର ନଗରେ ସଙ୍କେତ କରୁ ପ୍ରଭୃତି । ୧ ।
ସିତବାସ ସୁବାସଦ୍ରବ୍ୟ ସୁବାସରସ୩ ଶୁଷ୍ମାବାସରେ୪ ସ୍ୱରେ୫ ସ୍ଥିତ
ଗୋଦ୍ଭୂତ ମଧୁଦୁଗ୍ଧ ଦଧି କନ୍ଦ ବିବିଧପ୍ରସୂନ ଚନ୍ଦନ ଅକ୍ଷତ
ସେ ଅସ୍ତ୍ର ଶସ୍ତ୍ର । ବ୍ୟଜନ ଚାମରାତପତ୍ର । ଧ୍ୱଜ ଦୂର୍ବାବଦରୀପତ୍ର
ନୃତ ନିକ୍ଷତ । ସତ ଶାତକୁମ୍ଭର୬ ଶତକୁମ୍ଭ ନାନା ତୀର୍ଥାମ୍ବୁଯୁକ୍ତ । ୩ ।

---

(୧) ଯୁଧାଜିତ—କେକୟ ରାଜପୁତ୍ର (ଭରତଙ୍କ ମାମୁଁ)
(୨) ବୃଜିନ—ପାପୀ
(୩) ରସ-ଜଳ
(୪) ଶୁଷ୍ମାବାସରେ-ଅଗ୍ନ୍ୟାଗାରେ
(୫) ସ୍ୱରେ—ବେଦବିଧିରେ
(୬) ଶାତକୁମ୍ଭ—ସୁବର୍ଣ୍ଣ

ଭର୍ମ[1]ନିର୍ମିତ ଶୃଙ୍ଗ ଗୋଜାପତ[2] ତୁରଙ୍ଗ ମାତଙ୍ଗ ଚତୁରଙ୍ଗଦଳ
ଅଚ୍ଛିଦ୍ର ଦ୍ୱୀପୀଚର୍ମ ଭଲ୍ଲମଚ୍ଚର ବର୍ମ ରଖ ସଜାଳକୁ ସକଳ
ସେ ପ୍ରତିହୃତ । ଅଜହୁଁ ହୋଇ ଅମନ୍ଦିତ । ସମ୍ପଦ ମଣି ଦିବ୍ୟରଥ
ଗନ୍ଧ-ଔଷଧି ସର୍ବ-ଔଷଧିଅଦ ସର୍ବଦ୍ରବ୍ୟ ପୂର୍ବରୁ ସମ୍ପାଦିତ । ୪ ।
ଅଯୋଧ୍ୟାପୁର-ଶଚୀବର ଆଦେଶ ସଶିବର ବାରତା ଗୃହ ପ୍ରତି
ସିଦ୍ଧିପଦ କଥିତ ପଦାର୍ଥ କରି ଅର୍ଥ ଦେଇ ପଦାର୍ଥ ଅଣି ଏଥି
ସେ ଦୂତ ଦ୍ରୁତ । ଗଡରେ ଗମି ଇତସ୍ତତଃ । ଭ୍ରମି ଦୂତେ କଲେ ସମସ୍ତ
ସାକେତପୁରଲୋକେ ଏକେ ତ ସୁଖୀ ଲୋକେ ଅଭିଷେକେ ସେ ବୃଦ୍ଧି ପ୍ରାପ୍ତ
ନିକେତନେ ଯତନ କରି ମଣ୍ଡି ରତନ କେତନ ବଡ଼ଭୀ ମଣ୍ଡନ
ଶୀଳା ନାସା ଦେହଳୀ ଚର୍ଚ୍ଚିତ ନାନାଭିଳ ତୋରଣେ ତୋରଣ ଶୋଭନ
ସେ ଦଶାନନ । ଅନୁଜ ଆଦ୍ୟ ବେଳବର୍ଣ୍ଣ ରମ୍ଭା ପୟୋଧର ସ୍ଥାପନ
ଗଜାନନ ବାହନ ପଞ୍ଚଶାସନଯାନ ତଦୁପଚ୍ଛେଣ୍ଡ ବିଦ୍ୟମାନ । ୫ ।
ମାନସରେ ଉଲ୍ଲାସ ସହକାର ପଲ୍ଲବ ବଲ୍ଲକେ[3] କରିଲେ ବନ୍ଧନ
ପ୍ରାକୃତଙ୍କ କୃତ୍ରିମ ପ୍ରସୂନ ଭଳି ଭଳି ଛବିରେ ପୂର୍ଣ୍ଣ ସର୍ବସ୍ଥାନ
ସେ ଗନ୍ଧବାରି । ଚନ୍ଦନ ଚୂଆ ଅଦିକରି । ସଦନରେ ସେଚନ କରି
ମୁକ୍ତା ପ୍ରବାଳ ମଣି ମାଣିକ୍ୟ ନୁହେଁ ଗଣି ଦିଶିଲା ସ୍ୱର୍ଗେ ତା ମାଧୁରୀ ।୬।
ଶୃଙ୍ଗାଟକ[4]ଘାଟ ଛକରେ ଅଟକ ହେଲା ଦର୍ଶକର ଲୋଚନ
ଗହନ କୋଳାହଳ ସଲିଳଧିକଲ୍ଲୋଳ-ରେଳ[5]କୁ ବଳିଗଲା ଘେନ
ସେ ନରନାରୀ । ରାଘବ ଶୁଭକୁ ବିଚାରି । ଧନ ରତନ ଦାନ କରି
ମିଳି ସକଳ ବାଳୀ ଦିଅନ୍ତି ହୁଳହୁଳି ଉଚ୍ଛୁଳି ପଡୁଅଛି ପୁରୀ ।୭।
ସଙ୍ଗ ହୋଇ ପ୍ରସଙ୍ଗ ପକାଇ ଜନସଂଘ ସଙ୍ଗୀତ ପଙ୍ଗତରେ ରତ
ଦୃଷ୍ଟିରେ ବୃଷ୍ଟିକାଳ ସୃଷ୍ଟି କରଇ ଜାଳ ରନ୍ଧ୍ର ଇରମ୍ମଦ[6]ବତ

---

(୧) ଭର୍ମ—ସୁବର୍ଣ୍ଣ (୨) ଗୋଜାପତ—ବୃଷଭ
(୩) ବଲ୍ଲକ—ଚୂଳଓଳ (୪) ଶୃଙ୍ଗାଟକ—ଚତୁଷ୍ପଥ; ଚଉରାସ୍ତା ଛକ
(୫) ରେଳ—ଗର୍ଜନ (୬) ଇରମ୍ମଦ—ବିଜୁଳି

ଶୀଳା......ବିଦ୍ୟମାନ । ରାମ ରାଜା ହେବେ ଏହା ଶୁଣି ଅଯୋଧ୍ୟାପୁରବାସୀ ନିଜ ନିଜର ଶୀଳା (ଏରୁଣ୍ଡି ବନ୍ଧ) ଦେହଳୀ (ଦାଣ୍ଡପିଣ୍ଡା) ଚର୍ଚ୍ଚିତ କରି ଦଶାନନ ଅନୁଜ (କୁମ୍ଭକର୍ଣ୍ଣର ଆଦ୍ୟବେଳବର୍ଣ୍ଣ କୁମ୍ଭ) ଅର୍ଥାତ୍ ପୟୋଧର (ନାରିକେଳ) ଯୁକ୍ତ ପୂର୍ଣ୍ଣକୁମ୍ଭ, କଦଳୀଗଛ, ଗଣେଶ, ହାତୀ, ପ୍ରଭୃତି ସ୍ଥାପନ କଲେ ।

ସେ ଦେଶାଭ୍ରବଶି । ଧାରାଧର୧ ପ୍ରକାର ଦଶ । ସାକେତ-ଅନନ୍ତେ୨ ପ୍ରକାଶି
ଦର୍ଶକହୃଦ-ବସୁଧାରେ ଆନନ୍ଦ-ସୁଧା ନେତ୍ର-ବାରିଯୋଗେ ବରଷେ । ୯ ।
ମୁରଜ୩ ବାଦ୍ୟନାଦ ନୀରଧର ଶବଦ ଚିତ୍ର ଗୋଧି-ଅଙ୍କ ରୂପ୪
ଲୁମ୍ଭୀର ଗତାଗତ ସଙ୍କର୫ ଅବସ୍ଥିତ ଯୋଗେ ଷୀରଜଦ୍ଧିରୂପ
ସେ ଲକ୍ଷ୍ମୀଯୁକ୍ତ । ବନ୍ଦିତ ବେହିତ ବଦାତ । କମଠ ଚନ୍ଦ୍ର ବିଭୂଷିତ
ଶଙ୍ଖ ପ୍ରବାଳ ତେଜ କଣ୍ଠ ଓଷ୍ଠରେ ହେଜ ଧରଅଛନ୍ତି ନାରୀବ୍ରାତ୬ । ୧୦ ।
ମନ୍ଥର କୁମନ୍ତ୍ରଣା-ମନ୍ଦରରେ ଯନ୍ତ୍ରଣା ମନ୍ଥନେ ଦେବାକୁ ବିଶୃର
ମଧ୍ୟମାରଣୀ ପାଶେ ବାହାର ହେଲା ଶ୍ରେଷେ ଭସ୍ତ୍ର କାରଣ ପଶୁର
ସେ କରଯୋଡ଼ି । ଚରଣଯୁଗଳରେ ପଡ଼ି । କ୍ରୋଧରେ ଅଧର କାମୋଡ଼ି
ଲପନକୁ କମ୍ପନ କରି କହେ ଗୋପନ ବଚନ କହୁଛୁ ମୁଁ ଫେଡ଼ି । ୧୧ ।
ନୃପତିଙ୍କର ଅତି ପ୍ରିୟବତୀ ଯୁବତୀ ଥିଲୁ ମଣ୍ଡରେ ଥିଲି ଚିନ୍ତି
କହି ନୋହିବ ସହି ଅହି ପ୍ରକାରେ ସେହି ଅହିତ କହିଲେ ତୋ ପ୍ରତି
ଗୋ ମନ୍ଥାସତି । ଶୁଣିଲ କେତ୍ରୁଁ ସେ ଭାରତୀ । ଖଣ୍ଡ ଦେମା ହେଉଛୁ କରତି
ଏହି ଅଯୋଧ୍ୟାଗ୍ରାମ ସପତ୍ନୀସୁତ ରାମ ପ୍ରଭାତେ ହେବ ନରପତି । ୧୨ ।
ଅଶ୍ୱପତି-ଦୁହିତା୭ ଭଷିଲେ, ହିତବାର୍ତ୍ତା ଭାଷି ତୋଷିଲୁ ଚିତ୍ତ ମୋର
ହାର କର ବାହାର ପ୍ରଦାନ ଉପହାର ମାନ୍ଥାରକରମୁଖୀ ତ୍ୱରି୮
ସେ ଦଶରଥ । ରାମଙ୍କୁ କରି ନରନାଥ । ପୂର୍ଣ୍ଣ କରିବେ ମନୋରଥ
ଭରତଠାରୁ ପ୍ରିୟ ରାଘବ ଅତିଶୟ ଦେଖିବି ତାହାର ରାଜଶ୍ରୀ ସେ । ୧୩ ।
ସପତ୍ନୀ୯ ସୁଖ ଦେଖି ଦୁଃଖିନୀ ନୋହୁ ସଖୀ ଦେଖିଲି ବୁଦ୍ଧି କଡ଼ ମନ୍ଦ
ତା ସୁତ ହେବ ରାଜା ଭରତ ତା'ର ପ୍ରଜା ତୁ ପୁଣି ହେଉଛୁ ଆନନ୍ଦ
ଗୋ ଦଭଗିନି । ତୋପରି ଅଛୁ କେ କାମିନୀ । ହୋଇଛୁ ସ୍ୱାମୀ-ସୁହାଗିନୀ
ରହିବ ନାହିଁ ସହି ଧଇ ଦୃଷ୍ଟି ତୋଠାଇଁ ପାହିଲେ ଅଜ ଏ ଯାମିନୀ । ୧୪

---

(୧) ଧାରାଧର—ମେଘ (୨) ସାକେତ ଅନନ୍ତେ—ଅଯୋଧ୍ୟା-ରୂପକ ଆକାଶରେ, (୩) ମୁରଜେ—ମୃଦଙ୍ଗ (୪) ଗୋଧିଅଙ୍କରୂପ—ଇନ୍ଦ୍ରଧନୁ (୫) ସଙ୍କର—ମତ୍ସ୍ୟବିଶେଷ (୬) ବ୍ରାତ—ସମୂହ (୭) ଅଶ୍ୱପତିଦୁହିତା—କୈକେୟୀ (୮) ତ୍ୱରି—ଶୀଘ୍ର (୯) ସପତ୍ନୀ—ସଉତୁଣୀ

ମଣିହରା ଫଣିନୀ ପରି କୈକେୟୀରାଣୀ ଶୁଣି ଏ ବାଣୀକି ହୋଇଲେ
ରାଗରେ ଟମ ଟମ ହୋଇ ବେଗରେ ତମମୟ କ୍ରୋଧ ଗାରେ ଗମିଲେ
ସେ ନରପତି । ସମ୍ମୁଖେ ପଟଣେ ଆନନ୍ଦମତି । ପ୍ରବେଶ ସନ୍ଦେଶ ଝଟିତି
ହୀରକଦଶନୀର ଈକ୍ଷଣୁ ନୀରଧାର ବହିବାର ଦେଖି ଭୂପେନ୍ଦ୍ର ।୧୫।
ଦାସ ଦୋଷକୁ ନାଶ ହାସପ୍ରକାଶ ଆସ ବସ ପାଶରେ ରସବତୀ
ବୀଣାଜିଣାବଚନା କରୁଣା ଗୁଣା କଣା ନରକୁ କରିବା ଅନୀତି
ଗୋ ଗଜଗତି । ବ୍ୟାକୁଳ କରି ମୋର ମତି ଯେ ଅତିରେ ଲଭିବୁ କି ଖ୍ୟାତି
ତୋର ପ୍ରସନ୍ନ ଆସ୍ୟ ଦର୍ଶନ କଲେ ଦାସ ଲଭିବ ବାସବ-ସମ୍ପତ୍ତି ।୧୬।
ନୃପତିଙ୍କ କାକୁତି ବାନିତରେ ଯୁବତୀ ମତିରେ ଆନନ୍ଦିତ ଅତି
ବରକୁ ଲକ୍ଷେ ବରବରନା ପୂର୍ବର ପ୍ରଦାନ କରି ନରପତି
ସେ ଦଶରଥ । କଥିତ ତିନିବାର ସତ୍ୟ । ପୂର୍ବରୁ ହେ ଇଚ୍ଛା ସ୍ୱୀକୃତ
କମ୍ବୁକଣ୍ଠି । କୁଣ୍ଠିତା ନୋହି ବେଗେ ମାଗ ତା ଦେବି ଦେବି ମୁଁ ନିଶ୍ଚିତ ।୧୭
ଜଙ୍ଗମ(୧) ହେବ ସର୍ବ ପର୍ବତ ଅର୍କ ପୂର୍ବ ହରିତେ ହରି ନ ଉଇଁବ
ଜ୍ୱଳନ(୨)ରୁ କମଳ(୩) କମଳରୁ ଅନଳ କମଳ ସ୍ଥଳରୁ ହେଇବ
ରେ ରସନିଧି । ବିଶୁଷ୍କ ହେବ ରସନିଧିଶ୍ରୀ ଧନଦ ହେବ ହୀନନିଧି
ତଥାପି ମୋର କଥା ନ ହୋଇବ ଅନ୍ୟଥା ବ୍ୟଥା ତେଜ ଭାଷେ ସନ୍ନିଧି
ତ୍ରିଦଶ-ମିତ୍ର ଦଶରଥ ଆଦେଶ ବାକ୍ୟ ଚତୁର୍ଦ୍ଦଶରେ କେ ମେଣ୍ଟିବ
ତୋ ଆବଶ୍ୟକ ଧନ ଅବଶ୍ୟ ଜୀବଧନ ଦେବି ତା କେ ଆନ କରିବ
ରେ ସହଚରୀ । ତୋତେ ଅପୂର୍ବ କେଉଁ ଦ୍ରବ୍ୟ । ତୋର ଏ ରାଜ୍ୟର ବିଭବ
ରାମ ରାଣ ପରାଣବନ୍ଧୁ ଆଜ୍ଞାପ୍ରମାଣ ଖମ୍ବରେ ଦାସ ଅଣି ଦେବ ।୧୮।
ବାସ ବକଳ ବାସ କରିବ ବନେ ଦାଶରଥି ଚତୁର୍ଦ୍ଦଶ ବରଷ
ଏ ଦେଶରେ ନରେଶ ହେବ ହେ ପ୍ରାଣେଶ ଭରତ କୈକେୟୀ ସମ୍ଭାଷ
ହେ ରମଣୀର । ବଚନ କୁଳିଶପ୍ରକାର । ପତିତ ନୃପ-ମସ୍ତକର
ଭୂପ ହୋଇ ବ୍ୟଥିତ ହୋଇଲେ ଭୂପତିତ କର୍ତ୍ତିତ ପାଦପ ପ୍ରକାର ।୨୦
ଦଂଦଶୂକ(୪)ପରାୟେ ତୋର ମନ୍ଦହୃଦୟ ଛନ୍ଦ ମୁଁ ଜାଣି ନ ପାରିଲି
ବଳକି ବୃଷାସନ ହୁତାଶନେ ଅଜ୍ଞାନ ବିଷ ଣ ମାଷାଣି ପୂରିଲି

---

(୧) ଜଙ୍ଗମ—ଗତିଶୀଳ (୨) ଜ୍ୱଳନ—ଅଗ୍ନି
(୩) କମଳ—ଜଳ (୪) ଦଂଦଶୂକ—ରାକ୍ଷସ, ସର୍ପ

ରେ ଦାନବୀଙ୍କ । ମାନବୀ ମଣି ମାନ ବଙ୍କ । ଜାନଧ୍ୟାନ ମୁଁ ଅବିବେକୀ
ଉଦ୍ରବଳା ୧ ବଗୃହ ଉଦ୍ରବଳା ଅର୍ଜ୍ଜିଲି ବର୍ଜ୍ଜି ସୁଗନ୍ଧା ମାଧବୀଙ୍କ ।୨୧।
ବୃନ୍ଦକୁ ସୁବଦନା ନ ଦଅ ଏ ବେଦନା ନିବେଦନ କରୁଛି ପାଦେ
ବାଳକେ ଏ ଜୀବନ ବୈବସ୍ୱତ ୨ ଭୁବନ ଯିବ ତୋ ପ୍ରଦତ୍ତ ପ୍ରମାଦେ
ରେ ବମ୍ବାଧରୀ । କହୁଛି କରଯୁଗ ଧରି । ଶୋକ-ସାଗରୁ କର ପାର
ଧବଙ୍କୁ ବପରୀତ ଦଶା ଦେଇ ସହି ତ ବଧବାକଷ୍ଟେ ହେବୁ ଘାର ।୨୨।
ରାମ ବନଗମନ ଭଳ ମାଗିଲେ ଆନ ଦ୍ରବ୍ୟ ବହନ ଅକ୍ଷିଦେବ
ଗୁଣର ମଣି ତୋର ଗୁଣ ରମଣୀବର ଅଘ୍ରାଣ ଶୁଝି ନ ପାରିବ
ରେ ରାମ ପ୍ରତ । କୋପନା କୋପନା୪ସମ୍ମତ । କଳ୍ପନା ଅଛି ସେ ଭାରତୀ
ଏଦେହକୁ ଶୋଚନା-ଦହନରେ ଦହନା ଦହକ କନକାଙ୍ଗୀ-ସତୀ ।୨୩।
ବକେଳଶୟକୁ୫ ପୟ ଦେଲେ ତା ଶୌଲ୍କିକେୟ୬ ନିଷ୍ଟୟ ହେବ ଅନ୍ତଶୟ
ବାଳଶେ ଉପଦେଶ ଦତ୍ତନ୍ୟାୟ ବାଳୀଶ ଗ୍ରେଷରେ ବଶେଷ ଅଥୟ
ରେ କୈକୟୀବ । ଜତ୍ତର ଅଛେ ନରବର । ଅନ୍ତେ ପଡ଼ିବ ରୌରବର
ଅଜ ପର୍ଯ୍ୟନ୍ତ ସୂର୍ଯ୍ୟବଂଶରେ ଅଛେ ଅର୍ଯ୍ୟ ଏ କାର୍ଯ୍ୟ ନ ଥିଲା କାହାର ।୨୪।
ଅଶ୍ୱପତି-କୁମାରୀ କଟୁବାଣୀ କଟୁରି ପରି ନୃପମନକୁ ହାଣି
ବ୍ରହ୍ମପୁତ୍ର ଅଶନ୭ କଲା ଅଜନନ୍ଦନ ଦେଲେ ମିହପୁତ୍ରରେ୮ ପାଣି
ସେ ବରାଟର । ନନ୍ଦନ୯ ନ ସ୍ଫୁରେ ବଦନ । ସୁଖ-ଘନସୁତ ସଦନ୧୦
ଉତ୍ତର ଜନନୀ୧୧ କୁମ୍ଭସୂନୁ୧୨ ପରି ତା ଗ୍ରାସି ନ ଶ କଲା ବହନ ସେ
ବ୍ୟାଘ୍ରୀ ଅଗ୍ରତେ ମୃଗ ପରାୟେ ଧ୍ୟାନବ୍ୟଗ୍ର ହୋଇ ରହିଲେ ଅଜାତ୍ମଜ
ବକଳରେ ସକଳ ରାତି ଗଲା କେବଳ ବଫଳ ହେଲା ସବୁକାର୍ଯ୍ୟ
ସେ ନରବାଣ । ବାନ୍ଧିଲେ ଯେତେ ବାକ୍ୟ-ବାଣ । ନ ଭାଜିଲା ରମଣୀ-ଟାଣ
ଭଣେ ଗେ କୁଳାନନ୍ଦ ନରେଶ ଖେଦ ଛେଦ କୁଟ କରନ୍ତୁ ଗୀର୍ବାଣ ।୨୬

---

(୧) ଉଦ୍ରବଳା—ମାଧବୀଲତା, ପ୍ରସାରୁଣୀଲତା (୨) ବୈବସ୍ୱତ - ଯମ
(୩) ଧବବପରୀତ—ବଧ (୪) କୋପନା—କୋପନଶୀଳ ; କ୍ରୁଦ୍ଧ ହୁଅନା
(୫) ବକେଳଶୟ—ସର୍ପ (୬) ଶୌଲ୍କିକେୟ—ବଷ (୭) ବ୍ରହ୍ମପୁତ୍ର ଅଶନ—
ବଷଭକ୍ଷଣ (୮) ମିହପୁତ୍ର—କର୍ଣ୍ଣ (୯) ବରାଟନନ୍ଦନ—ଉତ୍ତର
(୧୦) ଘନସୁତସଦନ—ସମୁଦ୍ର (୧୧) ଜନନୀ—ମାତା (୧୨) କୁମ୍ଭସୂନୁ—ଅଗସ୍ତି

## ଏକାଦଶ ଛାନ୍ଦ ।

### ରାଗ—ଚୈତ୍ରୀ

ଗୁଣିକଗଣ ହରଷେ ମଲ୍ଲା ମଲ୍ଲାଅ ଏ ରସେ
ପ୍ରାଚୀଦଣରେ ସପ୍ତାଶ୍ୱ ହେଲେ ପ୍ରକାଶ
ଶାନ୍ତ ଅଶାନ୍ତ ଚିତ୍ତରେ ସ୍ଥିତ ଗନ୍ଧର୍ବଭ୍ୟନ୍ତରେ
ବୈକଟାଙ୍ଗ କଳଣିକ୧ ପଶିଲେ ବାସ
କମ୍ଭୁସ୍ୱର କମ୍ଭୁଅଲୟେ
ଦ୍ୱିଜବ୍ରଜ ଗାନ ଗାଇ ପୃଜନ୍ତି ଲୟେ ।୧ ।
ବକ ଶୁକ ଚକ୍ରବାକ ଚଟକ କାଳକଣ୍ଠକ ୨
ଖଞ୍ଜ୩ ବୃକବାକ୪ ଡାକ ହେଲ ବିଶେଷ
କାଦମ୍ବ-କଦମ୍ବ୫ କଳ— ରବ ସବଂରବ ମେଳ
ହୋଇ କରନ୍ତି ହରନ୍ତି ଜନ-ମାନସ
ଭେକୀ ପୁଚ୍ଛୁ ୧୬ ଡାକିଲ
ପରଭୃତ ପରଭୃତରେ ୭ ଶୁଭିଲ । ୨ ।
ବୃଟମୀ ରହ୍ୱ କୂଟରେ ନ ଟପି କାହିଁ କୂଟରେ୮
ବଖାଣିଲେ ଅପଣାର ସନ୍ତାପଣକୁ
ଚୌରଚୟେ ନିର୍ଭୟରେ ଦାଣ୍ଡେ ବୁଲିଲେ ଅଧ୍ୟରେ
ଅଯାଚତେ କହିହେଲେ ପ୍ରସ୍ତୁଗୁଣକୁ
ଦ୍ୱିଜରାଜ ତେଜବଦ୍ଧିତ
ନିଶାଚର ଦଶା ଲଭି ବସାରେ ସ୍ଥିତ ।୩ ।
ସମଙ୍ଗାବୀ ବର୍ମାଦର କର୍ମକ୍ଷେତ୍ରକୁ ବାହାର
ସଭଙ୍କ ଗାଭୀଙ୍କି ଘେନି ଅଭୀର୯ ଚଳେ
ମଧୁଅଶେ ମଧୁବ୍ରତ ଭ୍ରମର କୁସୁମେ ମାନ୍ତ
ନ ଯାଏ କଣ୍ଟକାବୃତ କେତକୀ ଫୁଲେ

---

(୧)କଉଣିକ—ପେଚା (୨)କାଳକଣ୍ଠକ—ଡାହୁକ
(୩)ଖଞ୍ଜ—ଏଗ (ପକ୍ଷୀବିଶେଷ) (୪)ବୃକବାକ—କୁକ୍କୁଟ (୫) କାଦମ୍ବ—କଦମ୍ବ—ହଂସସମୂହ (୬)ପରଭୃତ—ପିକ, ପରଭୃତ୍—କାକ (୭) କୂଟ—ଶଇ (୮) କୂଟ—ଦମ୍ଭ, କୂଟ—ଘୃଣିତକାର୍ଯ୍ୟ (୯)ଅଭୀର—ଗୋପାଳ, ଗୌଡ଼

ସତୀସହ ସ୍ୱପତି ଭଳି
ଅନ୍ୟ ପୁଂସ ସହବାସ ବଡ଼ କଠିନ ।୪।
ଇନ୍ଦୁଚର-ଇନ୍ଦୀବର    ମୁଦ୍ରିତ ହେଲେ ସତ୍ୱର
ସରସୀରେ ସରସେ ସାରସଂ ବିକାଶ
ସାରି ନିତ୍ୟ କ୍ରିୟାମାନ    ବଶିଷ୍ଠାଦ ଋଷିଗଣ
ସୁମନ୍ତ୍ର ମନ୍ତ୍ରୀ ଅଗ୍ରେ କଲେ ପ୍ରକାଶ
ଅଭିଷେକ କାଳ ପ୍ରବେଶ
ଉପସ୍ଥିତ ହେଲା ନୃପ ନିଦ୍ରା ଅବେଶ ।୫।
ଏମନ୍ତ ବାର୍ତ୍ତା ଧୀମନ୍ତ    ସୁମନ୍ତ୍ର ଶୁଣି ତ୍ୱରିତ
ବିନା ଅବରୋଧେ ଅବରୋଧେ(୧) ମିଳିତ
ମହୀପ ନିକଟେ ରହି    କର ଦୁଇ ଯୋଡ଼ି କହି
ବହୁଯାଉଅଛି ଅଭିଷେକ କାଳ ତ
ବ୍ୟଥିତେ କଥିତ ନୃବର
ଚର୍ଣ୍ଣ ନ ଲେପ ଅମାତ୍ୟ ଯେତ ଉପର ।୬।
କ୍ୟଙ୍କୋକ୍ତ କର କୈକେୟୀ    ବ୍ୟକ୍ତ କଲେ ନରସାଇଁ
ରାମାଭିଷେକ ନିମନ୍ତେ ରାଜି ଅନିଦ୍ରା
ଶୀଘ୍ର ଯାଇ ରାଘବଙ୍କୁ    ପଠାଇ ଦିଅ ଏଠାକୁ
ସ୍ୱାମୀ ଢୁମିତଲୋଚନ ଘାରୁଛି ନିଦ୍ରା
ଅଜ୍ଞା ପାଇ ମନ୍ତ୍ରୀପ୍ରବର
ଯାଇଁ ସୀତ ସାଇଁ ନେଇ କଲା ହାଜର ।୭।
ରାଣୀ ଭଣିଲେ ରେ ସୁତ    ତାତ କରିଛନ୍ତି ସତ୍ୟ
ରାଜତ୍ୱ କରିବ ଅଯୋଧ୍ୟାରେ ଭରତ
ଚତୁର୍ଦ୍ଦଶବର୍ଷ ବନେ    ରହିବୁ, ତୁହି ଜୀବନେ
ନ ରହି ସହିବୁ କ୍ଲେଶ ନୁହ ନିପତ(୩)
ଅପେ ନ କହନ୍ତି ଏ କଥା
ପେଟେ ଭ୍ରେଳ ମୁଖେ ଲଜ ଯଥା ଏ ତଥା ।୮।

(୧) ସାତେ୍ଯ—ଯିଦ, (୨) ଅବରୋଧ—ବାଧା, ଅନ୍ତଃପୁର
(୩) ନିପତ—ଦୁର୍ବଳ, ଶକ୍ତିହୀନ

ଧର୍ମ କହିଲେ ଗୋ ମାତା ରାଜା ଯେବେ ହେବ ଭ୍ରାତା
ଏହୁଁ ବଳି ଭଲ କଥା ଅଛୁ କି ଅଉ
ପିତାଙ୍କ ଶୁଶ୍ରୂଷା କର ଅତ ବିଳମ୍ବ ନ କର
ଭରତ ପାଶକୁ ଦୂତ ସତ୍ୱର ପଠାଅ
ଭରତ ମାଗିଲେ ମୁଁ ତାଙ୍କୁ
ରାଜ୍ୟସୁଦ୍ଧ କେତେ ଦେଇ ପାରେ ସୀତାଙ୍କୁ ।୯।
କୈକେୟୀ କଥିତ ଧନ ସତ୍ୟ ନ କଲେ ପାଳନ
ରାଜନ ଭୋଜନ ନ କରିବେ କଦାପି
ପିବା କଥାରେ ବିଳମ୍ବ କଲେ କି ଫଳ ମିଳିବ
କ୍ଷୁଧା ପିପାସାରେ ବାପା ହେବେ ସନ୍ତାପୀ
ଶ୍ରବଣେ ହରଷେ ଶ୍ରୀରାମ
ବାହାରିଲେ ସେ ବେନିଙ୍କ କରିଣ ପ୍ରଣାମ ୧୦।
କୌଶଲ୍ୟାଙ୍କ ପଶେ ଦାଣ— ତଥି କରିଲେ ପ୍ରକାଶ
ପିତାଦେଶେ ବନବାସ କରିବି ମୁହିଁ ।
ଶିରୀଷ-ଶରୀର ଗିର ପଡ଼ିତ ସମ ବଜ୍ରର
ମୂର୍ଚ୍ଛିତା ହୋଇ ପଡ଼ିଲେ ଶଶାଙ୍କମୁହାଁ
ଚଇତନେ କଲେ ସେ ଶୋକ
ପ୍ରବୋଧି ରାଘବ ପୋଛିଦେଲେ ଲୋତକ ।୧୧।
ଇନ୍ଦୀବରେକ୍ଷଣା କାନ୍ଦ ବଧିବି ଅଧିକ ନାଦ
ଅଧୀର ହେଲେ ବାଉଳୀ ମାତଙ୍ଗୀ(୧)ପରି
ସେବି କେତେ ଦେବ ଦେବୀ ଧନ ଏତେ ଥିଲି ଲଭି
ଲଭି ନ ଥିଲି ହେବି କେଉଁ ଏତେ ସରି
ନ ମରି ଯା ଧରିଛୁ ପ୍ରାଣ
ପରି ହେଲେ ଦାରୁଯନ୍ତ୍ରୀ ଏ କେଉଁ ଠାଣ ।୧୨।
ବସୁଧାଦୁହିତା-କାନ୍ତ ବିଶୁଦ୍ଧ ହୋଇ ରଘୁନାଥ
ମୁଖାଗରେ ବଂଶୀକାନନଣୀଙ୍କୁ ତୋଷିଲେ

(୧) ମାତଙ୍ଗୀ—ହସ୍ତିନୀ

ରାମ ଯିବେ ବନବାସଁ ଦେଶେ ଏ କଥା ପ୍ରକାଶ
ଜନପତି[1] ପ୍ରଭୃତି ଜନପନ୍ତ ଭାଷିଲେ
ସ୍ତ୍ରୈଣଗୁଣ ନ ବରଜିଲେ
କପଟ ଏପରି କୁମରଙ୍କୁ ତେଜିଲେ ।୧୩।
ଲମ୍ପଟୀ କପଟୀ ଜଣେ ନ ଥିବ ଏ ତ୍ରିଭୁବନେ
କାମାତୁରେ ରମାବଶେ ରାମାଭିଷେକ
ବନ କର ନନ୍ଦନାସ୍ୱ ହେଲେ ଏଡ଼େ ବଦନାସ୍ୱ—
ବଂଶ ଲୋପ କଲେ ଅର୍କବଂଶର ଟେକ
ଶୋକ କଲେ ଲୋକ ସକଳ
ବିଷାଦ-ସାଗରେ ମଜ୍ଜି ହେଲେ ବିକଳ ।୧୪।
କେହୁ କହିଲେ କୈକେୟୀ- ଠାରେ ଟିକେ ଦୟା ନାହିଁ
ସପତ୍ନୀ ନାମକୁ କରିଅଛି ସାର୍ଥକ
ସତ୍ୟଶୀଳ ମହୀପାଳ ମାୟାବିନୀର କୌଶଳ
ଜାଣି ନ ପାରିଲେ ନନ୍ଦବା ଅନର୍ଥକ
ବିଧି ଅଧୀନ ଏ ସଂସାର
ତା ଦୃଷ୍ଟିରେ ମନୁଷ୍ୟ ବିଚାର ଅସାର ।୧୫।
ସନ୍ଧ୍ୟାପିତା ମାତା ପାଶୁଁ ସୀତାଭର୍ତ୍ତା ଫେରିଅସୁ
ଚନ୍ଦ୍ରାଟରେ ବିରସ ଦେଖାଇଲ ଆନନ
ପିତା ସତ୍ୟ ପାଳିବାକୁ ପିତା ମଣି ରାଜଲକ୍ଷ୍ମୀଙ୍କୁ
କାନ୍ତ ଭ୍ରାତା ସଙ୍ଗରେ ଯିବାକୁ କାନନ
ଶତାଙ୍ଗ[2]ରେ ବସିଲେ ଯେବ
ସତାଇଶ-ପତ୍ନୀଭର୍ତ୍ତା[3] ଧଶିଲ ସର୍ବ ।୧୬।
ନଭରେ ଭଗଣ[4] ଚନ୍ଦ୍ର ଶୁଭ୍ର ନ ଦିଶିଲେ ଅଭ୍ର
ଆଚ୍ଛାଦନ କଲା ଧଣ ଦର୍ଶ[5] ସଦୃଶ
ହା-ହା-କାର କାହା ମୁଖେଁ ବାହାର ନୋହୁଛି ଦୁଃଖେଁ
ଏମନ୍ତ ଜନ ସେ ସ୍ଥାନେ ନ ହେଲେ ଦୃଶ୍ୟ

---

(୧) ଜନପତି—ରାଜା (୨) ଶତାଙ୍ଗ ରଥ (୩) ସତାଇଶପତ୍ନୀଭର୍ତ୍ତା-ଅମାବାସ୍ୟା (୪) ଭଗଣ—ନକ୍ଷତ୍ରସମୂହ (୫) ଦର୍ଶ—ଅମାବାସ୍ୟା

ପତିହୀନ ଯୁବତୀ ପରି
ଘନ ଘନ କମ୍ପମାନ ହେଲା ନଗରୀ । ୧୭ ।
ତମସା ତୀରେ ତାମସୀ୧ ସମସ୍ତେ ସାରିଲେ ବସି
ନିଶାବସାନେ ପ୍ରଜାଏ ଫେରିଲେ ଦେଶେ
ରଥୀ ଦାଶରଥିଙ୍କର ଆଦେଶେ ସାରଥିବର
ପଥରେ ରଥ ଚଳାଇ ଗଲେ ହରଷେ
ଗୁହ ପରାକ୍ରମୀ ଗୁହକ
ଭେଟି ଭେଟିଲେ ଅରଣ୍ୟ ଫଳ ଅନେକ ।୧୮।
ତାପସ୨ ପାଦପତଳେ ତାପସବେଶ ସାଜିଲେ
ଆପଣା ମତେ ଅପଗା ୩ ତରିଲେ ପ୍ରାତେ
ଭରଦ୍ୱାଜଙ୍କ ଆଶ୍ରମେ ପ୍ରବେଶ ହେଲେ ସଶ୍ରମେ
ବାଲ୍ମୀକିଦତ୍ତ ନଗକୁ ଅର୍ଯ୍ୟମା ଯନ୍ତେ
ବ୍ୟକ୍ତ କଲେ ସର୍ବ ବୃତ୍ତାନ୍ତ
ତପି ଜଳ୍ପିଲେ ଅମ୍ଭଙ୍କ ପୂର୍ବରୁ ଜ୍ଞାତ ।୧୯।
ଭାନୁ ଶୀତଭାନୁ ଗ୍ରାସ କେତୁ ସ୍ୱର୍ଭାନୁରେ କ୍ଳେଶ
ସନ୍ତ ମହୀ ଉପକାର କରନ୍ତି ସେହି
ଲକ୍ଷ ଲକ୍ଷ ରକ୍ଷ୪ଅନ୍ତ— ଶ୍ରୀକ୍ଷ କକ୍ଷରେ ଶ୍ରିତ
ସକ୍ଷମ ନୁହନ୍ତି ତମ ଖଣ୍ଡନେ କେହି
ସାଧୁଜନ ସେ ରୂପ ପିନା
ଗୋତ୍ର୫ସନ୍ତାପ କେ ହରେ ତାହାଙ୍କ ବିନା ।୨୦।
ଏକରାତ୍ରି ମାତ୍ର ତହିଁ କ୍ଷିତିସୁତାପତି ରହି
ଚିତ୍ରକୂଟ-ଗୋତ୍ରେ୬ ସ୍ଥିତ ପର୍ଣ୍ଣକୁଟୀରେ
ସୁମିତ୍ରାପୁତ୍ର ନିଦ୍ରାକୁ ତ୍ୟାଗ କଲେ ଅଯୋଧ୍ୟାକୁ
ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ସ୍ୱୀୟ ଶକ୍ତିରେ
ରାମ ସୀତା ସୌମିତ୍ରି କ୍ଳେଶ
ସ୍ମରଣେ ଗୋକୁଳାନନ୍ଦ ଦୁଃଖୀ ବିଶେଷ । ୨୧ ।

---

(୧) ତାମସୀ—ରାତ୍ରି (୨) ତାପସ-ଇଙ୍ଗୁଦୀ (୩) ଅପଗା—ନଦୀ (୪) ରକ୍ଷ—ନକ୍ଷତ୍ର (୫) ଗୋତ୍ର—ସମୂହ, ସାଧାରଣ, ବଂଶ(୬) ଗୋତ୍ରେ—ପର୍ବତେ

## ଦ୍ୱାଦଶ ଛାନ୍ଦ

ରାଗ—ରସକୁଲ୍ୟା

ମହାକାରଣୀଙ୍କର ମନ୍ତ୍ରୀପ୍ରବର ବହୁଗୁଣ ହେଲ ଯେବେ ରଘୁବର
ପ୍ରବେଶ ଅଯୋଧ୍ୟା-ରାଜନବର ଶ୍ରବଣ ହୋଇ ପୁଚ୍ଛିଲେ ନୃବର
ନିଜ ପୁତ୍ରଙ୍କ ଖବର
ମନ୍ତ୍ରୀ କହନ୍ତି ଯତିବେଶେ ଅଛନ୍ତି ଶତ୍ରକୂଟ ଗିରିବର । ୧ ।
ଭାଷିଲେ ଭାଷିବ ଅମ୍ଭ ମାତାଙ୍କୁ ତୋଷିବେ ଶୋକାର୍ତ୍ତ ବୃଦ୍ଧପିତାଙ୍କୁ
ପ୍ରଜାପୁଞ୍ଜଙ୍କୁ ଦେବ ଏ ବାର୍ତ୍ତାକୁ ରାଜାମାନ୍ୟ କରିଥିବେ ଭ୍ରାତାଙ୍କୁ
ସେବା କରିଥିବେ ତାଙ୍କୁ
ଚତୁର୍ଦ୍ଦଶ ବର୍ଷ ଶେଷ ପର୍ଯ୍ୟନ୍ତ ନ ପୋଷିବେ ମୋ ଚିନ୍ତାକୁ । ୨ ।
ଶ୍ରବଣେ ନୃପତି ଅତି କାତର ପବନେ ଯଦ୍ରୂପ ରମ୍ଭାପତର
ତଦ୍ରୂପ କମ୍ପମାନ କଳେବର କହିଲେ ସାରଙ୍ଗ ରାମ ମୁଁ ଶବର
ମୁଁ ତ ବଡ଼ ଜ୍ଞାନହୀନ
ଜଳୁମ ଅର୍ଣ୍ଣ(୨)କୁ ବର୍ଜନ କରଣ ଅର୍ଜନ କଲି ଭୁହନ(୩) ।୩।
ବାଳକ ପୁତ୍ରକୁ ନିବାସି ବନେ ଭ୍ରମିଲି ଏକାକୀ ବସି ଭବନେ
ଜଳଇ ଶୋକାଗ୍ନି ଚିନ୍ତାପବନେ କାଳ କପାଁ ନ ନିଅଇ ଜୀବନେ
କୁତ୍ସା ରହିବେ ଭୁବନେ
ପ୍ରାଣପ୍ରଦୀପ ନିର୍ବାପନ କରନ୍ତି ପ୍ରଦୀପକ(୪)ର ସେବନେ ।୪।
ସୁକୁମାର ମୋର ପ୍ରିୟ କୁମାର ତାଙ୍କୁ କଷଣ ଦେଲି ଅସୁମାର
ଶଯ୍ୟାଦ୍ୱାର ସଜ୍ଜାହେବା ପଲଙ୍କେ ପଲକେ ନିଦ୍ରା ନ ଆସେ ପଲକେ
ଲଭିବ କ୍ଳେଶ ଅଙ୍ଗରେ
ପଞ୍ଚବଟୀରେ କଳବଳ ହେବେ କଳ୍ପଦ୍ରୁ ଭ୍ରାତା ସଙ୍ଗରେ ।୫।
ହୃଦୟହାର ମୋ ଅନ୍ଧଲଗୁଡ଼ି ସଦନରୁ ତାଙ୍କୁ ଦେଲି ଘଉଡ଼ି
ଶୁକ ପିଞ୍ଜରରୁ ଯାଇଛି ଉଡ଼ି କାକ ଅଛି ବସୁଅଛି ଦଉଡ଼ି
କେବଳହୁଁ ଯାଉଛି ହୁଡ଼ି
ଜଳ ବହିଗଲେ ସେତୁରେ କି ହେତୁ ଅଜ କି ଅସେ ବାହୁଡ଼ି । ୬ ।

---

(୧) ସାରଙ୍ଗ—ମୃଗ (୨) ଅର୍ଣ୍ଣ—ଜଳ (୩) ଭୁହନ—କାଙ୍କର
(୪) ପ୍ରଦୀପକ—ବଣ ।

ଭଣ୍ଡାଇଲ ମୃତ୍ୟୁ କଳବଳରେ          ଖଣ୍ଡା ବସାଇଲ ଗ୍ରୀବାମୂଳରେ
କୁଣ୍ଡାଇଲି ବଡୁଅଡ ଗଛକୁ          କୁଣ୍ଡାଇ ହେଲା ଶରୀର ପଛକୁ
ଧଣ୍ଡାଭୂଷା ଠାକୁରାଣୀ
ପଣ୍ଡାକୁ ଭଷଣ କଲପରି ମୋତେ ଭର୍ଷିଲା କୈକେୟୀରାଣୀ । ୭ ।
ବଳି-ଡାଳକୁ ମାଳତୀ ଯେସନ  ବାଳୀଶ ମୋତେ ହୋଇଲା ତେସନ
ଧରିଥିଲେ ଧ୍ରୁବ ପିତା ସିଦ୍ଧିକ          ହାରିଥାନ୍ତି କି ମୋ ଗୁଣନିଧିକି
ଉପଯୁକ୍ତ ଔଷଧିକ
ପ୍ରୟୋଗ ନ କରି ଅନୁତାପ କଲି ବୃଦ୍ଧି କରଣ ବ୍ୟାଧିକ । ୮ ।
ଭଣେ ନୃପମଣି ରାଣୀ କତରେ          ଧନେ ମୃଗୟାକୁ ଗଲି ରାତରେ
ଭ୍ରମି ଭ୍ରମି ମିଳି ସରଯୂତୀରେ          ଜୀବ ଜଳପାନ ଶୁଣି ଶ୍ରୁତରେ
ଶବ୍ଦ ବାର ତୀକ୍ଷ୍ଣ ତରେ
ଅବର୍ତ୍ତ ଓଠାର ପ୍ରୟୋଗ କଲି ମୁଁ ନ ଭାବି କିଛି ମତରେ । ୯ ।
ମାର୍ଗଣ ବାଜନ୍ତେ ତାହା ଦେହରେ          ବଡ଼ଏ ଗ୍ଳାନି ପଡ଼ିଲା ମୋହରେ
କହିଲା ବହୁ ମୁଁ ପର୍ଣ୍ଣ-ଗୃହରେ      ଅନ୍ଧ ପିତା ମାତା ସେବେ ସ୍ନେହରେ
ଏହି କାନନେ ରହରେ ।
ବଧ କଲ କେହୁ ନିର୍ଦ୍ଦୟହୃଦୟ ନ ଭାବି କି ହରହରେ । ୧୦ ।
ମାରିଥିଲି ବିପ୍ର ବଟୀବର          ଉବ ଶ୍ରବଣ କଲି ମାନବର
ଜୀବ ନ ରହିଲା ଅବସ୍ଥରେ          ବିହି କି ଲିହିଥିଲା ନସିବ୍ ରେ
ଭାବି ଏ କଥା ହୃଦରେ
. ସାହସ କରି ମୁଁ ଆହତ ମନୁଷ୍ୟପାଶକୁ ଗମିଲି ଦରେ । ୧୧ ।
ପାଖେ ଠିଆ ହେଲି ଯୋଡ଼ ପାଣିକି ଦେଖି ମୋତେ ଭଣିଲେ ଏ ବାଣୀକି
କଳସରୁ କୁମ୍ଭରେ ନେଇ ପାଣିକି          ଦେଉ ଥାଆନ୍ତି ଅନ୍ଧ-ଅନ୍ଧୁଣୀକି
ଏବେ କିଏ ଯିବେ କେଣିକି
ସେବନ ଅଭାବେ ମରିବେ ସେ ବେନି ବଧିଲ ତିନି ପ୍ରାଣୀକି ।୧୨।
ଅସି ପାରିଧିକ ବିନା ଦୋଷରେ   ନାଶିଲି ବ୍ରହ୍ମା ମୋତେ ପେଶି ଶରେ
ଜନକ ଜନନୀ ଥିବେ କ୍ଳେଶରେ          ଚଞ୍ଚଳ ଚଳ ତାହାଙ୍କ ପାଶରେ
ଶାପ ଦେଲେ ସେ ରୋଷରେ
ନ ରହିବେ କେହି ପାଣି ଦେବାପାଇଁ ଅକଣ୍ଠୁ ତବ ବଂଶରେ ।୧୩।

(୧) ନସିବ—ଭାଗ୍ୟ, କର୍ମ ।

ଏ ବାଣୀ ଶୁଣିଣ ଶ୍ରୁତିପଥରେ    ଗଲି ମୁଁ ସେଠାରୁ କ୍ଷୁଦ୍ରପଥରେ
ଭୟରେ କାୟା ଅତିଶୟ ଥରେ    ପଯୁର ଛୁଡ଼ିଲି ରାଜ ପଥରେ
ଯୁଟି ତାଙ୍କ ସମୀପରେ
ଘଟିଥିବା କଥା ରଟିଲି ମୁଁ ଯହୁଁ ଲୋଟିଲେ ସେ ମହୀପରେ ।୧୪।
କହିଲେ ମହୀପ ନିଅ ବଚନ    ସୁତସହ ଅମ୍ଭେ ହେବୁ ଦହନ
ଶୁଣି କାଷ୍ଠପାଇଁ ଗଲି ଗହନ    ଆଣି ଲଗାଇଲି ହବ୍ୟବାହନ
ଝାସି ସେହୁ ପାବକରେ
ତ୍ୟଜିଲେ ଦେହ ଦଣ୍ଡଧାରୀ ଅନୁସରି ମରିବ ପୁତ୍ରଶୋକରେ ।୧୫।
ଶାପ-ପାଦପର ଫଳିବା କାଳ    ହେଲା, ଆସିଲାଣି ନେବାକୁ କାଳ
ଜହୁଁ ଜହୁଁ ବୃଦ୍ଧି ପ୍ରାପ୍ତ ଯାତନା    ଗୃହୁଁ ଗୃହୁଁ ନୃପ ହତଚେତନା
ପତିତ ହେଲେ ମୋହରେ
କୋଳାହଳ-ବେଳ ଜଳଧି-କଲ୍ଲୋଳପରି ଶୁଭିଲା ଗୃହରେ ।୧୬।
ସେବାକାରୀ ଯେତେ ଥିଲେ ପାଖରେ    ସୁବାସବାରି ସିଞ୍ଚିଲେ ମୁଖରେ
ପ୍ରାଣ-ପବନ ଚାଲିଗଲା ଖଟରେ    ରାଣୀଏ କାନ୍ଦିଲେ ମହା-ଦୁଃଖରେ
କ୍ରମେ ସେ ଶୋକସାଗର
ରାଜ-ଅନ୍ତଃପୁର ବେଳାକୁ ଲଙ୍ଘନ କରି ଘୋଟିଲା ନଗର ।୧୭।
ପ୍ରଜାପୁଞ୍ଜ ଦେଖି ଏହୁ ଘଟନା    କୈକେୟୀର ନିନ୍ଦା କଲେ ରଟନା
ରାଜା କରିବାକୁ ନିଜ ସୁତକୁ    ବାଧବା ହେଲା ନାଶିଲା କାନ୍ତକୁ
ରାମ ଲକ୍ଷ୍ମଣ ସୀତାଙ୍କୁ
ବନକୁ ପଠାଇ ପୁର ଶୂନ୍ୟ କଲା କି ସୁଖ ମିଳିଲା ତାକୁ ।୧୮।
ଏପରି କୁଟିଳୋଦରୀ ସୁନ୍ଦରୀ    କପରି ନୃପତି ଥିଲେ ଆଦରି
ସଂସାରେ ନାହାନ୍ତି କେତେ ଅବଳା    ଏପରି ହୋଇଥିଲା କେ ପ୍ରବଳା
ଏ ନବପତି-କୁମାରୀ
ଏତେ ବଡ଼ ପୁର ଜ୍ୱର କରିଦେଲା ଅପଣା ପତିକୁ ମାରି ।୧୯।
କୈକେୟୀଙ୍କ ନିନ୍ଦା କରି ସର୍ବ    ତୈଳ କଟାହା(୧)ରେ ରଖିଲେ ଶବ
ଭରତ ଶତ୍ରୁଘ୍ନ ନିକଟେ ଚର    ପେଶିଲେ ବଶିଷ୍ଠ କରି ବିଚାର
ଗୋକୁଳାନନ୍ଦ ଭଣିତ
କରୁଣା-ବରୁଣାଳୟ-ଚରଣାରବିନ୍ଦ ରହୁ ମୋର ଚିତ୍ତ ।୨୦।

(୧) କଟାହ—କରେଇ ।

## ତ୍ରୟୋଦଶ ଛାନ୍ଦ

ରାଗ—କୁମ୍ଭକାମୋଦୀ

ବ୍ୟଗ୍ରବନ୍ତ ଦୂତ ଭରତ ଅଗ୍ରତ ଦେଲେ ଏ ବାର୍ତ୍ତାକୁ
ବଶିଷ୍ଠାଦି ଋଷି ବସି ପେଷିଛନ୍ତି ଅଯୋଧ୍ୟା ଯିବାକୁ,
ପୁଚ୍ଛିଲେ ମାତା ପିତା ଭ୍ରାତାମାନଙ୍କ କୁଶଳ-ସନ୍ଦେଶ
ମାତାମହପାଶୁ ବିଦାୟ ଘେନିଣ ପ୍ରବେଶ ସ୍ୱଦେଶ ।୧।
ବିଷାଦଲକ୍ଷଣ ଜନଙ୍କ ବଦନମଧ୍ୟେ ଅଭ୍ରସୁଛି
ଦୁଃଖ ବାରିଧିରେ ପ୍ରଜାଙ୍କର ଚିତ୍ତ-କନ୍ଦର୍ପ ଭାସୁଛି,
ଦୁଃସହ ମହାଲାପୂରକୁ ଘୋଟିଲି ପର୍ବତେ ଦିଶୁଛି—
କାଳ କରାଳମୂର୍ତ୍ତି ଧରି କବଳପାଇଁ କି ଅସୁଛି ।୨।
ବନସମ ବନପଛଦ୍ୱାର (୧) ଜନଶୂନ୍ୟତା ପ୍ରାପତ
ଅଦ୍ଭୁତ ବିଷୟ ଦର୍ଶନେ ବିସ୍ମୟ ଲଭିଲେ ଭରତ,
ବିମୁଖେ ଜନନୀ ପାଖେ ପୁଚ୍ଛା କଲେ ଦୁଃଖର କାରଣ
ମାତା କହିଲେ ରାମ ସୀତା ନ ଥାନ୍ତେ ପିତାଙ୍କ ମରଣ ।୩।
(ପୁତ୍ର) ତାତଙ୍କ କାତରକାଳେ କେଉଁଭ୍ରାତା ଅନ୍ତର କିମ୍ପାଇଁ
(ମାତା) ଭ୍ରାତା-କାନ୍ତାସହ ବନକୁ ଗମନ ସତ୍ୟରକ୍ଷା ପାଇଁ,
(ପୁତ୍ର) ପିତା ହତାଦର କଲେ କି ଦୁଷ୍ଟତା ଦେଖିଣ ତାଙ୍କର
(ମାତା) ଧର୍ମପ୍ରାଣ ରାମପାଶେ ପ୍ରାଣଧନ ଏ ଆଶା ନ କର ।୪।
(ପୁତ୍ର) କେଉଁ ଦୋଷେ ରୋଷ କରି ଦେଶେ ବାସ ନ ଦେଲେ ତାହାଙ୍କୁ
(ମାତା) ବାପ ତୋ ପକ୍ଷପାତତା-ପାପ-ପ୍ରାୟଶ୍ଚିତ୍ତ କରିବାକୁ,
ବାତୁଳ ନରେଶ ମାତୁଳାଳୟକୁ ପଠାଇ ତୁମ୍ଭଙ୍କୁ
ଯତ୍ନ କଲେ କୁଳରତ୍ନ ରାମଚନ୍ଦ୍ରେ ରାଜତ୍ୱ ଦେବାକୁ ।୫।
(ପୁତ୍ର) କେଉଁ ନିର୍ବୋଧ ଏ କର୍ମେ ଅପରାଧ ଦେଲା ମୋ ପିତାଙ୍କୁ
ତା ବଂଶ ଅବଶ୍ୟ ଧ୍ୱଂସ କରି ଦେବ ମୃତ୍ୟୁଦେବତାକୁ,
(ମାତା) କେହି ଅପରାଧ କରି ନାହିଁ ମୁହିଁ ବହିଲି କୌଶଳ
(ପୁତ୍ର) ମଙ୍ଗଳକାର୍ଯ୍ୟେ ଅମଙ୍ଗଳ ଘଟାଇ ଲଭିଲୁ କି ଫଳ ।୬।

---

ବନପଛଦ୍ୱାର—ସିଂହଦ୍ୱାର ।

(ମାତା) ଚତୁର୍ଦ୍ଦଶବର୍ଷ ରାମ ବନବାସ କରିବ ଜଗତେ ।
ଅଯୋଧ୍ୟାରେ ରାଜା ହୋଇ ତୁହି ପ୍ରଜା ପାଳିବୁ ନିଷ୍ଠିନ୍ତେ,
(ପୁତ୍ର) ଜାନକୀ ଲକ୍ଷ୍ମଣ ଯିବାର କାରଣ ବହନ କହ ତ ।
(ମାତା) ଅନୁରାଗବଶେ ସଙ୍ଗରେ ଗଲେ ସେ ଦେଖାଇ ମହତ୍ତ୍ୱ ।୭।
(ପୁତ୍ର) କାଦମ୍ବିନୀ(୧) ସମ ଉତ୍ପନ୍ନ ହେଲୁ ତୁ ତପନବଂଶରେ
ଅନ୍ଧ କରିଦେଲୁ ଖେଦ-ଅନ୍ଧକାର ପ୍ରକାଶି ଦେଶରେ,
ପୀୟୂଷରେ ବିଷ ମିଶାଇ କି ଯଶ ଲଭିଲୁ ତୁହି ବା
ବାରିକି ଦ୍ୱିଭାଗ କରି ଉଣିଦେଲୁ ତୋତେ କି କହିବା ।୮।
(ମାତା) ତାତଙ୍କର ପ୍ରେତ କାର୍ଯ୍ୟ କରି ଗତକଥା ତ୍ୟକ୍ତ କରି
ଅଯୋଧ୍ୟାରେ ଦଣ୍ଡଧର ହୋଇ ଖଣ୍ଡ ଦୁଃଖ ପ୍ରଜାଙ୍କର,
(ଭ) ଖଣ୍ଡ ମୁଁ ନୁହଇ କୋଦଣ୍ଡଧରଙ୍କୁ ରଖାଇ ନଗ(୨)ରେ
ଭୋଗବିଳାସରେ ମାତ ମୁଁ ସୁଖରେ ରହିବି ନଗରେ ।୯।
(ମା) ତୋହ ସୁଖପାଇଁ ଏତେ କୁମନ୍ତ୍ରଣା କରିଛୁରେ ଧନ ।
ସେ ଦୁହିଙ୍କଭାଗେ ବନ ତୋହଭାଗେ ପଡ଼ିଲା ଭବନ,
(ପୁ) ସନ୍ତାପକାଳରେ ଏ ପାପକାର୍ଯ୍ୟରେ ଶତ୍ରୁକୁ ବଳାନା
ଧିକ୍ ତୋ ପ୍ରାଣକୁ ଅଧିକ ନ କହ ମୋ ଦେହ ଜଳାନା ।୧୦।
ଏ ଉପକାରର ପ୍ରତ୍ୟୁପକାର କରନ୍ତି ତୋହର
ଏକେ ମାତା ପୁଣି ଭ୍ରାତାଙ୍କ କୋପକୁ ଆଶଙ୍କା ମୋହର,
ଏହା କହି ମହାଦୁଃଖେ ନରନାହା ନିକଟେ ମିଳିଲେ
କୋଳାଗତ କରି ଶବକୁ ଅନେକ ବାହୁନି କାନ୍ଦିଲେ ।୧୧।
ଶବ ସଂସ୍ଥାପନ କଲେ ସେ ଚନ୍ଦନ ଇନ୍ଧନ(୩) ଯୋଗାଇ ।
ଶୋକସନ୍ତାପରେ ପିତାଙ୍କୁ ତା'ପରେ ଦାହନ କରାଇ,
ଶୋକାକୁଳା କଉଶଲ୍ୟା ସୁମିତ୍ରାଙ୍କ ସଦନେ ପ୍ରବେଶି
ବଚନ-ବନ ବରଷି ମନବନ-ଦହନ ବିନାଶି ।୧୨।
କହିଲେ କୌଶଲ୍ୟା ସୁଖେ ଏ ପୁରେ ତୁ କରୁଛୁ ବିହାର
ସାଧି ପୁନବଧୂ ସାଧୁଛନ୍ତି କଷ୍ଟ ନ କରି ଆହାର;

---

(୧) କାଦମ୍ବିନୀ—ମେଘମାଳା (୨) ନଗ—ପର୍ବତ
(୩) ଇନ୍ଧନ—କାଷ୍ଠ

ତୋ ସୁତ ମନାସି ତୋ ଜନନୀ, ଦାସୀ ୧ ନାଶିଲେ ସିଦ୍ଧି କି
ନୀର ନୟନରୁ ନିରତ ବହଇ ହସ୍ତିର ନିର୍ଝର । ୧୩ ।
ଏ ବଚନ-ବାଣ କୈକୟୀ-ନନ୍ଦନ ପ୍ରାଣକୁ କରତ
ନ ଜାଣି କି ମାତା ରାମଙ୍କ ଚରଣେ ମୋହର ଭକତ,
କନିଷ୍ଠ ଅନିଷ୍ଟ ଜ୍ୟେଷ୍ଠ ପ୍ରତି କଲେ ଅଟେ ଶ୍ରେଷ୍ଠପାପୀ
ଦୋଷ ଅନ୍ୱେଷଣ ବୃଥାରେ ଅପଣ ନ କର କଦାପି । ୧୪ ।
ଏ ମମତା ଭ୍ରାତା ପ୍ରତି ଯଦି ମାତା ଥିବ ମୋ ଚିତ୍ତରେ
ଗୋବ୍ରାହ୍ମଣହତ-ପାତକ ସମ୍ପାତ୨ ହେବ ମୋ ଶିରରେ,
ଦାସୀକି ପଚାର ମାତା ଦୁରାଚାରୀ ରାମେ ବନଚାରୀ
ମୋତେ ନ ପଚାର କର ନାହିଁ ଚାରି ଭାଇ ଏକାପର । ୧୫ ।
ମାତାଙ୍କୁ ପ୍ରବୋଧି ଶୁଦ୍ଧ-ଶ୍ରାଦ୍ଧାଦି ଯଥାବିଧି ଶେଷ
ଅନ୍ନ ସ୍ୱର୍ଣ୍ଣ ଧନ ଧାନ୍ୟ ଦାନ କଲେ ଜନକଙ୍କ ବିଶେଷ,
ବେଶ ସାଜ କୁଜା ଉଠିଲା ଅନୁଜ ମୁଖକୁ ମୋଡ଼ୁଛି
ତା ବାଙ୍କ ଦୃଷ୍ଟି କାକସୃଷ୍ଟି ଠେଙ୍କୁ ଅଧିକ ହୋଇଛି ।୧୬।
ସୁମିତ୍ରାପୁତ୍ରଙ୍କ ନେତ୍ର ତା ଗାତ୍ରରେ ହୁଅନ୍ତେ ପତିତ
କେଶଆକର୍ଷଣ ପ୍ରହାର ବର୍ଷଣ କଲେ ସେ ଦୁରିତ,
ପଥରେ ଥରକୁ ଥର କଚୁଡ଼ିଲେ ଥରଇ ଦେହ ତା
ବାରଣ୩ ହେଲେହେଁ ଚରଣ ଅଘାତେ ମରଣ ଲଭନ୍ତା ।୧୭।
ତରାଟି ପରାଟେ ଅଙ୍ଗିକ ତରାଟି ଗୁହିଲ ମୁରାଟି
ପାଟିରେ ମାଟି ପୂରାଇ ଚୂଟି କାଟି କଲେ ସାଉବେଣ୍ଟି,
ଲଣ୍ଡିମୁଣ୍ଡୀ ହୋଇ କଳହାତୁଣ୍ଡୀଟା ଦରାନ୍ତେ ସ୍ୱଜନ
ମୁଖେ ବାସ ଦେଇ ଦର୍ଶକେ ହସନ୍ତି ଭାଷନ୍ତି ସାବାସ ।୧୮।
ନିବାଡ଼ ମାଡ଼ ଚଢ଼ାଇ ଗଡ଼ାଇଲେ ଛଡ଼ାଇ ବଡ଼ାଇ
ମଲି ମଲି ବୋଲି ମନ୍ଥରା ବୋଲଇ ଲୋତକ ଗଡ଼ାଇ,
ତଳେ ପଡ଼ି ଗଡ଼ି ରଡ଼ିଏ ଛାଡ଼ିଲା ରଖ ହେ ଭରତ
ମୁଁ ଛାର ନ ମଲି ବାଞ୍ଛା କରୁଥିଲି ସୁଖ ତୁମ୍ଭର ତା । ୧୯ ।

---

(୧) ଦାସୀ--ମନ୍ଥରା (୨) ସମ୍ପାତ--ପତନ (୩) ବାରଣ—ହସ୍ତୀ

ଶତ୍ରୁଘ୍ନ ଅପଘନେ ତେଜୀୟାନ ଅନଳ ସମାନ
ଭରତ ଧୀର ଗିର-ଗୀର ବରଷି କଲେ ନିର୍ବାପନ,
ଥାଉ ଥାଉ ଘୃଣିତଅ, ଯାଉ ଅଭ ନ ପାଉ ଏ ଦାଉ
ନାରୀ ମାରିଲେ ସେ କରିଥିବା କାର୍ଯ୍ୟ ଫେରିବ କି ଅଉ ।୨୦।
ଚତୁରଦଶ ଦିବସେ ସୁଚତୁର ବିଶେଷ ଅତୁରେ
ନାଗ୨ରେ ଅରୋହି ଅଗ୍ରଜଙ୍କ ପାଶେ ଗମିଲେ ବ୍ୟଗ୍ରରେ,
ନଗରସ୍ଥ ନରେ ଅଗ୍ରସର ହେଲେ ଅଗାଢ ସହିତ
ଗମନ ଅକ୍ଷମ ନାରୀ ବୃଦ୍ଧ ଶିଶୁ ନଗରେ ରହିତ ।୨୧।
ଗନ୍ତବ୍ୟ ପଥର ମନ୍ତବ୍ୟ କି ଅବା କହିବା ଏଠାରେ
ପାନ୍ଥବାସ ଖାଦ୍ୟ ପେୟ ରଖା ଯାଇଅଛି ନାନାଠାରେ
ପଥି ଯନ୍ତ୍ରାପନ୍ତ ଦନ୍ତୀ ରଥୀ ପଦାତିକରେ ପଥିକେ
ଛତ୍ର ଚାମର ବ୍ୟଜନ ରଥ ସଂଖ୍ୟା କରି ପାରିବ କେ ।୨୨।
ଗଙ୍ଗାତୀରବେଷ୍ଟିତ ଶୃଙ୍ଗବେରପୁରେ ଭେଟି ଗୁହକ ସଙ୍ଗରେ
ହାତ ଯୋଡ଼ି ରଘୁନାଥ ମିତ କହେ ଭରତ ଅଗରେ,
ରାମ ଅମଙ୍ଗଳ କାମନାରେ ଚଳ ଘେନି କି ସୈନ୍ୟଙ୍କୁ
ଭରତ କଥିତ ଅପଣ ଏମନ୍ତ ନ ଅଣ ମନକୁ ।୨୩।
ଦାଶରଥି ଦଶରଥଙ୍କ ସଦୃଶ ଦଶନ୍ତ ସନ୍ତତ
ସେ ଗୃହୁଚରଣେ ଅଧର୍ମାଚରଣେ ପାପକୁ ପ୍ରାପତ,
ବଇଦେହୀପାଇଁ ଯହିଁ ଥିଲେ ଶୋଇ ପଲ୍ଲବ ବିଛାଇ
ତହିଁ ବହୁ ଗଡ଼ିଗଲ ସେହିପରି ଯାମିନୀ କଟାଇ ।୨୪।
ବୀରବର ସହୋଦର ଦ୍ୱୟ ବଲ୍କଳେ ଚକୁରକୁ୩
ବାନ୍ଧି ଜଟା ଚିହ୍ନ କାଛିଟା ବନ୍ଧିଲେ ତପସ୍ୱୀ ଛଟାକୁ,
ଗିରିଜାକାନ୍ତ୪ ଧରିଥିବା ସରିତ୫ ତରୀରେ୬ ତ୍ୱରିତ
ତରି ଭରଦ୍ୱାଜ ଅଶ୍ରମେ ଭରତ ସତ୍ତ୍ୱରେ ମିଳିତ ।୨୫।
ଯତି କହି ତୁମ୍ଭେ ଅଯୋଧ୍ୟାଦେଶରେ ହୋଇଛ ନୃପତି
ରାମଙ୍କୁ ବନକୁ ପଠାଇ ଭୋଗୁଛ ବିପୁଳ ସମ୍ପତ୍ତି,

(୧) ଅପଘନ—ଶରୀର (୨) ନାଗ—ହସ୍ତୀ (୩) ଚକୁର—କେଶ
(୪) ଗିରିଜାକାନ୍ତ—ଶିବ (୫) ସରିତ—ନଦୀ (ଗଙ୍ଗା) (୬) ତରୀ—ନୌକା

ଏତେ ସୈନ୍ୟ ଘେନି ବନକୁ ଗମନ କରୁଛ କାହିଁକି
ତାଙ୍କୁ ବଧ କରି ନିଷ୍କଣ୍ଟକ ରାଜ୍ୟ ଭୋଗିବା ପାଇଁକି ।୨୬।
ଯୁଝି ଶୁଝିବ କି ? ଅହଲ୍ୟା(୧) ଏ କଥା ବୁଝି ମୁଁ ନ ପାରେ
ଏ ଭରତ ଭରତଧୃତ କରତ ବରତ ପ୍ରକାରେ,
ଅଟେ ତପୋବନ୍ତ ଆପଣ ମହତ ଏହା ଯା କହିଲ
ତୁନ୍ତ ମୋର ଅନ୍ତସ୍ଥଳକୁ ପ୍ରହାରି ସନ୍ତପ୍ତ କଲ ।୨୭।
ରାମ ଧ୍ୟାନ ଭିନ୍ନ ଆନ କଥା ମନମଧ୍ୟରେ ନ ଥାଏ
ମାତା ଯୋଗେ ଏତେ କଥା ମୁଁ ଶୁଣିଲି ମୋ ହୃଦ ବଥାଏ,
ରାଣୀମାନେ ପାଣି ଯୋଡ଼ି ପ୍ରଣିପାତ କରନ୍ତେ ମୁନିଙ୍କି
ଆଶୀର୍ବାଦ କରି ଭାଷିଲେ ତପସ୍ୱୀ ଚାହାଁଇ ତାଙ୍କି ।୨୮।
(ଭରତ) କୁଶସଦୃଶ ଯାହାଙ୍କ ଅଙ୍ଗଦେଶ ଦାଣଇ ହେ ତପି ।
ରାମଙ୍କ ମାତା ସେ ଇନ୍ଦୀବରେକ୍ଷଣା ଇନ୍ଦିରା(୨)ସ୍ୱରୂପୀ ।
ମୁଖ ଦୁଃଖଯୁକ୍ତ ସୁଖରେ ଆସକ୍ତ ନ ଥାଏ ଯାହାର
ଦେଖ ତାଙ୍କ ବାମପାଶେ ସ୍ଥିତ ସାନଜନନୀ ମୋହର ।୨୯।
ଯାହା ଯୋଗେ ସପ୍ତଶତ-ପଞ୍ଚାଶତ ବନିତା ବିଧବା
ସ୍ୱସୁଖ-ଅଭିଳାଷିଣୀ ସାଧ୍ୱୀପରି ହୋଇଛି ଯେ ଜୀବା,
ନିନ୍ଦ୍ୟ ସ୍ୱହୃଦୟା ଛନ୍ଦ-ଦ୍ୱନ୍ଦ-ମାୟାପୂର୍ଣ୍ଣ ଯା ଉଦର
ଯା ଘେନି ବନକୁ ବିତାଡ଼ିତ ହେଲେ ମୋହର ସୋଦର । ୩୦।
ତା ଗର୍ଭୁ ଉତ୍ପତ୍ତି ହୋଇଛି ମୁଁ ଯେତ ମୋପରି ସଂସାରେ
ଭାଗ୍ୟହୀନଜନ ମିଳିବା କଠିନ ମନରେ ବିଚାରେ,
ଭୁଜଙ୍ଗମ ସୁଧା ପାନ କଲେ ମୁଖ ଉଦ୍‌ଗାରେ ଗରଳ
ନିମ୍ବ ପାଦପରୁ ଉପୁଜି ପାରେ କି ସୁମଧୁର ଫଳ ।୩୧।
ତପସ୍ୱୀ ଭାଷଣ ଗାଭୀ ଖାଏ ତୃଣ ଦୁଗ୍ଧେ ତା ମଧୁର
ପଙ୍କରୁ ନଳିନ ହେଲେହେଁ ଉତ୍ପନ୍ନ ନୁହେ କି ସୁନ୍ଦର,
ମାତାଙ୍କୁ ନିନ୍ଦା ନ କର ଶୁଣ ତୁମ୍ଭେ ମୋଠାରୁ କଥାଏ
ଧାତା କଥା ଆନ କରିବା କ୍ଷମତା କାହାର ନ ଥାଏ ।୩୨।

---

(୧) ଅହଲ୍ୟା—ଶକୁନ୍ତଳା (୨) ଇନ୍ଦିରା—ଲକ୍ଷ୍ମୀ

ଯୋଗବଳେ ମୁନି ଧ୍ୟାନମଗ୍ନ ହେଲେ ସୈନ୍ୟ ର ଅଶେଷ
ବିଶ୍ବର ବିବିଧପ୍ରକାର ଖାଦ୍ୟ ଦେଲେ ସକଳେ ସନ୍ତୋଷ,
ଚରଗ୍ଣ ସବୁ ଫେରଗ୍ଣ ଦକ୍ଷିଣରୁ ପୂରୁବ ଅକାଶ
ବିକାଶ ନାନାକୁସୁମ ବିବସ୍ବାନ(୧) ହୋଇଲେ ପ୍ରକାଶ ।୩୩।
ନିଜ ନିଜ ଯାନ ଆରୋହଣ ସୈନ୍ୟ କଲେକ ଗମନ
ପାଦରେଣୁ ଊର୍ଦ୍ଧ୍ବେ ଉଡ଼ିବାରୁ ଦେଖା ନ ଗଲା ଗଗନ,
ଥାଟ ସର୍ବ ଭେଟ ହେଲେ ଚିତ୍ରକୂଟ କୂଟ(୨) ର ନିକଟ
ଗୋକୁଳାନନ୍ଦ ରଚିଲ ବାଟ ଖୋଜି ଝଟିତ ଲେଉଟ ।୩୪।

---

ଚତୁର୍ଦ୍ଦଶ ଛାନ୍ଦ
ରାଗ—ମାଳବ ।

ରାମ ଚିତ୍ରକୂଟ ନଗରେ ରଙ୍ଗରେ,
ବିହରନ୍ତି ଧରି ନାରୀଙ୍କ ସଙ୍ଗରେ ।୧।
ସୁମନେ ସୁମନା ଲେପନ୍ତି ସ୍ବକରେ,
ଖଞ୍ଜନ୍ତି ଖଞ୍ଜନନେତ୍ରା ମସ୍ତକରେ ।୨।
ତରୁଣୀଙ୍କ ଘେନି ବୃକ୍ଷ ତଳୁତଳେ,
ବସନ୍ତି ଭାଷନ୍ତି ବାଣୀ କୁତୂହଳେ ।୩।
ସହଚରୀ ବୃକ୍ଷ ଦେଖ ସହଚରି,
ଝୁଞ୍ଚିଅଛି ଅନା ଦଶଇ କପରି ।୪।
ତମାଳ ତ ମାଳ ମାଳ ହୋଇ ସାଜେ,
ତଥିପାଶେ ଜାତୀ ଜୂତୀକ ବିରାଜେ ।୫।
ବୃନ୍ଦାଳେ ରସାଳ ଶାଳରେ ମାଳତୀ,
କୁସୁମ ସୁଷମା ବଳଇ ଭାରତୀ ।୬।
ଚଳଦଳ(୩) ତଳେ ଦନ୍ତାବଳଦଳ,
ଭାଳ ଭାଙ୍ଗ ଦଳ(୪) ଭରନ୍ତି କବଳ(୫) ।୭।

---

(୧) ବିବସ୍ବାନ—ସୂର୍ଯ୍ୟ (୨) କୂଟ—ଶୃଙ୍ଗ
(୩) ଚଳଦଳ—ଅଶ୍ବତ୍ଥ (୪) ଦଳ—ପତ୍ର (୫) କବଳ—ଗ୍ରାସ

ଯୁନାସୀବର ଏ ଦ୍ୱନାର ବଦକ୍ଷୁ,
ଦେଖ ଥରେ ଶାଖା ଛୁଇଁଛୁ ତଳକୁ । ୮ ।
ବୀରତରୁଣୀ ସମ୍ମୁଖେ ବୀରତରୁ୧
ନୟନ ମନକୁ ହରଇ ଦୁରନ୍ତ । ୯ ।
ବୈଦେହୀ ବୈଦେହୀ୨ ଦଶେ କେତେ ଶୋଭା,
ନାଗରଙ୍ଗ୩ରଙ୍ଗେ ନୋହିବ କେ ଲୋଭା । ୧୦ ।
ସୁରଭି ସୁରଭି ଦୂରକୁ ଶୋଭିତା,
କହି ନ ପାରିବେ କବି ତା କବିତା ୧୧ ।
ନାରିକୁଳ ଶିରେ ଭୂଷା ନାରିକେଳ,
ତାଳ ଶୂନ୍ୟ ଫଳ ବୃକ୍ଷ ଅଗ୍ରେ ମେଳ । ୧୨ ।
ପୂଗପୁଙ୍ଗ୪ ତୁଙ୍ଗେ ହୋଇ ଅବସ୍ଥିତ,
ଚୂଚୂକ୫ ଭଙ୍ଗକୁ କରନ୍ତି ଲଙ୍ଘିତ । ୧୩ ।
ନାଗେଶ୍ୱର କେଶଳୟ ମନୋରମା,
ମଞ୍ଜୁଳ୬ ବଞ୍ଜୁଳ୭ ମଞ୍ଜରୀ ସୁଷମା । ୧୪ ।
ଋଷି୮ ନାମାଗମ ବଙ୍କିମ କୁସୁମ,
ଶଶୀହାସୀ ଦଶେ ଶିଶୁ ଶଶୀସମ୯ । ୧୫ ।
ଏଳା ଅଁ ଏଳା ପୀତଶାଳ ପିପ୍ପଳୀ,
ବୋଲ ବୋଲକ ମଧୂଷ୍ଠୀଲ୧୦ ପାଟଳି । ୧୬ ।
ବକୁଳ ମୁକୁଳ ଆମୋଦ ଆକୁଳ,
କରନ୍ତି ମଲ୍ଲିକା ସେଫାଳିକାକୁଳ । ୧୭ ।
ଦେଖ ଫୁଟିଅଛି ପୁଷ୍ପ ନାନା ଭଳି,
ଅଳିକୁଳ କେଳି କରନ୍ତି କଉଳି । ୧୮ ।

---

(୧) ବୀରତରୁ—ଅର୍ଜୁନ ବୃକ୍ଷ
(୨) ବୈଦେହୀ—ହଳଦ
(୩) ନାଗରଙ୍ଗ—ନାରଙ୍ଗ
(୪) ପୂଗ ପୁଙ୍ଗ—ଗୁଆ-ସମୂହ
(୫) ଚୂଚୂକ—ସ୍ତନର ଅଗ୍ରଭାଗ
(୬) ମଞ୍ଜୁଳ—ସୁନ୍ଦର
(୭) ବଞ୍ଜୁଳ—ଅଶୋକ
(୮) ଋଷି—ଅଗସ୍ତି
(୯) ଶଶସମ—୨ୟା ଚନ୍ଦ୍ରପରି
(୧୦) ମଧୂଷ୍ଠୀଲ—ମହୁଲ

ପଞ୍ଚବର୍ଣ୍ଣେ ସଖି ? ଫୁଟିଛୁ ସୁମନ,
ବେନ ପ୍ରାଣୀ ନାମ ତହିଁ ବିଦ୍ୟମାନ । ୧୯ ।
ତୃତୀୟ ଚତୁର୍ଥବର୍ଣ୍ଣ ଏକତ୍ରରେ,
ଅର୍ଥ ପ୍ରବର୍ତ୍ତିବ ପ୍ରଚେତାଙ୍କ ଠାରେ । ୨୦ ।
ପ୍ରାଣୀଙ୍କ ଚତୁର୍ଥ ପଞ୍ଚମଦ୍ୱ ବର୍ଣ୍ଣ,
ପ୍ରଥମ ଚତୁର୍ଥ ବର୍ଣ୍ଣ କରେ ଦାନ । ୨୧ ।
ଦ୍ୱିତୀୟ ପଞ୍ଚମ ଏ ବେନି ବରନ,
ହର କରିଛନ୍ତି କଣ୍ଠରେ ଧାରଣ । ୨୨ ।
ଷଷ୍ଠ ଦେବତା ପୁରୁଷ ନାମ ତଥି,
ପଞ୍ଚେନ୍ଦ୍ରିୟ ମଧ୍ୟ ଇନ୍ଦ୍ରିୟେକ ସ୍ଥିତି । ୨୩ ।
ଶୁଣି କାନ୍ତବାଣୀ ଭଣିଲେ ଜାନକୀ,
ଧରଣୀଧରଙ୍କ ଭିନ୍ନ ଏ ଆନ କି । ୨୪ ।
ବର୍ଣ୍ଣାଶୁଦ୍ଧି ଯୋଗେ ସମ୍ଭୋବଂଶ ପଦ,
ଅର୍ଥରେ କେବଳ ଘଟିଛୁ ବିପଦ । ୨୫ ।

ଗୋ-ମୂତ୍ର ଛନ୍ଦ

ରସି ପ୍ରେମଶୀଳାଠାରେ ବୀରବର,
ଭ୍ରମି ଶ୍ରମ ଶିଳାପରେ ଧୀର ଚିର । ୨୬ ।
କ୍ରୀଡ଼ା-ଘନେ ମୁଞ୍ଚ ଅରେ ରସବତୀ,
ବ୍ରୀଡ଼ା ମନେ ପାଞ୍ଚ ବାଡ଼େ ହଂସଗତି । ୨୭ ।
ଶଶୀହାସୀ ପଟୁଁ ଧଳା ଶିଳା ଧର,
ରସି ବସି ଏଥୁଁ ଗଳାମାଳା କର ।୨୮।

---

୧୯ । ପଞ୍ଚମବର୍ଣ୍ଣ—ପାଞ୍ଚ-ଅକ୍ଷରବିଶିଷ୍ଟ ପୁଷ୍ପ (ନାଗକେଶର) ବେନିପ୍ରାଣୀ—ନାଗ—(ହସ୍ତୀ), କେଶରୀ—(କୁମ୍ଭୀର),
୨୦ । ୩+୪=କେଶ (ବରୁଣ)
୨୧ । ୪+୫=ଶର (କାଣ୍ଡ, ବାଣ) ୧+୪=ନାଶ (ଧ୍ୱଂସ)
୨୨ । ୨+୫=ଗର (ବିଷ)
୨୩ । ଷଷ୍ଠ ଦେବତା— (ଗଣେଶ) ନାଗ—ହସ୍ତୀ; କ-ମୁଖ (ହସ୍ତୀମୁଖ ଯାହାଙ୍କର) ପଞ୍ଚେନ୍ଦ୍ରିୟ ମଧ୍ୟ—ନାକ; ଧରଣୀଧର—ବାସୁକି (ନାଗକେଶର)(ସ୍ତ୍ରୀ)

ଗୁଞ୍ଜିଲତାମୂଳେ ପିକ ଭରେ ସ୍ବନ,
କୁଞ୍ଜିଲତାତଳେ ଶୁକ ହରେ ମନ ।୨୯।
ସୁଖକର ନୀଳକଣ୍ଠ କଳରବ,
ଦୁଃଖହର କାଳକଣ୍ଠ କଳରବ ।୩୦।
ବନେ ବାସ ସଖି । ବଡ଼ ସୁଖକର,
ମନେ ତୋଷ ରଖି ଘୁଞ୍ଚ ଦୁଃଖ ଘୋର ।୩୧।
ବସି ମୃଗ ଶଶାସିଦ୍ଧ ବୃକ୍ଷତଳ,
ହର ଖଗ ବସା ତେଜ ରୁକ୍ଷମେଳ ।୩୨।
ବରକୋଳି ଅଛୁ ଦେଖ ସାର ଶାଖୀ,
ଧର ତୋଳି କଛୁ ଚହ୍ନି ସାରସ ପକ୍ଷୀ ।୩୩।
ସାହସ୍ରବ ଅମ୍ବ ଶାଳ କୁରୁବକ,
ଲଦ୍ରବ ନିମ୍ବ ତାଳ ମରୁବକ ।୩୪।
ଦେବଦାରୁ ସୋମବଲ୍ଲୀ ଶୀତଭୀରୁ,
ନବତରୁ ଭ୍ରମମଲ୍ଲୀ ପୀତତରୁ ।୩୫।
ସତ ଶତମୂଳୀ ବଥ ପରବ୍ୟାଧ(୧)
ଶତ ଶତ ମିଳି ପଥ ଭର ରୋଧ ।୩୬।

## ମଣ୍ଡୂକପ୍ଲୁତ

ବନଜାନକୀ ତୁ ବାରେ ଅସ ଏଥି,
ବସି ଘୁଞ୍ଚ ଚିନ୍ତା ସୁଖେ ରଖ ମତ ।୩୭।
ବ ପକ୍ଷୀ ର ହନ୍ତ ସଙ୍ଗେ ରଙ୍ଗ ନାସି,
ଦେଖ ନାରି ଶବା ଠାଣି ଗୁରୁ ଭାର ।୩୮।
ଭି ବାବଲ୍ଲି ସ୍ବନ ମହାଜନେ ପଢ଼,
ଥିବା ସବୁ ବେଳେ ବନ୍ଧୁ ଦେଖି ଛଢ଼ ।୩୯

---

(୧) ପରବ୍ୟାଧ—ବେତ

୩୭-୩୯—ବନବାସ ବଡ଼ ସୁଖକର ସଖି, ଘରଠାରୁ ଭଲ ମନେ ଥିବୁ ରଖି ।
ମଣ୍ଡୂକପ୍ଲୁତରୁ ବାହାରିଲା ।

ମେଷ ଯୁଦ୍ଧ ।

ମାରଶର ହର ବହ ରସ ରମା,
ମାତ ଉଦାସର ରସଦା ଉତ୍ତମା ।୪୦।
ବଦେ ବସି ଦାସ ସଦାଶିବ ଦେବ;
ବହେ ଦର ବସା ସାର ରଦ ହେବ ।୪୧।
ସୁପ୍ରସାଦ ରତ ତର ଦଶାପ୍ରସୂ,
ସୁନାସୀର ହେବ ବହେ ରସି ନାଶୁ ।୪୨।

ସିଂହାବଲୋକନ ।

ଧରଇ ବନ୍ଧ ଶୋଭା ଏ ଭୂଧର,
ଧରଣୀଜା ଶୃଙ୍ଗେ ଚରେ ବାରିଧର ।୪୩।
ଧରନ୍ତି ମଧ୍ୟେ ଏ ଅତି ମନୋହର,
ହରଇ ମାନସ ସୁଖରେ ବିହର ।୪୪।
ହରେକ୍ଷ୍ଣାମଣି-ମୁଖୀ ନାଗବର,
ବରଜନ କରେ ଦୁଃଖ ଗିହ୍ୱର ।୪୫।
ବରଟାଗମନା ହେଲେହେଁ ସୁନ୍ଦର,
ଦରପୂର୍ଣ୍ଣ ମଧ୍ୟ ଅଟଇ କନ୍ଦର ।୪୬।
ଦରଶନ କଲେ ସୁଷମା ନିକର
କରଇ ଆନନ୍ଦ ବୃଦ୍ଧି ଦର୍ଶକର ।୪୭।

---

୪୦ଶ ପଦାର୍ଥ—ରାମଚନ୍ଦ୍ର ସୀତାଙ୍କୁ କହିଲେ ରେ ରମା ତୁ ହରେସ ମାରଶରକୁ ହରଣ କର । ରେ ରସଦା ଉତ୍ତମା ତୁ ଉଦାସରମାତ । ଦାସ ବସି ବଦେ ସଦାଶିବ ହେବ । ରେ ବସାସାର ମୁଁ ଦର ବହେ ସେ ରଦ ହେବ ।

ରାମ ସୀତାଙ୍କୁ କହିଲେ ରେ (ରମା) ଲକ୍ଷ୍ମୀ ତୁ ରହ ମୋ ସହିତ ରସି ମାର (କନ୍ଦର୍ପ) ଶର ହରଣ କର । ରେ ରସଦାକା ଉତ୍ତମା ତୁ ଉଦାସ ଭାବରେ ମାତ ଦାସ କହେ ସଦା (ଶିବ) ମଙ୍ଗଳ ଦେବ ।

୪୧ଶ ପଦାଥ—ରାମଚନ୍ଦ୍ର ସୀତାଙ୍କୁ କହିଲେ ରେ ସଖି ତୁ (ସୁପ୍ରସାଦରତ) ସୁ ଅନୁଗ୍ରହ କର (ତର) ଚଞ୍ଚଳ କାର୍ଯ୍ୟରେ ରତ ହେଲେ (ଦଶାପ୍ରସ) ଦଶାର ଜନତାକୁ ରସି ନାଶିଲେ ମୁଁ (ସୁନାସୀର) ଇନ୍ଦ୍ର ହେବ ।

କରଙ୍କ-ଧର୧ଙ୍କ ପ୍ରତ ପ୍ରୀତିକର
କରନ୍ତି ନିବାସ ଭଜନ୍ତି ଶଙ୍କର ।୪୮।

ମଧ୍ୟ ଯମକ

ରଘୁନାଥ କହି କହି ଏହିପରି,
ନାନା ସ୍ଥାନେ ରହି ରହି କ୍ରୀଡ଼ା କରି ।୪୯।
ସୀତାଙ୍କ ଲକୁଚ-କୁଚ୨ରେ କସ୍ତୁରୀ,
ଦଳି ପତ୍ରାବଳୀ ବଳୀ ଲେଖିକରି ।୫୦।
ଚନ୍ଦନେ ବିଚିତ୍ର ଚିତ୍ର ବିରଚିଲେ,
ସୀତା ଶ୍ୟାମ ଶ୍ୟାମ ଗାତ୍ରରେ ଲେପିଲେ ।୫୧।
ବୀରବର ବରବରନାକୁ ଧରି,
ଗଲେ ଧୀରି ଧୀରି ଧୀରି ଗତି କରି ।୫୨।
ପ୍ରଭାକର କର କରନ୍ତେ ବପନ,
ସରିତରେ ତରେ ତରି ବେନିଜନ ।୫୩।
ଦେଖି କୁନ୍ଦଦନ୍ତୀ ଦନ୍ତୀ କରେ କେଳି,
ଦିଶେ କବନ୍ଧ୩ବନ୍ଧ-ବନ୍ଧନ ଭଳି ।୫୪।
ତଟିନୀର ନୀର ନିରତ ନିର୍ମଳ,
ହଂସରାଜ ରାଜି ରାଜୀବ-କବଳ ।୫୫।
କରି ବିହରନ୍ତି ହରନ୍ତି ମାନସ,
କୁମ୍ଭୀର ମକର କରନ୍ତି ବିଳାସ ।୫୬।

ପ୍ରାନ୍ତ ଯମକ

ନାରୀ ପୁଂସ ସାରି ସ୍ନାନ ପରି ବେଶ,
ଗଇରିକ ଶିଳ ପରେ ପରିବେଶ ।୫୭।
ବସି ଗେରୁ ଘଷି ସୀତାଙ୍କ କପାଳ,
ଶତ୍ରାକର୍ଷ ଶିତା ଲେଖି ଲୋକପାଳ ।୫୮।
ଅଳ୍ପକାଳ ମାତ୍ର ବସି ସେ ପଥରେ,
ଧରାଧର ହୋଇ ଗମିଲେ ପଥରେ ।୫୯।

(୧) କରଙ୍କ-ଧର—କମଣ୍ଡଳୁଧାରୀ (ଋଷି; ମୁନି)
(୨) ଲକୁଚ—ଜେଉଠ (ଜେଉଠ ଫଳ ବର୍ତ୍ତୁଳ) (୩) କବନ୍ଧ—ଜଳ

ରହିଥିଲେ ଛନ୍ଦି ବନ୍ଧୁ ବଳାମୁଖେ୧ ।
ଗୋଡ଼ାଇ ଆସିଲେ ଦେଖାଇ ସମ୍ମୁଖ ।୬୦।
ଶଙ୍କା ଲଭି ରଙ୍କୁନେତ୍ରା୨ ହୃଦୟରେ
କୋଳାଗତ କଲେ ପତିଙ୍କ ଭୟରେ ।୬୧।
ସୀତାଙ୍କ ମସ୍ତକସ୍ଥିତ ଗେରୁ ଶଢ଼ା,
ଲଗିଲା ଯାଇଁ ସେ ଶ୍ରୀରାମଙ୍କ ଶିଢ଼ା ।୬୨।
ତାହା ଦେଖି ହାସ୍ୟ କଲେ ବଇଦେହୀ,
ଭାସିଲେ ହସିଲ ଚମ୍ପା ସ୍ୱର୍ଣ୍ଣଦେହୀ ।୬୩।
କାନ୍ତବାଣୀ ଶୁଣି ରମଣୀତିଳକ,
ଭଣିଲେ ମସ୍ତକେ ଲଗିବା ତିଳକ ।୬୪।
ତହୁଁ ଚଳି ମାଳ୩ ବରଟ ଲୁଟକେ,
ରଭସେ୪ ପ୍ରବେଶ ଦମ୍ପତି ଉଟଜେ୫ ।୬୫।
କରକରଦନା ପକାଇ ଅଧର,
ବର ଦେବରଙ୍କୁ ପରଶି ଅଧର ।୬୬।

**ଅଦ୍ୟଯମକ**

ଅବନୀଜା-କାନ୍ତ କରନ୍ତେ ଭୋଜନ,
ଅବରଜ୬ ଗଲେ ଘେନି ସ୍ୱଭାଜନ୭ ।୬୭।
ଅବଶେଷ ଥିଲା ଯାହା ସ୍ୱକାନ୍ତର
ଅବଳା ତାହାକୁ ଭୁଞ୍ଜିଲେ ମାତର ।୬୮।
ଅରନ୍ଧନ ଫଳ ରଖି ରଙ୍କକରେ,
ଅରବିନ୍ଦାନନୀ ବସି ଦଣ୍ଡକରେ ।୬୯।
ମନ୍ଦ୮ର ମାଂସରେ କଲନ୍ତେ ବ୍ୟାଘାତ,
ମନ୍ଦରସ୍ତନରେ କଲା ଚଞ୍ଚୁଘାତ ।୭୦।

---

(୧) ବଳାମୁଖ—ମର୍କଟ (୨) ରଙ୍କୁନେତ୍ରା—ମୃଗନୟନା
(୩) ମାଳ—ପର୍ବତୋପରି ସମତଳ ପ୍ରଦେଶ (୪) ରଭସ—ଶୀଘ୍ର
(୫) ଉଟଜ—ପତ୍ରକୁଡ଼ିଆ (୬) ଅବରଜ—ସାନଭାଇ (ଲକ୍ଷ୍ମଣ)
(୭) ସ୍ୱଭାଜନ—ନିଜର ଭୋଜନପାତ୍ର (୮) ମନ୍ଦ—କାକ

ସନ୍ଧଗତ ଅନ୍ତ-ତଟେ ପତପାଶ,
ସନ୍ଧତା ତାକର କରନ୍ତେ ପ୍ରକାଶ ।୭୧।
ଦ୍ୱି-ରକତ ଦେଖି ଜୀବଜଅଧର,
ଦ୍ୱିରକତ ହେଲେ ସେ କୋଦଣ୍ଡଧର ।୭୨।
ଧୀର ଚକ୍ଷୁ ଣେ ପେଷି ଐଷିକଶର ।
ଦ୍ୱି-ର ଈକ୍ଷଣ କରିଲେ ନାରଖାର । ୭୩ ।
ଦ୍ୱିରସ ଲଭନ୍ତେ କରଟ୧ ନିବୋଧ ।
ଦ୍ୱିରଶିଲେ ସୀତା କାନ୍ତେ ଅନୁରୋଧ । ୭୪ ।
ଦୃଷ୍ଟି ପ୍ରାପ୍ତ ହୁଅ ମାନ ଥାଉ କଥା ।
ଦୃଷ୍ଟିକର ବନ୍ଧେ ନ ହେଉ ଅନ୍ୟଥା । ୭୫ ।
ଖରେ ଗତ ପାଇ ରଘୁନାଥଠାରୁ ।
ଖ-ରେ ଗତ କଲେ ବାୟସ ସେଠାରୁ । ୭୬ ।
ତାପିଞ୍ଛ୨ବରନ ହେ କୋଦଣ୍ଡଧର ।
ତାପିତ ଗୋକୁଳାନନ୍ଦକୁ ଉଦ୍ଧର । ୭୭ ।



## ପଞ୍ଚଦଶ ଛାନ୍ଦ

### ରାଗ—ବସନ୍ତ

ଚିତ୍ରକୂଟ କୂଟ୩ ନିକଟ କପଟ-କୂଟଶୂନ୍ୟ ସୈନ୍ୟ ପ୍ରବେଶ
କୋଳାହଳସେନ ସୁମିତ୍ରାଦୁଲାଳ ଶ୍ରବଣେ ସନ୍ଦେହ ଅବେଶ
ବୃକ୍ଷରେ, ଅରୋହି ପକାଇ ଈକ୍ଷଣ,
ଭ୍ରାତାଙ୍କ ଅଗ୍ରଜ ଭରତ ଅଗତ ବାର୍ତ୍ତା ବ୍ୟକ୍ତ କଲେ ତତ୍କ୍ଷଣେ । ୧ ।
ଯୁଦ୍ଧେ କର ବଧ ଅମ୍ଭଙ୍କ ନିବୋଧ ଅଯୋଧ୍ୟାରେ ହେଲେ ନରେଶ
ଅଉ କେହ୍ନୁ ବାଧା ଦେବେ ନାହିଁ ବହିଗଲେ ଚତୁର୍ଦ୍ଦଶ ବରଷ ।
ଏପରି, ବାଞ୍ଛା ଚିତ୍ତରେ ଅସିଅଛି,
ବାଛୁ ଶର କଛୁ ପେଷି ମୁଁ ତାହାର ମନକାମନା ପୂରାଉଛି । ୨ ।

(୧) କରଟ—କାକ (୨)ତାପିଞ୍ଛ—ତମାଲ (୩) କୂଟ—ଶୃଙ୍ଗ

କୈକେୟୀ-ନନ୍ଦନ ମସ୍ତକ ଛେଦନ କରି ମୁଁ ଶମନ-ସଦନ
ପଠାଇବି ଅଗ୍ରେ ପଛେ କୁଜାସହ କୈକେୟୀ କରିବି ନିଧନ
ତା ସଙ୍ଗେ, ଯେତେକ ବୀର ଅସିଥିବେ,
ବଣକୁ ରଣ କାରଣ ଅକାରଣ ମରଣ ବରଣ କରିବେ । ୩ ।
ବଇଦେହୀପାଇଁ କହିଲେରେ ଭାଇ ଫେରାଇ ନେବାକୁ ଆସଇ
ରାଗ ତ୍ୟାଗ କର ଅଗ ଆଗମନ ଉଦ୍ଦେଶ୍ୟ ବୁଝ ଏଥି ଥାଇଁ
ତୋହର, କି ଖତ କରିଛି ଭରତ,
ଶତ୍ରୁ ତା ଆଚରି କଟୁ ବାଣୀ ରଟୁ ତାହା ପ୍ରତି କ୍ରୋଧଭର ତ । ୪ ।
କଥୋପକଥନ ହେଉଁ ବେନିଜନ ଭ୍ରାତୃଭକ୍ତ ବୀର ଭରତ
ଯୁଡି କୃତାଞ୍ଜଳି ଲୋଟି ଶ୍ରୀ ପଦ୍ମରେ ରଡିଲେ ବାକଲେ ଏମନ୍ତ
କୁଟିଳା,-ପ୍ରକୃତି ଜନନୀ ମୋହର,
ମନ୍ଦପଣେ ଦ୍ୱନ୍ଦ୍ୱ ଆରମ୍ଭ କରିଛି ଦୋଷ କ୍ଷମା କର ତାହାର । ୫ ।
ସାଗ୍ରହେ ଅଗ୍ରଜ ବ୍ୟଗ୍ରତା ସହିତ କୋଳାଗତ କରି ଭାଇଙ୍କ ।
କହିଲେ ତୁହି ମହୀପ ହୋଇ ଶିରେ ବହିଅଛୁ ଜଟା କାହିଁକି ।
ଶତ୍ରୁରେ, ଶୀର୍ଣ୍ଣ କରି ଅଛୁ ପ୍ରତୀକ(୧),
ଜନଙ୍କ ସହିତ ବନକୁ ଆଗତ ଶୋକ କରୁଥିବେ ଜନକ । ୬ ।
(ଭରତ) ଜନନୀର କୁମନ୍ତ୍ରଣାରେ ଆପଣ ବନକୁ କରନ୍ତେ ଗମନ
ଶତ୍ରୁ-ବାତାଘାତେ ପିତାଙ୍କର ପ୍ରାଣପ୍ରଦୀପ ହେଲା ନିର୍ବାପନ
ବିଷଧ୍ୱ, ବାସ(୨) ଦଶଇ ବିଷଧର,
ପତି ପୁତ୍ରବେନି ବିହୀନେ ସମ୍ପ୍ରତି ହତଶ୍ରୀ ଅଯୋଧ୍ୟାନଗରୀ । ୭ ।
ପିତାଙ୍କ ମୃତ୍ୟୁସମ୍ବାଦ ଶୁଣି ରାମ ଶୋକ-ଅକୂପାରେ ମଜ୍ଜିଲେ
ଇଙ୍ଗୁଦୀରସ ଅଙ୍ଗେ ଲେପି ନଦୀରେ ସ୍ନାନ ତର୍ପଣାଦ ସର୍ଜିଲେ
ସେଠାରେ, ପ୍ରବେଶିଲେ ଜନନୀ ଯେ,
ପୁତ୍ରଙ୍କର ଶାନ୍ତ ଦର୍ଶନ ମାନସେ ନେତ୍ରରୁ ବହିଲା ପାଣି ଯେ । ୮ ।
କାମଜିତ ଶ୍ୟାମକାୟ ରାମ ନମସ୍କାର କଲେ ମାତା ପାଦରେ
କୋଳାଗତ କରି ଶ୍ରୀଅଙ୍ଗରୁ ଧୂଳି ଝାଡ଼ିଲେ କୌଶଲ୍ୟା ଖେଦରେ
ଏ କଷ୍ଟ, ଦେଖିଲି ପୁତ୍ର-ବଧୂଙ୍କର,
ଏହି କଥା କହି ଭାଲେ ଥିଲା ଲିହି କହି ଶୋକ କଲେ ଅପାର । ୯ ।

---

(୧) ପ୍ରତୀକ—ଦେହ (୨) ବାସ—ଗୃହ

କରଯୋଡ଼ି ଧୀର ଗିର ରଘୁବୀର ଘୋଷରେ କହିଲେ ଭରତ
ମାତା ବୋଲେ ପିତା କାତାନ୍ତ ଅନ୍ୟାୟେ ଦେଲେ ମୋତେ ରାଜ୍ୟଭାର ତ
ଉଚିତ, ପ୍ରାପ୍ୟ ସେ ନୁହଇ ମୋହର
ଅତଏବ ବନ ତେଜ ରାଜପଣ କର ନିଜରାଜ୍ୟେ ବିହାର । ୧୦ ।
ଜ୍ୟେଷ୍ଠ ସହୋଦର ଥାଉଁ ରାଜ୍ୟଭାର କିପରି ଗ୍ରହଣ କରିବି
ଅକଳଙ୍କ ଅର୍କବଂଶରେ କଳଙ୍କ-କାଳିମା କିନା ଲଗାଇବି
ସେ ଭାର, ବହନେ ନୁହେଁ ମୁଁ ସମର୍ଥ,
କରିବିବ କିନା ବନପତି ନାମ ବହିବା ହୋଇବ ଯଥାର୍ଥ । ୧୧ ।
ବୋଇଲେ ରାଘବ ରାଜ୍ୟ ନରଧବ ହୋଇଲେ ହୋଇବ ବିଧାନ
ସାନ ବୋଲି ଜ୍ଞାନ ନ କର ମନରେ ଜନକ-ଜନନୀଙ୍କ ଦାନ
ତାତଙ୍କ, ସତ୍ୟ ମୁଁ ଲଙ୍ଘିବି କେମନ୍ତେ,
ପିତାଙ୍କର ନର୍କଗତି ହେବ ମୋତେ ଅପବାଦ ଦେବେ ସମସ୍ତେ ।୧୨।
(ଭରତ) ମାନସରେ ଶାନ୍ତ ସାରସ୧ ବ୍ୟତୀତ ମାନସରେ୨ ଅନ୍ୟ ଶକୁନ୍ତ୩
ବିହରିବା କେଉଁ ଯଥା ତଥା ମୋର ଅଯୋଧ୍ୟାରେ ହେବା ନୃପତି
ନହୁଷ—ପରି ପରିଶେଷେ ହୋଇବି,
ଅଜ୍ଞତାରେ ଗନ୍ତୁ ଅଧ୍ୟୟନଭାର ଦାନଫଳ କିନା ପାଇବି । ୧୩ ।
କରନ୍ତୁ ବିଚାର କେଡ଼େ ଅତ୍ୟାଚାର କରିଛନ୍ତି ଅମ୍ଭ ପିତର
ଭାରଯା ବୋଲରେ ବାହାର ଯା ବୋଲି ତେଜିଲେ ନିଜର କୁମର
ବିନାଶ, କାଳେ ବିପରୀତ ବୁଦ୍ଧିକି,
କରି ମୋ ଗଳାରେ ରାଜ୍ୟ-ଭୁଜଙ୍ଗମ ବାନ୍ଧି ଲଭିଲେ କି ସିଦ୍ଧିକି ?୧୪
ରାଜା ବୋଲି ଅଯଥାରେ ସଜ୍ଞା ଦେଲେ ପ୍ରଜା ସହିବା କି ଉଚିତ ?
ଅବୈଧ ଆଦେଶେ ପାଳନ ନ କଲେ ଅପରାଧ ନୁହେଁ କିଞ୍ଚିତ
ଆପଣ, ଅଯୋଧ୍ୟା-ଭୂପାଳ ନ ହୋଇ,
ବୃଥା କଥାରେ ମଥାରେ ଜଟା ବାନ୍ଧି ବ୍ୟଥା ସହୁଛନ୍ତି କିପାଇଁ ।୧୫।
(ରାମ) କୈକୟୀଙ୍କ ପାଣି ଗ୍ରହଣ କାଳରେ କେକୟକୁ ଅମ୍ଭ ଜନକ
କହିଥିଲେ ତୁମ୍ଭ ଦୌହିତ୍ର ମୋ ଅନ୍ତେ ହେବ ଅଯୋଧ୍ୟାର ନାୟକ
ପୂର୍ବରୁ, ଦେଇଥିଲେ ପୁଣି ବର ଯେ,
ବର୍ତ୍ତମାନ କଲେ ପାଳନ ତାହାକୁ କହିଲେ ବୈଦେହୀବର ଯେ ।୧୬।

(୧) ସାରସ—ହଂସ(୨) ମାନସର—ମାନସରୋବର (୩) ଶକୁନ୍ତ—ପକ୍ଷୀ

ଜାନକୀ ଯା ବାଳୀ ତାହାଙ୍କ ଜାବାଲି ବଶିଷ୍ଠାଦି ଗୁରୁଜନ ଯେ
ଅଶେଷ ଉପଦେଶ ଦେଲେ ସେ ଲେଶମାତ୍ର ନୁହେ ପ୍ରୟୋଜନ ଯେ
ତାହାଙ୍କ, ବାଣୀ ବାଲିସେତୁପରି ଯେ
ରାମଙ୍କ ଅଟଳ ପ୍ରତିଜ୍ଞା-ସରିତ ବାରି ନ ପାରିଲା ବାରି ଯେ ।୧୭।
ରୁଷି ରଷିପରି କୁଶାସନେ ବସି ନାଶି ସ୍ନାନ ପାନ ଅଶନ
ଆଜଠାରୁ ବନ ଭବନ ହୋଇଲା ବୋଇଲେ କୈକେୟୀନନ୍ଦନ !
ରାଘବ, କହିଲେ ଫେରି ଯା ଭରତ,
ରାଜ୍ୟ ଅରାଜକ ସମୟେ ତେଜିବା ବଡ଼ ଅନ୍ୟାୟ ତୁମ୍ଭର ତ ।୧୮।
ପରବଳ୧ ଦରବଳ ହୋଇ ଘରଘାର କରିଦେବେ ଦେଶକୁ
ବାସ ତେଜି ବନେ ବାସ କଲେ ଅପଯଶ ହେବ ହଂସ୨-ବଂଶକୁ
ଅକୀର୍ତ୍ତି,-ନାଗରୀ ଜଗତେ ବାଜିବ,
ଅକଳଙ୍କ ଅର୍କକୁଳ ଟେକ ସିନା ସମୂଳେ ବିଳୟ ଭଜିବ ।୧୯।
ଦେବ ଦେବ-ଋଷି ଗନ୍ଧର୍ବାଦି ସର୍ବ ଦିବବାସୀ୩ ରହି ଶୂନ୍ୟରେ
କହିଲେ ଭରତ ଫେରି ଯା ଭରତ ଶ୍ରୀରାମ କହିଲେ ବନରେ
ତାତଙ୍କ, ସଦ୍‌ଗତି ହୋଇବ ନିଷ୍ଠୟ,
ଆମ୍ଭର ବହୁତ ଉପକାର ହେବ ଯଦ୍ୟ ଯିବେ ଦୁଷ୍ଟ ନିଶ୍ଚୟ ।୨୦।
ଦୈବବାଣୀ ଶୁଣି ଯୋଡ଼ି ବେନିପାଣି ଭଣିଲେ କୈକେୟୀନନ୍ଦନ
ଚତୁର୍ଦ୍ଦଶ ବର୍ଷ ଶେଷ ଦିବସ ମୁଁ ଶ୍ରୀପଦ ନ କଲେ ଦର୍ଶନ
ଅନଳେ, ପଶି ନାଶିବି ଏ ଦେହକୁ,
ପାଦୁକାଯୁଗଳ ପ୍ରଦାନ କରନ୍ତୁ ସିଂହାସନେ ରଖି ତାହାକୁ ।୨୧।
ଜଟା ବାନ୍ଧି ବଲ୍‌କଳ ପିନ୍ଧି ପ୍ରତିନିଧିରୂପେ ଶାସିବି ମୁଁ ଦେଶକୁ
ଏହା କହି ଘେନି ପାଦୁକାଯୁଗଳ ନନ୍ଦୀଗ୍ରାମେ ସର୍ବ୍ବଂ ବାସକୁ
ରହିଲେ, ବହିଣ ତପସ୍ବୀ ବେଶକୁ,
କହିଲେ ଗୋକୁଳାନନ୍ଦ ଚିନ୍ତ ନନ୍ଦସୁତ ଶ୍ରୀପଦ-ସାରସକୁ ।୨୨।

---

(୧) ପରବଳ—ଶତ୍ରୁ-ସୈନ୍ୟ (୨) ହଂସ—ସୂର୍ଯ୍ୟ
(୩) ଦିବବାସୀ—ସ୍ୱର୍ଗବାସୀ

## ଷୋଡ଼ଶ ଛାନ୍ଦ

ରାଗ—ଧନାଶ୍ରୀ

ଚିତ୍ରକୂଟ-ଗିରିବାସୀ ଋଷିବୃନ୍ଦେ (୧) ରାମଙ୍କ ବସ୍ତୁ ନ ମଣି
ରାତ୍ରିଚର-ଭୀତ ମତ ମଧ୍ୟେ ଶାନ୍ତି ଭବ୍ୟ (୨) ପ୍ରମାଦକୁ ଗଣି
ସ୍ଥାନାନ୍ତରେ ଗମନ, ରାମ ଜାଣିଲେ ସେ କଥାମାନ ।୧।
ସେ ବନ ବର୍ଜନ କରି ବନାନ୍ତରେ ଗମନ୍ତେ ଦନ ପ୍ରୟାଣ (୩)
ରାତ୍ରିକାଳେ ଅତ୍ରି ଯତିଙ୍କ ଆଶ୍ରମେ ଆତିଥ୍ୟ କଲେ ଗ୍ରହଣ
ଋଷି ଅତି ଆଦରେ, ରଖାଇଲେ କୁଟୀର ମଧ୍ୟରେ ।୨।
ଦନ୍ତୀ-କର୍ଣ୍ଣାଘାତ ପ୍ରାପ୍ତ ମଧୁବ୍ରତ (୪) ଅନ୍ୟତ୍ର କରେ ବିହାର
ଗଜଗଣ୍ଡ ପିନା ଶୋଭାସ୍ଥାନ ହୁଏ କି ଷଡ ମଧୁବ୍ରତର
ଚିତ୍ରକୂଟସ୍ଥ ମୁନି, ଦୁର୍ବୁଦ୍ଧିରେ ସିଦ୍ଧି କଲେ ହାନି ।୩।
କନକାଙ୍ଗୀ ଜାନକୀଙ୍କୁ ଅନସୂୟା ଆନନ୍ଦରେ କଲେ କୋଳ
ଅମ୍ଲାନ ବସନ ପ୍ରସନ୍ନେ ପ୍ରଦାନ କଲେ ପ୍ରେମେ ହୋଇ ଭୋଳ
ବନ୍ଦି ଯତିପ୍ରବର, ବଦେ ମହିମା ସ୍ତ୍ରୀ ପ୍ରମଦାର (୫) ।୪।
ଦଶ ବର୍ଷ ବର୍ଷା ଅଭାବରେ ନାଶ ହୁଅନ୍ତେ ବନପ୍ରଦେଶ
ଋଷିଅର୍ଣ୍ଣ ଆଣି ଜାହ୍ନବୀଙ୍କ ପାଣି ଯୋଗାଇ ଥିଲେ ବିଶେଷ
ଫଳମୂଳ ସକଳ , ସୃଷ୍ଟି କରି ନାଶିଲେ ବିକଳ ।୪।
ଉଦୟକାଳରେ ବିଦାୟ ହୋଇଲେ ସଦୟ-ହୃଦୟ ବୀର
ଦଣ୍ଡକରେ ଉପସ୍ଥିତ ଦଣ୍ଡକର ନିକଟେ କୋଦଣ୍ଡକର
ବିଲୋକିଲେ ସେ ଅଗ୍ରେ, ଅଲୌକିକ ମୂର୍ତ୍ତି ଆସେ ବ୍ୟଗ୍ରେ ।୬।
ଭୂଧର-ଖଣ୍ଡ ପରାୟେ ଦଶେ ପିଣ୍ଡ, ତୁଣ୍ଡ ଗୁମ୍ଫା, ମୁଣ୍ଡ ଶୃଙ୍ଗ
ଦନ୍ତ କୁନ୍ତବତ ସୁତୀକ୍ଷ୍ଣ, ଈକ୍ଷଣ (୬) ନାସା ଦିଶେ ଗର୍ତ୍ତ ଢଙ୍ଗ ।
କରେ ଧରିଛି ଶୂଳ, ଗୁନ୍ଥି ଶଶ ଶୂକର ଶାର୍ଦ୍ଦୂଳ ।୭।

(୧) ଋଷି—ଋମୂହ (୨) ଭବ୍ୟ—ଭବିଷ୍ୟତ୍ (୩) ପ୍ରୟାଣ—ଅବସ୍ଥାନ
(୪) ମଧୁବ୍ରତ – ଭ୍ରମର (୫) ପ୍ରମଦା—ସ୍ତ୍ରୀ (୬) ଈକ୍ଷଣ—ଅକ୍ଷି

ଭୃଙ୍ଗାୟ ପଦର ଭାବ—ପାନାର୍ଥିନୋ ମଧୁକରା ଯଦ କର୍ଣ୍ଣଘାତୈଃ
ଦୂରୀକୃତାଃ କରିବରେଣ ମଦାନ୍ଧବୁଦ୍ଧ୍ୟା
ତସ୍ୟୈବ ଗଣ୍ଡଯୁଗମଣ୍ଡନହାନିରେଷା
ଭୃଙ୍ଗାଃ ପୁନଃ ବିକଚପଦ୍ମବନେ ଚରନ୍ତି । (ଶା.ବ)

ବହୁ ପରିମିତ ବହୁଥିବା ଇନ୍ଦୁ ଫିଙ୍ଗିଅଛି ଗୃହୁଁ ଗୃହୁଁ
କିବା ଜବାପୁଷ୍ପ ପାଦପୁ ଚ୍ୟୁତରେ ପଡ଼ୁଅଛି ମୁହୁର୍ମୁହୁ
ଅବା ଗର୍ଭ ଭିତର, ପଶେ ଭାସ୍କର-କରନିକର ।୮।
ଦୁହିଁ ବିଲୋକିଲ ପୁରୁଷ ଦ୍ୱୟଙ୍କ ମଧ୍ୟରେ ଗୃହୁ ଅବଳା
ଧଳା କଳା ବଳାହକ୧ ମଧ୍ୟେ ଲୀଳା କରୁଛି କିବା ଚପଳା
ଅବା ରୌପ୍ୟ ମର୍କତ, ମହାରଜତ୨ ସ୍ତମ୍ଭ ନିର୍ମିତ ।୯।
ହରି କିମ୍ବା ମାର-ଘରଣୀ ହରଣ କରୁଛନ୍ତି ଚୋରପଣେ
ଧନୁଶର ଭିନ୍ନ ରୂପ ଧରି ଶ୍ୟାମ ଦେଖି ବୁଲୁଛନ୍ତି ବନେ
ମାରି ବେନି ପ୍ରାଣୀଙ୍କି, ନାଶି କରିବ ଏ ରମଣୀକି ।୧୦।
ଉତ୍ତମ ଚତୁର ଚତୁରଆନନ୩ କ୍ଷୁଧାତୁର କାଳ ଜାଣି
ସୁଧାସମ ଖାଦ୍ୟ ବିଦ୍ୟମାନ କଲା ଅଦ୍ୟ ମୋ ପାଶକୁ ଆଣି
ଭୟ ମୋଠାରୁ ପାଇଁ, ଅଯାଚିତେ ଦେଉଅଛି ଯାଚି ।୧୧।
ବଡ଼ ଅସମ୍ଭବ ନଭ-ଶଶୀ ଠାବ ଧବରେ୪ ହେବା ବିଷୟ
ମୋ ଭାଗ୍ୟକୁ ସିନା ଘଟିଛି ଏ କଥା କରିବା କିମ୍ପା ସଂଶୟ
ଶଚୀପତି-ସମ୍ପଦ, କିଛି ନୁହେଁ ଏ ହେଲେ ପ୍ରାପତ ।୧୨।
ଜାତବେଦେ୫ ପତଙ୍ଗ ପତନ ମତ ଦୈତ୍ୟଗୋତ୍ର୬ ଚୂଡ଼ାମଣି
ଯମ ସମ ଭୀମମୂର୍ତ୍ତିରେ ପାମର ଧରିଲା ରାମ-ରମଣୀ
ଦାଶରଥି ଅଧୀର, କ୍ରୋଧେ ବଦନୁ ନ ସ୍ଫୁରେ ଗିର ।୧୩।
ଭାଷନ୍ତି ଲକ୍ଷ୍ମଣ ଦାସକୁ ଆଦେଶ ଦେଲେ କରନ୍ତା ବିନାଶ
ଭରତସ୍ଥ କ୍ରୋଧ ପରିଶୋଧ କରି ବୋଧ କରନ୍ତା ମାନସ
ଏହା କହି ଲକ୍ଷ୍ମଣ, ତୀକ୍ଷ୍ଣ ବାଣ ବିନ୍ଧିଲେ ତକ୍ଷଣ ।୧୪।
ବିରହି ସୀତାଙ୍କୁ ଗରଜି ନୈଋତ୭ ସରଜିଲା ଘୋରରଣ
କ୍ରୋଧରେ ବେନିଙ୍କି କନ୍ଧରେ ଘେନି ସେ ସତ୍ୱରେ କଲା ପ୍ରୟାଣ
ଶିଶୁପରି ଅସୁର, ମଣେ ସହୋଦରଙ୍କର ଭାର ।୧୫।
ରଘୁନାଥ ମହାକ୍ରୋଧେ ତାହା ବାହା ବାହାର କଲେ ଦେହରୁ ।
ହୃଦୟ-ମନ୍ଦର କନ୍ଦରୁ କି ଅବା ଉତ୍ପାଟିତ ଶାଳତରୁ ।
ଶିଳା ପରେ କଚଡ଼ି, ଅବିବେକର ବେକକୁ ମୋଡ଼ି ।୧୬।

(୧) ବଳାହକ—ମେଘ (୨) ମହାରଜତ—ସ୍ୱର୍ଣ୍ଣ (୩) ଚତୁରଆନନ—ବ୍ରହ୍ମା
(୪) ଧବରେ—ମନୁଷ୍ୟଦ୍ୱାରା (୫) ଜାତବେଦ—ଅଗ୍ନି (୬) ଗୋତ୍ର—ବଂଶ
(୭) ନୈଋତ—ରାକ୍ଷସ

କାଳ୧ ନେବା କାଳ ଉପସ୍ଥିତ ଦେଖି ବିକଳେ କହେ ଅସୁର୨
ଦୁଷ୍ଟ ବିନାଶନ ନିମନ୍ତେ ବୈକୁଣ୍ଠ ତେଜି ଜନ୍ମିଛ ସଂସାର
ଜଗଜ୍ଜନନୀ ସୀତା, ହୋଇଅଛନ୍ତି ତବ ବନିତା ।୧୭।
ପୂର୍ବେ ତୁମ୍ବରୁ-ଗନ୍ଧର୍ବ ଥିଲି ମୁହିଁ ନିଦବେ କରେ ବିହାର
ରମ୍ଭା-ଉରୁ ରମ୍ଭା ଶୋଭାରେ ମୁଁ ଲୋଭାସକ୍ତ ହେବାରୁ କୁବେର
ଶାପ ଦେଲେ ଅସୁର୩, ରୂପେ ଜାତ ହୋଇ ପାଅ ତାପ ।୧୮।
ପ୍ରତିକାର ମାଗିବାରୁ ସେ କହିଲେ ମର୍ତ୍ତ୍ୟ ଜାତ ହେବେ ରାମ
ଧରିବୁ ପୂର୍ବ ଶରୀର ତୁ ତରିବୁ ମରିଲେ କରି ସଂଗ୍ରାମ
ଶତହ୍ରଦା୪ ଉଦରେ, ଜାତ ବିରାଧ ନାମକୁ ଧରେ ।୧୯।
ଗାଡ଼ିଦେ ତା ମୃତ ଗାତ୍ରକୁ ପ୍ରୋତ୍‌ଥିତ କରି ତୋଷ ରଘୁନା
ବିମାନେ ସମ୍ମାନେ ସୁମନେ ସୁମନେ ନେଲେ ରୂପାନ୍ତର ମାନ
ଶରଭଙ୍ଗ ଆଶ୍ରମ, ପାଶେ ତୋଷେ ପ୍ରବେଶ ଶ୍ରୀରାମ ।୨୦।
ସୂର୍ଯ୍ୟସମ ତେଜ ଦେଖି ବୀର୍ଯ୍ୟବନ୍ତ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ
ରାମ ସନ୍ଦର୍ଶନେ ପ୍ରୀତ ହୋଇ ମୁନି ମନସ୍କାମ ପୂରିଲେ
ଦେହ କରି ଦହନ, ବ୍ରହ୍ମଲୋକକୁ ଗଲେ ବହନ ।୨୧।
ଅନ୍ୟ ମୁନିମାନେ ଧନ୍ୟବାଦ ଦେଇ ସ୍ୱ ଦୁଃଖ କଲେ ବଖାଣ।
ରକ୍ଷଙ୍କ ଭକ୍ଷଣୁ ରକ୍ଷଣ କରନ୍ତୁ ଅହେ କମଳ-ଈକ୍ଷଣ ।
ତ୍ରାହି କର ଆପଣ, ନାହିଁ କେହି ଅନ୍ୟନ ଶରଣ ।୨୨।
ଶାପ ଦିଅନ୍ତୁ ତପ ବିଫଳ ହୋଇବ ପାପ ହୋଇବ ଅମାପ,
ସତ୍ୟ ସତ୍ୟ ସୀତାକାନ୍ତଙ୍କ କଥିତ ହରିବ ତବ ସନ୍ତାପ
ବଧି ଯାତୁଧାନଙ୍କୁ, ନିରାପଦ କରିବି ବନକୁ ।୨୩।
ଦୀନ ନୋହି ସେହି ଦିନକ ସେଠାରେ ସୁଖେ କରି ଅବସ୍ଥାନ
ମେଲାଣି ମାଗି ଅନ୍ୟସ୍ଥାନେ ଗମନ କଲେ ଶ୍ରୀ ରଘୁନନ୍ଦନ
ଉପଦେଶ ବଚନ, ପଥେ ନାଥେ ମୈଥିଳୀ କଥନ ।୨୪।
ଭବ ଧବ ଜୀବବଧରେ କେବଳ ପାପ ହେବ ତ ବର୍ଦ୍ଧନ ।
ସତ୍ୟ ପାଳନ କାଳରେ ଏ ଦୁଷ୍କୃତ କୃତରେ କି ପ୍ରୟୋଜନ
ଦାଶରଥି ଭାଷିତ, ଦୁଷ୍ଟଦାନେ୫ ମୁଁ ନୁହେଁ ଦୋଷୀ ତ ।୨୫।

---

(୧) କାଳ—ଯମ (୨) ଅସୁର—ରାକ୍ଷସ (୩) ଅସୁର—ରାକ୍ଷସ
(୪) ଶତହ୍ରଦା—ବିରାଧର ମା (୫) ଦାନ—ଛେଦନ

ପଞ୍ଚାପ୍ସର୧ ସରଗାରେ ରଘୁବୀର ପ୍ରବେଶ କରନ୍ତେ ତହିଁ
ଗୀତ ବାଦ୍ୟ-ଧ୍ୱନି ଶ୍ରବଣରେ ଜନ ପ୍ରାଣୀ ଅଚମ୍ଭିତ ହୋଇ
ଭୃତପୂର୍ବ ଯେତକି, ପଚାରିଲେ ଶୁଣାଯାଏ ଏ କି ।୨୬।
ଋଷି ଭାଷିଲେ ମାଣ୍ଡକର୍ଣ୍ଣି ନାମରେ ଛନ୍ତି ଏକ ତପୋଧନ
ସହସ୍ର ବରଷ ତପ କଲେ ସେହି ଶ୍ୱସନ୨ କରି ଅଶନ୩ ।
ଭୀତ ହୋଇ ବାସବ, ଅପ୍ସରୀଙ୍କୁ ପଠାଇଲେ ଜବ ।୨୭।
ଯେତଙ୍କ ଅଗ୍ରତେ ନୃତ୍ୟ ଗୀତ ନିତ କରନ୍ତି ସରଭିତରେ
ଆଉ କେହି ତହିଁ ଯାଇପାରେ ନାହିଁ ପଥର ବର୍ଷେ ପଥରେ
ତୁମ୍ଭେ ବସ୍ତୁ ସାକ୍ଷାତ । ତେଣୁ ନ ହେଲା କିଛି ଉତ୍ପାତ ।୨୮।
ଫଲ୍‌ଗୁତଟେ ରଘୁନାଥ ଉପସ୍ଥିତ ତାତଙ୍କ ମୃତାହିତଥି
ଗୋଧାକନ୍ୟା୪ ରେଣୁ୫ ଗୋଳେ ପିଣ୍ଡ ଦେଲେ ଗୋଳକୁ ଉଚ୍ଛାଇ ତଥି
ନଦୀ କେତକୀ ଗୋରୁ, ଶିଖାବାନ ସାକ୍ଷୀ ରଖି ଗୁରୁ ।୨୯।
ପୁଚ୍ଛନ୍ତେ ରାଘବ ସ୍ୱଚ୍ଛ ନ କହିଲେ ମିଛ ହେଲା ସୀତାକଥା ।
କୋପକରି ଅଭିଶାପ ଦେଲେ ରୂପବତୀ ପାଇ ଅତି ବ୍ୟଥା ।
ବାକ୍-ଶୂନ୍ୟ ସରିତ, ଗୋରୁବକ୍ତ୍ର ହେଉ ଅପବିତ୍ର ।୩୦।
ଶର୍ବ ୬ ଅଭୋଗ୍ୟ ହେବ କେତକୀ ସର୍ବଭକ୍ଷ ହୋଇବ ପାବକ
ପିଣ୍ଡଦେବାକାଳେ କୋଦଣ୍ଡଧାରଣ ତୁଣ୍ଡ ଶୁଭିଲା ଦେବଙ୍କ
ସୀତା ହସ୍ତରୁ ପିତା, ପିଣ୍ଡ ନେଲେ ତ୍ୟାଗ କରି ଚିନ୍ତା ।୩୧।
ଗୟାକୁ ପ୍ରୟାଣ କଲେ ଦୟାନିଧି ଜାୟା ଭ୍ରାତା ସହିତ
ଶ୍ରାଦ୍ଧ ଦେଲେ ଶ୍ରାଦ୍ଧଦେବ ୭ ଦଣ୍ଡୁ ପିତୃକୁଳ ତରିବା ନିମିତ୍ତ
ଅର୍ଥପାଇଁ ଅନର୍ଥ, କଲେ ଦ୍ୱିଜାତି ଏଗାଳି ପଥ ।୩୨।
ବିଟ ୮ ଖଣ୍ଡ ଅଟ ବିଟପୀ-୯କି ଖଟ ପେଟରେ କପଟ କୂଟ ।
କଟକେ ନ ରହି ଜଟ ପଛ ବହି ଅଟବୀ ୧୦କରିଛ କୂଟ
ବଟୁ୧୧ ଗଣଙ୍କ ବଟ ୧୨ । ନ ଘୁଞ୍ଚିବୁ ନୁହ ଛଟପଟ ।୩୩।

(୧) ପଞ୍ଚାପ୍ସର—ଦଣ୍ଡକାରଣ୍ୟସ୍ଥ ସରବିଶେଷ
(୨) ଶ୍ୱସନ—ବାୟୁ (୩) ଅଶନ—ଭୋଜନ
(୪) ଗୋଧାକନ୍ୟା—ସୀତା (୫) ରେଣୁ—ବାଲି (୬) ଶର୍ବ—ଶିବ
(୭) ଶ୍ରାଦ୍ଧଦେବ—ଯମ (୮) ବିଟ—ଲମ୍ପଟ, ଉପପତି
(୯) ବିଟପୀ—ବ୍ୟଭିଚାରିଣୀ, ବେଶ୍ୟା (୧୦) ଅଟବୀ—ବନ
(୧୧) ବଟୁ—ବ୍ରାହ୍ମଣ ପିଲା (୧୨) ବଟ—ଠକ ଦେବା

ସୀତାଙ୍କ ପଣନ୍ତ ରାମଙ୍କ ଗଣନ୍ତ ଝାଣନ୍ତ ବ୍ରାହ୍ମଣଗଣ
କୃପଣେ ଲକ୍ଷ୍ମଣ କାଟିଲେ ତୀକ୍ଷ୍ଣ ଗୁଣେ ବହାଇ ମାର୍ଗଣ
ମାର୍ଗଣ ଓଗାଳିଲେ, ବିପ୍ରଚୟ ଭୟେ ନିବର୍ତ୍ତିଲେ ।୩୪।
ଦ୍ୱିଜ ନୋହିଥିଲେ ପ୍ରେତରାଜ ଆଜ ଭଜନ୍ତ କହିଲେ ଅଜଂ
ଜୀବ ଥିବାଯାଏ ଏ ତୀର୍ଥରେ, ମୋର ନ ପଡ଼ିବ ପାଦରଜ
କ୍ରୋଧେ ହୋଇ ଜର୍ଜର, ଧନୁହୁଳେ କାଟିଲେ ନିର୍ଗାର ।୩୫।
ଲକ୍ଷେ ଅରଜିଲେ ପକ୍ଷେ ନ ଅଣ୍ଟିବ ଦୁଃଖେ ଯାଉ ତୁମ୍ଭ ଦିନ
ଗଣ୍ଡାକ ନିମିତ୍ତ ଗୃହ୍ଣାଳଙ୍କୁ ହାତ ପତାଇବ ନୋହୁ ଆନ
କନ୍ୟା କର ବିକ୍ରୟ, ଅନ୍ୟାୟରେ ଧନ କର ଆୟ ।୩୬।
ଜୀବନ ବର୍ଜନ କଲ୍ଲ ଜନ ଏଥି ପୁନର୍ଜନ୍ମେ ହେବ ଖର ୨
କ୍ରୋଧରେ ବିରାଧ-ବଧକାରୀ ଏହା କହି ବାହୁଡ଼ିଲେ ତର
କାଶୀକ୍ଷେତ୍ରେ ପ୍ରବେଶି, ଶଶୀ-ଶ୍ରିରଙ୍କୁ ପୂଜାରେ ତୋଷି ।୩୭।
ଭାସ୍କରବଂଶଜ ଭାସ୍କର ତୀର୍ଥରେ ରାମଚନ୍ଦ୍ରଙ୍କୁ ପୂଜିଲେ
ଶତ୍ରୋପୂଳାତୀରେ ଶ୍ରୀ ବାଲ୍ମୀକେଶ୍ୱର ମହାଦେବଙ୍କୁ ସ୍ଥାପିଲେ
ମିଳି ଏକାମ୍ରବନ, ବିନ୍ଦୁସରୋବରେ କଲେ ସ୍ନାନ ।୩୮।
ଦୃଷ୍ଟେ ଉତ୍ତମ ଶ୍ରୀପୁରୁଷୋତ୍ତମକ୍ଷେତ୍ରେ ମହୋଦଧି ତୀରେ
ନାରୀ ସଙ୍ଗ ଧରି ସ୍ନାନ ତର୍ପଣାଦି ସାରିଲେ ସାଗରନୀରେ
ଗଲେ ଦକ୍ଷିଣ ମୁଖେ, ପ୍ରବେଶିଲେ ଋଷିକୁଲ୍ୟା ପାଖେ ।୩୯।
ନଦୀତୀରେ ତୀରେ ପଶ୍ଚିମ ଦିଗକୁ ଗତି କଲେ ଅତି ଖରେ
ଜୁମ୍ବେଶ୍ୱର ଲିଙ୍ଗ ସ୍ଥାପି ଅଙ୍ଗୁରୀୟ ଚିହ୍ନ ରଖିଲେ ତହିଁରେ
ଭଣେ ଗୋକୁଳାନନ୍ଦ, ଭାବି ରାଧାମାଧବ ଶ୍ରୀପଦ ।୪୦।

———

(୧) ଅଜ—ଅଜବଂଶୀୟ(ରାମଚନ୍ଦ୍ର) (୨) ଖର—ଗଧ

## ସପ୍ତଦଶ ଛାନ୍ଦ

### ରାଗ—ବଙ୍ଗଳା-ଶ୍ରୀ

ପ୍ରତାପୀ ଅତାପୀ-ବାତାପୀ-ସୂଦନଂ ତପୀଙ୍କ ଆଶ୍ରମେ ରାମ
ଉପସ୍ଥିତ ହୋଇ ତପୋଧନଙ୍କର ଶ୍ରୀପଦେ କଲେ ପ୍ରଣାମ ।୧।
ଦେଖିଲେ ଯତିଙ୍କ ତପପ୍ରଭାବରେ ଶତ୍ରୁ ବୈର ବହୁଦୂରତ
ସରଭ୍ ୨ କରଭ ୩ ସିଂହୀଠୁଁ ସ୍ତନ୍ୟ ପାନ କରନ୍ତି ନିରତ ।୨।
ଅତପ-ତାପ-ତାପିତ ବ୍ୟାଳ ୪ ଶିଖୀ୫-ଜଳ କୋଳେ କରେ ଖେଳ
ତାହା ଉପକୂଳେ ୬ ଏକତ୍ର ବସିଛନ୍ତି ବ୍ୟାଘ୍ର ସଙ୍ଗେ ମୃଗମେଳ ।୩।
ନିବାର-କଣିକା ଶୁକ ପିକ ମୁଖେ ଦାନ କରେ ଶଶାଦନ ୭
ଇନ୍ଦୁର ୮ ଉପରେ ଭୁଜଙ୍ଗମ ଭୋଗ୯ କରୁଅଛି ଆଚ୍ଛାଦନ ।୪।
କରବୀର କଅ କେତକୀ କାମିନୀ କୁରୁବକ ମୁଚକୁନ୍ଦ
କମଳ କୁମୁଦ କହ୍ଲାର କଦମ୍ବ କାଞ୍ଚନ କୈରବ କୁନ୍ଦ ।୫।
କେଶିନୀ କେଶର କତକ କାରବୀ କୁରୁଣ୍ଟକ କିଶଳୟ
କନକ-ଚମ୍ପା ଚାଠଚମ୍ପା କିଂଶୁକ କର୍ଣ୍ଣିକାର କୁବଳୟ ।୬।
ସୂର୍ଯ୍ୟମୁଖୀ ସୁଗନ୍ଧରାଜ ଶିରସ ଶିମୂଳ ସଦାବିହାରୀ
ମାଧବୀ ମାଳତୀ ମରୁବକ ଶତବର୍ଣ୍ଣ ମନ୍ଦାର ସୁନାରୀ ।୭।
ତଗର ତରୁଟ ଜାତି ଯୂଥୀ ଅଁଳା ନିଅଳ ଗଙ୍ଗଶିଉଳ
ଚମ୍ପକ ଅଶୋକ ବକୁଳ ପାଟଳି ଅପରାଜିତା ବନ୍ଧୂଲି ।୮।
ଗୟୁସ ଗୋଲପ ରଙ୍ଗବାଣ ଲୁଣୀଅନା ରଙ୍ଗ କରବୀର
ରଙ୍ଗଣୀ ରଜନୀଗନ୍ଧା ଗିରିମଲ୍ଲୀ ମଲ୍ଲିକା ନାଗକେଶର ।୯।
ଷଣ ସୋମ କାଶ ଲୋଧ୍ର ଶିବଜଟା କେଳିକଦମ୍ବ ସେବତୀ
ବ୍ରଜମଲ୍ଲୀ ଗୋଡ଼ିବାଣ ପାଇକରା ଗୁଲ୍ମ ଜୁଲଙ୍ଗ ଅଗସ୍ତି ।୧୦।

---

(୧) ଅତାପୀ-ବାତାପୀସୂଦନ—ଅଗସ୍ତି
(୨) ସରଭ—ଉଷ୍ଟ୍ର ବା ମୃଗବିଶେଷ (୩) କରଭ—ହସ୍ତୀଶାବକ
(୪) ବ୍ୟାଳ—ସର୍ପ (୫) ଶିଖୀ—ମୟୂର
(୬) ଉପକୂଳ—ପେରୁ (୭) ଶଶାଦନ—ଛଞ୍ଚାଣ
(୮) ଇନ୍ଦୁର—ମୂଷା (୯) ଭୋଗ—ଫଣା

କପିତ୍ଥ କଇଁଥ କଦଳୀ କମଳା ଲେମ୍ବୁ ନାରଙ୍ଗ କର୍କନ୍ଧୁ[୧]
ଅମ୍ରାତକ[୨] ଅମଳକୀ କରମଙ୍ଗା ବିଜୌରକୀ ଜାମୁ କେନ୍ଦୁ । ୧୧ ।
ମଧୂଷ୍ଠୀଳ ଯାଷ୍ଟିମଧୁ ମଧୂରସ ନାଗରଙ୍ଗ ବଢ଼ିଅଳ
କରଞ୍ଜ[୩]ତନ୍ତୁକ ଗୁବାକ ରସାଳ ଜମ୍ବୀର ପିଲୁଳି ତାଳ । ୧୨ ।
ଅତାପି ଅଙ୍କୋଟ[୪] ଖର୍ଜୁର ତାପସ ବ୍ୟାଘ୍ରପାଦ ନାରିକେଳ
ହରିତକୀ ଉଦୁମ୍ବର ଶତାବରୀ ପଣସ କେଉଟ ବେଲ । ୧୩ ।
ଫଳପୁଷ୍ପ ସଦା ଯୋଗାନ୍ତି ପାଦପଜାବହ ଦେବ ଉଦ୍ଦେଶ୍ୟ
ଅଗସ୍ତି ପ୍ରମୁଖ ଯତି ଅତି ସୁଖେ ଥାନ୍ତି ସେ ବନପ୍ରଦେଶେ ।୧୪।
ତପୋଧନଙ୍କର ତପୋବନ ଦେଖି ଆନନ୍ଦ ଜାନକୀବର
ମନେ ମନେ ବହୁ ପ୍ରଶଂସା କଲେ ସେ ମହିମା କୁମ୍ଭଜ[୫]ଙ୍କର ।୧୫।
ବାରଧିବାର ଶୋଷଣକାରୀ ମହାତେଜସ୍ବୀ ଘଟ-ନନ୍ଦନ
କୃପାଣ[୬] ମାର୍ଗଣ[୭] ତୂଣୀର[୮] ଧନ୍ବାଦ ଶ୍ରୀରାମଙ୍କୁ କଲେ ଦାନ ।୧୬।
ମୁନିଙ୍କ ଆଦେଶେ ପଞ୍ଚବଟି ଦେଶେ ବାହାରଲେ ତହୁଁ ଜବ
ବର୍ତ୍ମରେ ବୃହତ ଶକୁନ୍ତ[୯] ଦର୍ଶନେ ବିସ୍ମିତ ହେଲେ ରାଘବ ।୧୭।
ଦୈତ୍ୟ ରୂପାନ୍ତର ଚିତ୍ତରେ ପ୍ରତୀତ ହେବାରୁ ପୂଚ୍ଛିଲେ ତାକୁ
କନକ ଜନନୀ କି ଏସେ କହ ତା କିପାଁ ଆସିଛ ଏଠାକୁ ।୧୮।
ଖଗ କହେ ଖଗରାଜ-ଅଗ୍ରଜ[୧୦]ଙ୍କ ଔରସେ ଶନି ଉଦରୁ
ଜାତ ମୁହିଁ ତୁମ୍ଭ ତାତ ଦଶରଥ ମୋ ମିତ ଥିଲେ ପୂର୍ବରୁ ।୧୯।
ସମ୍ପାତି ଜ୍ୟେଷ୍ଠ ସହୋଦର ଅଟନ୍ତି ଜଟାୟୁ ମୋହର ନାମ
ପିତୃମିତ୍ର ଜାଣି ପିତୃବତ୍ ମଣି ଶୁଣି ପ୍ରଣମିଲେ ରାମ ।୨୦।
ପକ୍ଷୀ କହେ ମୋତେ ରଖିଥାଅ ପାଖେ ଦେଖିବ ମୋ ଉପକାର
କାହିଁ ଗଲେ ତୁମ୍ଭେ ମୋ ଉପରେ ଥିବ ସୀତାଙ୍କ ରକ୍ଷଣଭାର ।୨୧।

---

(୧) କର୍କନ୍ଧୁ—ବରକୋଳି (୨) ଅମ୍ରାତକ—ଅମ୍ବଡ଼ା
(୩) କରଞ୍ଜ—ଦାଳିମ୍ବ (୪) ଅଙ୍କୋଟ—ଅଙ୍କୁ
(୫) କୁମ୍ଭଜ—ଅଗସ୍ତି (୬) କୃପାଣ—ଖଡ଼୍ଗ
(୭) ମାର୍ଗଣ—ଶର (୮) ତୂଣୀର—ଶରଧାର (ଶରରଖିବା ମୁଣା)
(୯) ଶକୁନ୍ତ—ଗୃଧ୍ର, ପକ୍ଷୀ (୧୦) ଖଗରାଜଅଗ୍ରଜ—ଗରୁଡଙ୍କ ବଡଭାଇ (ଅରୁଣ)

ପଥ ପ୍ରଦର୍ଶକ ହେଲେ ବିହଙ୍ଗମ ପ୍ରବେଶ ପଞ୍ଚବଟୀରେ
ଜଟାୟୁ ବିଟପୀ-କୋଟରେ ରହିଲେ ଏ ତିନି ଜଣ କୁଟୀରେ ।୨୨।
ସିଂହ କନ୍ୟାଗତ ହୁଅନ୍ତେ ସିଂହିକାନନ୍ଦନ-ରୂପ ହେମନ୍ତ
ଶରତ ସୁନ୍ଦରୀ ସୁଷମା ଶୁଭ୍ରାଂଶୁ ଗ୍ରାସ କଲେ କ୍ରମାଗତ ।୨୩।
ନିଶାରେ ତୁଷାରେ ପତିତ ହସାରେ ଅଶାଂ୧ରେ ଘୋଟି କୁହେଳି
ସାରସ୨ବଂଶକୁ ଧ୍ୱଂସ କରିଦେଲେ କାସାରେ୩ ବିରତ କେଳି ।୨୪।
କୂପ-ଦ୍ୱୀପବତୀ ଅପ୪ବାମ୍ପ ହୋଇ ଉପରକୁ ଗଲେ ଉଠି ।
ଉତ୍ତର ମରୁତ ନରଙ୍କ ଗୃହୁଡା ଅନ୍ବେଷଣରେ କଲେ ଲୁଟି ।୨୫।
ଚିତ୍ରଭାନୁ୫ଭାନୁ୬ଭାନୁକୁ୭ମନୁଜମାନେ କଲେ ଅତ୍ୟାଦର ।
ଭବନେ ଭବନେ ପବନକୁ କଲେ ସବୁଠାରେ ଅନାଦର ।୨୬।
ଅନ୍ଧ ଅମ୍ବରରେ ଦୀନଜନପର ଦିନ କ୍ଷୀଣତା ପାଇଲେ ।
ଶର୍ବରୀ ଅଧିକ ହୋଇ ନିଦ୍ରାଦେବୀ ଗର୍ବ ଖର୍ବ କରିଦେଲେ ।୨୭।
ମକରକାନ୍ତିକି ଗତି କଲେ ଅତି ମନ୍ଦେ ପଦ୍ମପତି ରବି ।
ବିଷୁବ ଉତ୍ତର ଅନନ୍ତ ବହିଲେ ବିଧବା ମସ୍ତକ ଛବି ।୨୮।
ତାମ୍ବୂଳ ତଇଳ ତୂଳା ତନ୍ତ ତପ୍ତ ପନୀରେ୮ ହେଲେ ଅଗ୍ରହ ।
ନବ ଶସ୍ୟ ଦେଖି ମାନବେ ସାନନ୍ଦେ ତାହାକୁ କଲେ ସଂଗ୍ରହ ।୨୯।
ନିଶାପେ ଅଦର୍ଶ୯ସଦୃଶ ସୁଧାଂଶୁ ଦେଖାଗଲେ ଜ୍ୟୋତିହୀନ ।
ଶୀତ ଭୀତି ଦେଲେ ଧନହୀନ ଜନମାନଙ୍କୁ ଦିନକୁ ଦିନ ।୩୦।
ବନବାସ ବାରବର୍ଷ ଗତ ହେଲେ ହେମନ୍ତ ଶିଶିର ଶେଷ ।
ରତୁ-ନରବର ବସନ୍ତ ସମ୍ଭବେ ଧରାରେ କଲେ ପ୍ରବେଶ ।୩୧।
ବଦତି ଗୋକୁଳାନନ୍ଦ ଅଭିଧାନ କୃପା କର ସାଧୁଜନ ।
ମଧୁସୂଦନଙ୍କ ପାଦପଦ୍ମେ ମଧୁସୂଦନ୧୦ହେଉ ମୋ ମନ ।୩୨।

---

(୧) ଅଶା—ଦିଗ (୨) ସାରସ—ପଦ୍ମ (୩) କାସାର—ସରୋବର ଜଳାଶୟ
(୪) ଅପ—ଜଳ (୫) ଚିତ୍ରଭାନୁ—ଅଗ୍ନି (୬) ଭାନୁ—ସୂର୍ଯ୍ୟ
(୭) ଭାନୁ—କିରଣ, ତେଜ
(୮) ପନୀର—ଜଳ (୯) ଅଦର୍ଶ—ଦର୍ପଣ (୧୦) ମଧୁସୂଦନ—ଭ୍ରମର

## ଅଷ୍ଟାଦଶ ଛାନ୍ଦ

ରାଗ—ମୁଖବରି ବାଣୀ ।

ଏ ଉତ୍ତରୁ ଶୁଣ ଧୀରେ    ଦିନେ ଗୋଦାବରୀତୀରେ
ସୂର୍ପଣଖା ବୁଲୁଥିଲା    ନେତ୍ରେ ଦେଖିଲା ହେ ।୧।
ପାଦଚିହ୍ନ ମାନବର    ଅନୁସରି ଗଲା ତର
କୁଟୀରପାଖେ ରହିଲା    ଲୁଚି ଗୃହିଲା ଯେ ।୨।
ସୁନ୍ଦର ପୁରୁଷ ଦେଖି    କୁନ୍ଦରଦନାକୁ ଘେନି
ବିଳସନ୍ତି ଦଣ୍ଡକରେ    କୋଦଣ୍ଡ କରେ ହେ ।୩।
ଶିରୋମଣି ନର-ଦ୍ୱୟ    ସୁ-ରମଣୀ ଏ ନିଶ୍ଚୟ
ପୁରି ମଣି ଖଷିଛି    ଅରଣ୍ୟେ ସ୍ଥିତି ଯେ ।୪।
ମାରି ଖାଇବି ବୁହିଙ୍କି    ନାରୀକି ଦେବି ଝାଇକି
ଭାରି ସୁଖରେ ରହିବି    ଭାରିଯା ହେବି ଯେ ।୫।
ପାଞ୍ଚି ଚିତ୍ତରେ ଏ ରୂପ    ମୁଞ୍ଚି ଆପଣା ସ୍ୱରୂପ
ବିଶ ବରଷର ବେଶ    କୁଞ୍ଚିତ କେଶ ତା ।୬।
ଦର୍ପଣ ପରି ବଦନ    ଦର୍ପ ହରିବ ମଦନ
ଦରଶନ କଲେ ତାକୁ    ଦରହାସକୁ ଯେ ।୭।
କୁଚ କକୁଚ ସଦୃଶ    ଉଚ୍ଚ ସୁସ୍ପର୍ଶ ସୁଦୃଶ୍ୟ
କାଞ୍ଚନ ବେଷ୍ଟିତ ଦେହ    କାଞ୍ଚନଦେହୀ ଯେ ।୮।
ନୂପୁର ଶୋଭିତ ପାଦେ    ନିପୁର ଚମକେ ନାଦେ
ନିପୁରର ଦେଖିକର    ହୋଇବେ ଘାରି ଯେ ।୯।
ରମ୍ଭା ଜଘନା ଯୁବତୀ    ରମ୍ଭାପରି ଶୋଭାବତୀ
କେଶପଶକ୍ତ ହେବେ ଯତି    ଶୋଭାଙ୍ଗୀ ପ୍ରତି ଯେ ।୧୦।
ଯତନେ ପିନ୍ଧିଲା ଶାଢ଼ୀ    ରତନବେଣୀ ସଜାଡ଼ି
ପିନ୍ଧିଛି, ବାନ୍ଧିଛି ଖୋସା    ବନ୍ଧୁଛି ଭୂଷା କି ।୧୧।
କାମରୂପିଣୀ ହରଷେ    କାମନା ପୂରିବା ଆଶେ
କି ମନୋଜ୍ଞ ରୂପ ହେଲା    କାମରେ ଗଲା ଯେ ।୧୨।

ବଙ୍ଗେଷାଭାଷ

ରାମ ରଘୁନାଥ ପାଶେ    ଭାଷେ କହେ କାମରସେ
ଶୂର ହେ ବରହେ ମଲି    ଶରଣ ଗଲି ମୁଁ ।୧୩।

ବରପତି ହୋଇ ମୋର ମାର ସ୍ମର ଦର ଭର
ସୁବର୍ଣ୍ଣ କାଞ୍ଚନ ହେମ ପୁଷ୍ପଙ୍କ ସମ ଯେ ।୧୪।
ବିଧୁରେ ଚନ୍ଦ୍ରରେ ଶଶ ଅଶା ନିରାଶା ସଦୃଶ
ନ କର କର ବିହାର ନାଗର-ବର ହେ ।୧୫।
କୋପନା ରମଣୀ ପ୍ରତି ଜୀବନ ଯିବ ସମ୍ପ୍ରତି
ଦେବ ସୁରତରେ ମଙ୍କ ବିଲମ୍ବ ତେଜ ହେ ।୧୬।
ଅ-ସୁରୀ୧ ମୁହିଁ ଅଟଇ ମୁଁ ତ ଅସୁରୀ୨ ନୁହଇ
ତୁମ୍ଭେ ତ ନୁହ ଦଇତ୩ ହୁଅ ଦଇତ୪ ହେ ।୧୭।
ଭ୍ରାତା ମୋର ଦଶଗ୍ରୀବ ପ୍ରତାପରେ ବଶ ଶିବ
ଯମ ତା'ର ଘୋଡ଼ାଘାସୀ କ୍ଷମତା-ନାଶୀ ଯେ ।୧୮।
ଋଷି-କୁମାର୫ ଅଟଇ ଋଷିଙ୍କୁ ମାରି ପାରଇ
ରୁଷି କୁମାର ବସିବେ ବଳେ ହଟିବେ ଯେ ।୧୯।
କର୍ବୁର୬ ପୁରରେ ବାସ କର୍ବୁର୭ ବିଶେଷ ବଶ
ଘଟଶ୍ରୁତି ସହୋଦର ଘଟଭୂଧର ତା । ୨୦ ।
ବିଭୀଷଣ ସାନଭାଇ ବିଭୀଷଣ ନାମ ବହି ।
ପୁଣ୍ୟଜନ ନୁହଇ ସେ ପୁଣ୍ୟ ଜନ ସେ । ୨୧ ।
ରାଜୀବନେତ୍ର କଥିତ ରାଜ ନୁହେ ମୋର ଚିତ୍ତ ।
ଭଜିବ ମୋ ସାନଭାଇ ତେଜିବ ନାହିଁ ସେ । ୨୨ ।
ଭାବିନୀ ନାହିଁ ସଙ୍ଗରେ ଭାବ ନିଶାଚରୀ ଖରେ ।
ସୁମିତ୍ରା-ସୁତଙ୍କ ପାଶେ ସୁମିତ୍ରେ ଭାଷେ ସେ । ୨୩ ।
ପତି ତ ହେବେ ଅପଣ ପତିତ ନ ହେବେ ଜାଣ । ;
ଗତି ମୋ ହଂସ ସମାନ ଗତି ପ୍ରଦାନ ହେ । ୨୪ ।
(ଲକ୍ଷ୍ମଣ) ପାଶରେ ନ ରହ ତୁହି ପାଶରେ ନ ପଡ଼େ ମୁହିଁ ।
ଦାସଠାରେ କର ଅଶ ଯଶ ନ ନାଶ ଯେ । ୨୫ ।

---

(୧) ଅ-ସୁରୀ—ଦେବୀଭିନ୍ନ (ମାନବୀ), (୨) ଅସୁରୀ—ରାକ୍ଷସୀ
(୩) ଦଇତ—ରାକ୍ଷସ, (୪) ଦୟିତ—ସ୍ୱାମୀ, (୫) କୁମାର—କାର୍ତ୍ତିକ,
(୬) କର୍ବୁର—ସ୍ୱର୍ଣ୍ଣ(୭) କର୍ବୁର—ରାକ୍ଷସ ।
୧୫ ପଦର ଭାବ—ଶଶ ତୃଷାର୍ତ୍ତ ହୋଇ ଚନ୍ଦ୍ରଙ୍କୁ ବିଧୁ (ଜଳ) ମନେ କରି
ନିରାଶ ହେଲା ପରି ମୋତେ ନିରାଶ କର ନାହିଁ । ପୌରାଣୀଙ୍କ ବାର୍ତ୍ତା ।

ବିଭବ ସିତକୁ ଧରି ବିଭବସିରଙ୍କ ଫେରି ।
ଶୀତାଂଶୁକୁ ସିନ୍ଧୁ ସମ ସାଂତାରେ ତମ ଯେ । ୨୬ ।
ବିଭି ହୋଇଛନ୍ତି ଯାହାକୁ ବିଭାଗ କରି ତାହାକୁ ।
ବିଭୋଜନ କଲେ ଧରି ବିଭେଲେ ହେବ ସେ । ୨୭ ।
ଶ୍ଳେଷେ ଭ୍ରଷେ ରିଦ୍ଧୁବୀର କ୍ଳେଶ ଦାନ ଶୀଘ୍ର କରି ।
ସଉମିତ୍ରି ପ୍ରତି ଲକ୍ଷ ରଖି ପଦ୍ମାକ୍ଷ ଯେ । ୨୮ ।
ବିରତ ହୁଅ ତପୃର ବିବେକ ହତ ନ କରି ।
ନାକ ସୁଖ ସ୍ଥିର ହେଉ କାନ ନ ଥାଉ ଯେ । ୨୯ ।
ଅନନ ହଲ୍ଲ ବାଲି ଅନନ୍ଦରେ ଗଲ୍ପ ଚଳି ।
ଅନ ନ ହେବ ଏଥିରି ଅନ ଭ୍ରାତାର ଯେ ।
କଳ୍କୁ ଧରି ଲକ୍ଷ୍ମଣ କଟନ୍ତେ ଭୁରେ ତକ୍ଷଣ ।
ରସିକା ବିଗୃହେ ଶତ୍ରେ ରସିଲେ ମୋତେ ଏ । ୩୧ ।
କୃପା ଶଙ୍କରେ ନ କରି କୃପାଣ ହାତରେ ଧରି ।
ନକ ୧ ବେଳ ବର୍ଣ୍ଣେନ୍ଦ୍ର୍ୟ କରିଲେ ବ୍ୟସ୍ତ ହେ । ୩୨ ।
ବିଶ୍ରବଣ-ନାସା ହେଲା ବିଶ୍ରବା'କୁମାରୀ ଗଲା ।
ସ୍ୱରୂପତ ନ ବିଗୃହ ସ୍ୱରୂପ ଧରି ସେ । ୩୩ ।
ଖର ୨ ଗତରେ ଗମିଲା ଖର ୩ ଅଗରେ କହିଲା ।
ସ୍ୱନାମେ ୪ ପ୍ରଦାନ କରି ଅସେ ଲେଖାର ୫ ଯେ । ୩୪ ।

---

୨୯ଶ ପଦାର୍ଥ—ସୌମିତ୍ରି ବୋଧାର୍ଥ ତୁ ତୋର ବିବେକ ହତ କର ନାହିଁ । ଏହା ସଙ୍ଗରୁ ବିରତ ଅର୍ଥାତ୍ ଉହିତ ହୁଅ । ଏ ନାକଦ୍ୱାରା ଯେଉଁ ସୁଖ ଅନୁଭବ କରୁଅଛ ସେ ସ୍ଥିର ହେଉ, ଅର୍ଥାତ୍ ନାକ ଚ୍ୟୁତ ହେଉ କାନ ନ ଥାଉ ।

ସୂର୍ପଣଖା ବୋଧାର୍ଥ-ବିବେକ ହତ ନ କରି କ ଅର୍ଥାତ୍ ବିବେକ—ବିଗୃହ (ଏହାର ଅଭିଳାଷ) ହତ କର ନାହିଁ । ବିରତ-ବି-ବିଶେଷଭାବେ ରତ (ଉତ୍କଣ୍ଠାରେ) ତତ୍ପର ହୁଅ । ନାକ ଯେ ସ୍ୱର୍ଗସୁଖ ସ୍ଥିର ହେଉ । କାନନ କ ଅରଣ୍ୟରେ ଥାଉ ।

(୧) ନ କ—ନାକ କାନ (୨) ଖର—ଶୀଘ୍ର (୩) ଖର—ଖରନାମା ରାକ୍ଷସ (୪) ସ୍ୱନାମ—ଖରର ପୂର୍ବରେ ସ୍ୱ ଦେଲେ ସ୍ୱଖର (ବେଗରେ) (୫) ଲେଖାର—ରାକ୍ଷସ ।

ଚଳଦ ସହସ୍ର ବଳ ଚଳଦଗୁଁ ହେଲେ ତୂଳ ।
ଚଳବର୍ଗ-ଦାତାଗତ ଚଳର ବଳ ହେ ।୩୫।
ଖ-ଦ୍ୟୋତ୧ ଅଗେ ଖ-ଦ୍ୟୋତ୨ ଦୀପ୍ତି କି ହୁଏ ଦୀପିତ ।
ଶଶଧର ପାଶେ ତାର ଦଶେ କି ତାର୩ ହେ ।୩୬।
ବୀଣ୪ଅଗେ ବିଷଧର ସମ ସାନ ଥରହର ।
ଖର କାମ ରାମ ରାମ ପଞ୍ଚାସ୍ୟ ସମ ଯେ ।୩୭।
ଦୂଷଣ ନିଶିର ଶିର ଭୂଷଣ ହେଲା ମହୀର ।
ଦୂଷଣ ଗଲା ମୁନିଙ୍କ ହେଲେ ନିର୍ଭିକ ହେ ।୩୮।
ଅଦିତ୍ୟ ବସି ସ୍ୱର୍ଗରେ ଅଦିତ୍ୟବଂଶିଙ୍କ ପରେ ।
ବାଦନ କର ବାଦନ ବର୍ଷେ ସୁମନ ଯେ ।୩୯।
ଫେରବ ୫ ଭୈରବ ରବେ ଫେର ଭଷିଲେ ସେ ଶବେ ।
ବନୁ ଦନୁଜ ଉତ୍ପାତ ହେଲା ନିପାତ ଯେ ।୪୦।
ସୁମର ଶ୍ରୀରାମ ପାଦ ବିବରେ ଗୋକୁଳାନନ୍ଦ ।
କରୁଣା-ବରୁଣାଳୟ ଦିଅ ଅଶ୍ରୟ ହେ ।୪୧।

---

## ଊନବିଂଶ ଛାନ୍ଦ

### ରାଗ-ନଅପୋଇ ବୃତ୍ତ

ସୂର୍ପଣଖା ଖର ଦୂଷଣ ନିଶିର ଶିର-ଛେଦ ପରେ ଗଲା ଖର
ରୁଧିର ନିଧାର ଲୋତକ ଦ୍ୱିଧାର ବହୁଛି ନିଶ୍ୱାସ ବହେ ଝର ।୧।

---

(୧-୨) ଖଦ୍ୟୋତ—ସୂର୍ଯ୍ୟ, ଜ୍ୟୋତିରିଙ୍ଗଣ (ଜୁଳୁଜୁଳା ପୋକ) (୩) ତାର—ଉଜ୍ଜ୍ୱଳ (୪)ବୀଣ—ଗରୁଡ଼ (୫) ଫେରବ—ଶୃଗାଳ ।

୩୭ ଶ ପଦାର୍ଥ—ଖର ଯେ ଖରାଦ ଅସୁରମାନେ କାମ ଯେ କନ୍ଦର୍ପ, ରାମ ଯେ ମୃଗତୁଲ୍ୟ ହେଲେ । ରାମଚନ୍ଦ୍ର ପଞ୍ଚାସ୍ୟ ଯେ ସିଂହ ବା ଶିବପରି ହେଲେ । ସିଂହ ଯେପରି ମୃଗକୁ ବଧ କରେ ଏବଂ ଶିବ ଯେପରି କନ୍ଦର୍ପକୁ ଦହନ କରିଥିଲେ ସେହିପରି ରାମ ଖରାଦିକୁ ବଧ କଲେ ।

ନୀକଷାନନ୍ଦନ ବିକୃତ-ବଦନ ପୂନଷ୍ଟ କନ୍ଦନ ଭଗିନୀର
ଅଣ୍ଡଜେ ବିଲୋକ ପଗୃରଲ କଲେ । କିଏ ଅଛୁ କେବେ ଏଡ଼େ ବୀର।୨।
ଦେବ ମୋ ସେବକ ଶେଷନ ମୁଁ ସେ ବକ ମୁହିଁ ତ ପାବକ ସେହ୍ନ ଅଜୟ୧
ତୁ ତ ପରଶତ ବଳନ୍ତା କି ଶତ୍ରୁ ବଳ ଅନୁଶତ ଏହ୍ନ କାର୍ଯ୍ୟ । ୩ ।
ଯହିଁ ଅଛୁ ବଳ ତହିଁ ଏଡ଼େ ବଳୀ ମୋତେ ଅଛ ବଳ କିଏ ଅଛୁ
ଭୁଜଗ୨ ମୁଖରେ ଆପଣା ସୁଖରେ ସ୍ୱକର ପ୍ରଖରେ ଦେଖାଉଛୁ । ୪ ।
ସାଗରଜଳରେ ସ୍ୱବାହୁ-ବଳରେ ସନ୍ତର କୂଳରେ ଲଗିବାର
ଭରସା ସଞ୍ଚାର କଲ କୁସଗୃର ଦେଖିଲି ବିଗୃର ନାହିଁ ତା'ର । ୫ ।
ବ୍ୟାଧିକି ଭେଷଜ ଅଗ୍ନିବେ କ୍ଳେଶଙ୍କ କି ଅବା ଅସଜ ହେତୁ ଅତପ
କରିଛୁ ଛେଦନ କଷ୍ଟ ଉତ୍ପାଦନ ହେବାରୁ ବ୍ରେଦନ କରୁ କୋପେ । ୬ ।
ବଦତ ଭଟିନୀ ମୁଁ ତ ଅଭ୍ୱଟିନୀ ହେଲି ସୁହାଗିନୀ ହୋଇ ତୋର
ମୋ ନାସା ହରଣ ଖର୍ବ୍ବଦ ମରଣ ନର ଭୁଲ ରଣ କର ଘୋର । ୭ ।
ଶୁଣି ବୈଶ୍ରବଣ ଛୁରିଲି ଶ୍ରବଣ ବଡ଼ ବିଡ଼ମ୍ବଣ କଥା କହୁ
ଯାହାଙ୍କ ଦାନବ ଭକ୍ଷନ୍ତି ମାନବ କେବେ ଅଭିନବ କଲେ ସେହୁ । ୮ ।
ବିଶ୍ୱ ଗ୍ରୃରଦଶ୩ ସମସ୍ତ ନିଡଶ୪ ହାରିପିବେ ଦଶରଥଙ୍କର
ସୁନ୍ଦର ତନୁଜ ଅଲକ୍ଷ୍ୟ ମନୁଜ ଅଗ୍ରଜ ଅନୁଜ ସହୋଦର । ୯ ।
ସଜମିନି ଗ୍ରମ ନେନ ଅଭିଗ୍ରମ ବଧ କର ଗ୍ରମ ଛନ୍ତି ବନ ।
ସେ ପଞ୍ଚବଟୀରେ ଅଛନ୍ତି କୁଟୀରେ ବଲ୍‌କଲ କଟିରେ ପରଧାନ । ୧୦ ।
ଜଟା ମସ୍ତକରେ ଧନୁଶର କରେ ଥିଲେ ସେ ନ କରେ ଭୟ କିଛୁ
ଗ୍ରଗେ କଲେ ଲୟ ଜଗତ ପ୍ରଳୟ କରିବ ବିଲୟ ମୁଁ ଜାଣିଛୁ । ୧୧ ।
ସଙ୍ଗେ ପ୍ରିୟବତୀ ବଡ଼ ଶୋଭାବତୀ ଅଟଇ ସେ ବତୀଶଲକ୍ଷଣା
ନାରୀ ତା ଲକ୍ଷ୍ୟରେ ନ ଥିବେ ଲକ୍ଷରେ ସେ ତ ପ୍ରତ୍ୟକ୍ଷରେ ବିଚକ୍ଷଣା ॥
ମଝ ତା କେଶରୀ ତାହାଙ୍କୁ କେ ସରି ରମ୍ଭା ଅପସରୀ ନୁହେ ସର୫
ଯୁବତୀରତନ ଶୋଭାନିକେତନ ବିଶେଷ ଯତନ ତା ମାଧୁରୀ । ୧୩ ।
ସେ ରମଣୀ-ମଣିଗଣଶିରୋମଣି ଯେପରି ଦ୍ୟୁମଣି୬ ଗ୍ରହଗଣେ
ତୋର ଯେତେ ରାଣୀ ତାର ଗୃକରାଣୀ ପର ଠାକୁରାଣୀ ସେ ମୁଁ ଗଣେ ।୧୪।
ବିଶେଷ ସୁନ୍ଦରୀ ବୋଲି ମନ୍ଦୋଦରୀ ଥିଲି ମୁଁ ଅଦର ଅନ୍ତର୍ଗତ
ସେବକାପଣକୁ ତା ଦରପଣକୁ ନୁହେ ଅପଣଙ୍କ କହେ ସତ । ୧୫ ।

---

(୧) ଅଜୟ—ଘୃତ (୨) ଭୁଜଗ—ସର୍ପ (୩) ଗୃରଦଶ—ଚଉଦ
(୪) ନିଦଶ—ଦେବତା (୫) ସର—ସମାନ, ତୁଲ୍ୟ (୬) ଦ୍ୟୁମଣି—ସୂର୍ଯ୍ୟ ।

ତା'ର ଗମନରେ ହାସ ବଚନରେ କଥିତ ସ୍ତନରେ ମନ୍ଦପଦ୍ (୧)
ଗଣି କଟୀରେ ବହୁ କପଟରେ ତୋନାସ୍ତି ପେଟରେ ଦେଲ ମନ୍ଦ । ୧୬ ।
ଧନ୍ୟ ସେ ବଧିକ ଧନ୍ୟ ତା ବୁଦ୍ଧିକ ସେ ବସନିଧିକ ନିମିଷିଲ
ତୋପର ନୃପତ ନ ହେଲ ତା ପତ ବିପୁଲସମ୍ପତ୍ତି ବୃଥା ହେଲ ।୧୭।
ଯେମନ୍ତ ତ୍ରିଭୁବନ-କାରଣ ବିଧାନ କରିଥିଲା ସ୍ଥାନ ହୁଏ ଭବେ
ତେମନ୍ତ ତୋହର ଏ ଗୃହ କୁହର(୨) ସଦ୍ଗୁଣ ମୋହର ଶତ୍ରେ ଭାବେ ।୧୮।
ମାର ମୁଁ ନାହାକୁ ତୋପାଇଁ ତାହାକୁ ଅଣନ୍ତ ଏହା ମୁଁ ପାଞ୍ଚ ମନେ
ଗମନ୍ତେ ପାଖକୁ ଦେଲ ଏ ଦୁଃଖକୁ ବିକୃତମୁଖକୁ କଲ ଘନେ ।୧୯।
ଭଗିନୀରଭନ ଗୃହ୍ଣୁଣି ବଚନ ସେ ବଂଶଲୋଚନ ଶୁଣି କହେ
ସେ କାଞ୍ଚନଦେହୀ କିଷ୍ଟୟ ବୈଦେହୀ ହେବାର ସନ୍ଦେହୀ କଥା ନୁହେ ।
ବୋଲେ ଭଜଣୀକି ପ୍ରବୋଧବାଣୀକି ସେ ନାସ୍ତିମଣିକି ମୁଁ ଆଣିବି
ନିଜ ଅବାସକୁ କପଟ ବେଶକୁ ସଜି ତା ପାଶକୁ ଅଜ ଯିବି ।୨୧।
କରକୁ ବାହାର ପକାଇ ବାହାର ଲକ୍ଷ୍ମୀଙ୍କୁ ଜୁହାର କର କ୍ରୋଧେ
ବସୁଁ ସ୍ୟନ୍ଦନରେ ମ୍ଳାନବଦନରେ ଭୂଷା-ଚନ୍ଦନରେ ଗ୍ରଣୀ ବୋଧେ ।୨୨।
ବୈଦେହୀହରଣ ରାବଣମରଣ ଏହା କି ସ୍ମରଣ ନୁହେ ଧବ
କହେ ମୁଁ ଏତକି ସେ ନାସ୍ତି କତକି ଯାଇଁ ବିପତ୍ତିକି ଅରଜିବ ।୨୩।
ପରଯୁବତୀକି ହର ଅନୀତକି କର ସମ୍ପତ୍ତିକି ବୁଡ଼ାଇବ
ନାଶି ସୁଖ୍ୟାତକି ଅପକୀରତିକି ଜନଙ୍କ ଶ୍ରୁତିକି ଅଣାଇବ ।୨୪।
ଜନନୀ ସମାନ ପରନାସ୍ତିମାନ ହରିଲେ ସମ୍ମାନ ନଷ୍ଟ ହେବ
ଅତି ଅଭୂଷଣ ବଂଶକୁ ଦୂଷଣ ଅନ୍ତକ କଷଣ ଅନ୍ତେ ଦେବ ।୨୫।
ବୋଲେ ଦୈତ୍ୟକୁଳଈଶ ଅନୁକୂଳକାଳେ ପ୍ରତିକୂଳ ହେବା ତୋର
ନୁହଇ ଉଚିତ ଏଥିରୁ ବଞ୍ଚିତ ନ ହେବ କଞ୍ଚିତ ଶିକ୍ଷ ମୋର ।୨୬।
ଅହଲ୍ୟା ହରିଲ ଶକ୍ର କି ମରିଲ ତା'ର କି ସରିଲ ବଂଶପଣ
ସେ ବୃନ୍ଦାବତୀକି ହର ଅଗତିକି ପାଇ ଶ୍ରୀପତି କି ଗଲା ନାଶ ।୨୭।
ଧାତା ଅବେଶ୍ୱରେ ସୁଧର୍ମା ସଭରେ ହର କାମଭରେ ଜବଂଶୀକି
ହେଲ କି ପତିତ ହେଉଛି ପ୍ରତୀତ ବ୍ରହ୍ମା ତା ବ୍ୟତୀତ କେ ହେଲ କି ।୨୮।

---

(୧) ମନ୍ଦ—ଅଳସ,ମୃଦୁ, ଅକୁଟ ଓ ସ୍ଥାନ (ଅଳସଗମନା, ମୃଦୁହାସୀ, ଅକୁଟସ୍ତନା) (୨) କୁହର—ଗର୍ତ୍ତ, ଗହର ।

ହର ତା ମାତାଙ୍କ ହରନ୍ତି ଯେ ତାଙ୍କ ନାଶି ପ୍ରଭୁତାକୁ ଦେଲେ କ୍ଳେଶ
ବିପକ୍ଷୁ ଅହୀର ଭୁଜଙ୍ଗମହୀର କରନ୍ତି ତାହାର ହେଲା କିସ ? ।୨୯।
ଅନନ୍ଦ ମନରେ ଦେବ-ବିମାନରେ ବସି ଗଗନରେ ଗଲେ ଖରେ
ଗୋକୁଳାନନ୍ଦର ସଂଦେଶ ପଦର ଏଛନ୍ଦ ସୁନ୍ଦର ବୃଙ୍ଗ ଧୀରେ ।୩୦।

---

## ବଂଶୀ ଛାନ୍ଦ

### ରାଗ କଜ୍ଜଳିକ

ଶତମନ୍ୟୁଜିତ ୧ ତାତ ରଥ ପରେ ଖ ପଥରେ ଗଲା
ଭ୍ରମି ଭ୍ରମି ଗମି ମାରୀଚ ସମୀପେ ଅମିୟ ଗିର ଭାଷିଲା
ରେ ବୀର ।
କହୁଁ ଅଛୁ ଅକୂପାର୨ ତୀର । ନିରନ୍ତର ନେତ୍ରୁ ବହେ ନୀର ।୧।
(ମାରୀଚ) ପିପ୍ପଳ ପାଦପସ୍ୱରୂପ ବିପିନ ବନ୍ଧୁବର୍ଗ ବହୁତ୍ୱ
ରାମ-ଦନ୍ତାବଳଦ୍ୱାରା ଦଳ ଦଳ ଗଲେ ମୋ ହୋଇଛନ୍ତି ଭୂକ୍ତ
ତା ଭୟ ।
ବାତଯୋଗେ ସନ୍ତତ ଅଥୟ । ଖଣ ଖଣକେ ପ୍ରାଣ ସଂଶୟ ।୨।
ଅସୁ ଅସୁ ପଥେ ମୋର ପ୍ରସୂତା୩କୁ ମହାପଶୁ୪ପରି କଲା
ସୁବାହୁ ସୁବାହୁ ଶୀଘ୍ର ସେ ରାହୁପରି ଗ୍ରାସି ନାଶି ଦେଲା
ସେ ରାମ ।
ଅଟେ ଅସୁରବଂଶର ଯମ । ତା'ର ଅଲୌକିକ ପରାକ୍ରମ ।୩।
କହଇ ରାବଣ ନାସିକା ଶ୍ରବଣ ଛେଦିଲା ମୋ ଭଗିନୀର
ପଞ୍ଚୋପନଦୀ ସେବିତ ସିନ୍ଧୁବତ ଉତ୍ତମାଙ୍ଗୁ ପଞ୍ଚଧାର
ସେ ବହି ।
କୃଷ୍ଣ -ଅକୂପାରେ ଭେଟି ହୋଇ । ଶୋକ-ଲହରୀ ତହୁଁ ଉଠଇ ।୪।
ସେ ବିପଦାର୍ଣ୍ଣବେ ମଗ୍ନ ମୁଁ ହୋଇଛନ୍ତି ତୋ ବାହା-ସାହାଯ୍ୟ-ନାବେ
ତର କୂଳେ ଲଗି କୁଳ-ଅଙ୍ଗମାନେ ଉଦ୍ଧାରିବାପାଇଁ ଭାବେ
ରେ ବାବୁ ।
ମୁଁ ମୃତକ ତୁ ଜୀମୂତ ହେବୁ । ମୋତେ କରୁଣା-ସଲିଳ ଦେବୁ ।୫।

---

(୧) ଶତମନ୍ୟୁଜିତ—ଇନ୍ଦ୍ରଜିତ (୨) ଅକୂପାର—ସମୁଦ୍ର (୩) ପ୍ରସୂତା—ଜନନୀ (ତାଡ଼କା) (୪) ମହାପଶୁ—ମହିଷ

ହିରଣ୍ୟ-ହରଣ ହୋଇ ତୁ ହରଣ ନେବୁ ସହୋଦର ବେନି
ମୁନିବେଶେ ତ୍ରିକର ତା ବନ୍ଧାତାମଣିଙ୍କି ଅଣିବ ଘେନି
ସେ ନାସ୍ତି ।
ଯୋଗେ ବିପିନେ ମରିବ ଝୁରି । କନ୍ଦ୍ରଶଳରେ ସାଧିବା ଅରି ।୬।
(ମାରୀଚ) ବାତାୟୁଃ ହେଲେ ମୁଁ ଗତାୟୁ ହୋଇବି ବିତାଙ୍କୁ ମନ୍ଦକଥା
କିଛୁଦିନ ଜୀବ ରହିଥାନ୍ତା ଯିବ ଧ୍ରୁବ ନ ହେବ ଅନ୍ୟଥା
ରେ ବାଇ ।
ସ୍ୱଇଚ୍ଛାରେ କେ ଗରଳ ଖାଇ । ମରଣ ସରଣୀକି ଲୋଡ଼ଇ ।୭।
ରି ଅଦ୍ୟ ଶବଦ ଶ୍ରବଣେ ସ୍ତବଧ ହୁଅଇ ମୋହର ଚିତ୍ତ
ବିଶ୍ୱମରେ ରାମ ଥିବାରୁ ବିଶ୍ରାମ ନ କରଇ କଦାଚିତ
ସେ ମୃଗ ।
ମୃଗାଙ୍କରେ ନାହିଁ ଅନୁରାଗ । ଯେଣୁ ରାମଚନ୍ଦ୍ର ଅଛି ଯୋଗ ।୮।
ବନିତା ଉପବନ ଥିବାରୁ ଜନପଦେ ନ କରେ ଗମନ
ଅପଘନ ଘନ ଘନ କମ୍ପମାନ ଅବଚ୍ଛିନ୍ନ ଛନ ମନ
ତା କଥା ।
କହିଲ କେତୁ ସନ୍ଧୁଛି ମଥା । କନା ଅଘାତେ ଜନ୍ମିଛି ବ୍ୟଥା ।୯।
ତା ଅଶୁଗ(୨) ଅଶୁ(୩) ଅସୁରଙ୍କ ଅସୁ(୪) ଅକ୍ଳେଶରେ ଦେବ ଉଡ଼ି
ଥିଲେ ପ୍ରାଣ ଅଗ ସ୍ୱବଂଶ ନ ନାଶ ବାସେ ଥାଅ ତୋଷେ ପଡ଼ି
ରେ ମୂଢ଼ ।
ଖାଇ ନ ଲୋଡ଼ ବୋଚକଗୁଡ଼ । ଧର୍ମେ ନ ହୁଡ଼ ବେଗେ ବାହୁଡ଼ ।୧୦।
ନିକଷା-ନନ୍ଦନ କର୍କଶ ବଚନ ଶୁଣି କମ୍ପାଇ ଅନନ
କରେ ବାଳ ଧରି କରବାଳ ଧରି ହାଣିବାକୁ କଲା ମନ
ତୁ ସାନ ।
ହୋଇ ମୋତେ ବୁଝାଉଛୁ ଜ୍ଞାନ । ହତ କରିବି କେ କରୁ ଆନ ।୧୧।
ଚିନ୍ତିତ ମାରୀଚ ଗତି ତ ନ ହେବ ପତିତ ହାତରେ ମଲେ
ଭକତ ବ୍ୟତୀତ ମୁକତି ଲଭିବି ଦାଶରଥି ନାଶ କଲେ
ସେ ବୀର ।
ବୋଲେ ଶୁଣ ଶୁଣ ଦଶଶିର । ଘାତପାଳିବି ତୋହର ଗିର ।୧୨।

(୧) ବାତାୟୁ—ମୃଗ (୨) ଅଶୁଗ—ଶର (୩) ଅଶୁ—ଶୀଘ୍ର (୪) ଅସୁ—ପ୍ରାଣ

କରିଲ ମୃଗ ତୁ ମରିଲେ ମୋତେ ହରିଲୁ ତୋ ବିଭବ
ମୃଧାତ୍ୱର୍ଥ ପ୍ରେରଣାର୍ଥେ ହୋଇ ବିନିମୟ ତୋର ମୋର ହେବ[୧]
ସେ ବୀର ।
ଶୀଘ୍ର ବହନ୍ତି ମୃଗ-ଶରୀର । ବଂଶଦୃଶ ହରଷେ ଅଧୀର ।୧୩।

ସୁବର୍ଣ୍ଣ ସୁବର୍ଣ୍ଣ ତ୍ୱଗୁପରେ[୨] ବିନ୍ଦୁ ବିନ୍ଦୁ ରଜତ ରଞ୍ଜିତ
କର୍ଣ୍ଣ ବର୍ଣ୍ଣ ଇନ୍ଦ୍ରନୀଳମଣି ଜଣି ଶୃଙ୍ଗ ମାଣିକ୍ୟେ ନିର୍ମିତ
ତା ପୁଚ୍ଛ ।
ଶଙ୍ଖରୂପ ବର୍ଣ୍ଣ କରେ ତୁଚ୍ଛ । ବଇଦୂର୍ଯ୍ୟ କ୍ଷୁରକୁ ନିକୁଞ୍ଚ ।୧୪।

ସୁନ୍ଦ-ନନ୍ଦନକୁ[୩] ସନ୍ଦ୍ୟନ ଉପରେ ବସାଇ ଦଶବଦନ
ଉଦ୍ବେଗ ହୃଦୟେ ଖଗସମ ବେଗେ ଗଗନେ କଲା ଗମନ
ସେ ଖରେ ।
ରଥ ରଖି ବଜେ ମହୀପରେ । ମାରୀଚକୁ ଛାଡ଼ିଦେଲା ଖରେ ।୧୫।

ରକ୍ଷବଂଶନକ୍ଷତ୍ରେଶ ବୃକ୍ଷ ଅନ୍ତରାଳେ ହୋଇଲା ଗୁପତ
ହୀହୁ ଗୃହୁ ରୁରୁ[୪] ଚରି ଚରି ଦୁହୁ କୁଟୀର ପାଶେ ମିଳିତ
ସେ ମାୟା ।
କରି ସୁନ୍ଦର କରିଲ କାୟା । ଯେତେକେ ବଶ ହେବେ ରାମଜାୟା ।୧୬।

କ୍ଷଣପ୍ରଭାସମ ଏଣ[୫] ଏଣେ ତେଣେ ବଣେ କରେ ବିଚରଣ
କ୍ଷଣେ ଦିଶେ କ୍ଷଣେ ନ ଦିଶେ କ୍ଷଣକେ ମିଳେ ବୈଦେହୀ ପ୍ରାଙ୍ଗଣ
ସେ ସତୀ ।
ଦେଖି ଶ୍ରଦ୍ଧା ବଳାଇଲେ ଅତି । ପତିଙ୍କି ଡାକିଲେ ନିକଟତ ।୧୭।

ତୁରଙ୍ଗ ସମ ଏ ସୁରଙ୍ଗ କୁରଙ୍ଗ କି ରଙ୍ଗେ କରେ ବିହାର
ଚାହିଁ ନାହା ଅହା କି ସୁନ୍ଦର ଦିଶେ ଏହା ପ୍ରତି ସ୍ପୃହା ମୋର
ହେ ଦେବ ।
ଧର କିମ୍ବା ମାର ଅଣି ଦେବ । ଉଭୟଥା ଉପକାର ହେବ ।୧୮।

---

(୧) ମୃ-ଧାତୁର ଅର୍ଥ—ମରିବା, ପ୍ରେରଣାର୍ଥ—ମାରିବା (ମାରୀଚ ରାବଣକୁ କହୁଛି ତୁ ମୋତେ ମାରିଲ ପରେ ମରିବୁ) (୨) ତ୍ୱଗୁପରେ—ଚର୍ମପରେ (୩) ସୁନ୍ଦନନ୍ଦନ—ମାରୀଚ (୪) ରୁରୁ—ମୃଗ (୫) ଏଣ—ମୃଗ

ଲକ୍ଷ୍ମଣ ଭାଷଣ ଏ ମାୟାବୀ ଏଣ ଅସୁର, ପଶୁ ନୁହଇ
ତାଡ଼କାକୁମର ମାରୀଚ ପାମର ରମ୍ୟ-ହେମସାର[1] ହୋଇ
ସେ ଦୂରେ ।
ନେଇ ନରେଶମାନଙ୍କ ମାରେ । ମତ ନ ବଳାଅ ଏହାଠାରେ ।୧୯।
ବଦନ୍ତି ଶ୍ରୀରାମ ଅସୁର ବା ରାମ ହେଉ ମାରିବି ନିଶ୍ଚୟ
ସୀତାଙ୍କ ରକ୍ଷଣ-ଭାର ତୁମ୍ଭଠାରେ ରହିଲା ନ କର ଭୟ
ସେ ବୀର ।
ବାହାରିଲେ ଧରି ଧନୁ ତୀର । ମୃଗ ପଳାଇଲା ତହୁଁ ଦୂର ।୨୦।
ଖର-ଅରି ତାକୁ ଧରିବା ଉଦ୍ଦେଶ୍ୟେ ନ ମାରି ଗୋଡ଼ାଇ ଗଲେ
ମନୋରଥ ପୂର୍ଣ୍ଣ ନ ହେବାରୁ ତୂର୍ଣ୍ଣ[2] ତୂଣୀରୁ ଶର କାଢ଼ିଲେ
ସେ ବାଜୀ ।
ଅନ୍ତଶରେ ମୃଗଦେହେ ବାଜି । ଦେଲା ଜୀବନ-ପାଦପ ଭାଙ୍ଗି ।୨୧।
ମୃତ୍ୟୁକାଳେ ଯାତୁଧାନ-ଈଶ[3] କଥା ହେତୁକର ସୁନାସ୍ୱର
ନାହି ଲକ୍ଷ୍ମଣ ଜାନକୀ ଡାକ ଦେଲା ଶ୍ରବଣେ ସୀତା ଅଧୈର୍ଯ୍ୟ
ସେ ସତୀ ।
ଦେବରଙ୍କୁ ବୋଇଲେ ଭାଷନ୍ତି । ମୋ ପତିଙ୍କୁ ପଡ଼ିଲା ବିପତ୍ତି ।୨୨।
ସୌମିତ୍ରି କଥିତ ନ ହୁଅ ବ୍ୟଥିତ ହ୍ରାସୁ[4] ନାମ କର ସାର୍ଥ
ନୁହନ୍ତି ଅ-ଶୂର ସୁର କି ଅସୁର ରଣେ କରିବେ ପରାସ୍ତ
ଗୋ ସତୀ ।
ନର କଳରେ ଅଜେୟ ପତି । କମ୍ପା ଶୁଣୁଛ ତାଙ୍କ ଦୁର୍ଗତି ।୨୩।
ବଣା ଏଣୀକ୍ଷଣା କହୁଲେ ତ ଜଣା ଗଲା ଲକ୍ଷ୍ମଣ ତୋ ମନ
ଭ୍ରାତୃତା ବରଜି ଶତ୍ରୁତା ସରଜି ବନେ କରିଛୁ ଗମନ
ରେ ବୀର ।
କପଟରେ ଆଇଲି ମସାଇ । ମୋତେ ଭରତଙ୍କୁ ଦେବୁ ନେଇ ।୨୪।
ଯହନେ ବହନ ଦହନେ ଦହନ ଦେହକୁ କରିବି ବାରେ
ନ ମାଣ୍ଡ ମନାରେ ତୋ ସାମନାରେ ଏ କାମନାରେ ସାମନାଁରେ
ରେ ମୂର୍ଖ ।
ଲଭିଥ ହେବ ଏଥିରୁ କି ସୁଖ । ରାଜ୍ୟେ ଦେଖାଇବୁ ଏକା ମୁଖ ।୨୫।

---

(୧) ହେମସାର—ସ୍ୱର୍ଣ୍ଣମୃଗ (୨) ତୂର୍ଣ୍ଣ—ଶୀଘ୍ର, (୩) ଯାତୁଧାନ ଈଶ—ରାବଣ, (୪) ହ୍ରାସୁ—ନାଶ

ରାମାନୁଜ ରାମା ଓଜସ୍ୱିନୀ ବାଣୀ ଶୁଣିଣ ହେଲେ ଚକିତ
କହିଲେ ମହୀଜା କହି ବହିଲ ଯା ଦହିଲ ମୋହର ଚିତ୍ତ
ସେ ଗିର ।
ଶୁଣି କମ୍ପମାନ ମୋ ଶରୀର । ଧୈର୍ଯ୍ୟ ଧରି ନ ପାରି ଅସ୍ଥିର ।୨୬।
ଅଭିନ୍ନ ହୃଦୟ ସହୋଦରଦ୍ୱୟ ଥିଲେ, ବିଚାରିଲି ଭିନ୍ନ
ଶାରଦ ପୂର୍ଣ୍ଣିମା ନିଯାମା୧ରେ ଅଶା ତମ୨କରି ଅଛନ୍ନ ଦିନ
ସେ ଜାଣ ।
ପ୍ରହାରିଲି ଯେଉଁ ବାକ୍ୟବାଣ । ଶାଣଦ ଅକୃପାଣରୁ ଠାଣ ।୨୭।
ଦଣ୍ଡଦଗପାଳ ଶୈଳ ଶାଖୀ୩ ସାକ୍ଷୀ ରଖି ଚଳିଲେ ରଭସ୪
ଦୈତ୍ୟପତି ଯତି-ମୂର୍ତ୍ତି ଧରି କ୍ଷିତିପୁତ୍ରୀ କଟିରେ ପ୍ରବେଶ
ସେ ଭଣେ ।
ଭକ୍ଷ ଦିଅ ଗୋ ଗୃହୁ ଈକ୍ଷଣେ । ଅତି ବିଳମ୍ବ ନ କର କ୍ଷଣେ ।୨୮।
ମୈଥିଳୀ କଥିତ ନ ହୁଅ ବ୍ୟଥିତ ନାହାନ୍ତି ଏଥି ତ ପତି
ଅସି ଲ ଅତଥି-ସତ୍କାର କରିବେ ଉଦ୍‌ବେଗ ବିନାଶ ଯତି
ହେ କହି ।
କେଉଁଠାରେ ମଠ କରି ରହି । ଦୂର କର ହୃଦରୁ ସନ୍ଦେହ ।୨୯।
ସାଗର ମଧ୍ୟରେ ନଗର ମୋହର ସ୍ୱର୍ଗର ଉପମାଧାରୀ
ସବୁ ଭବନ ସୁବର୍ଣ୍ଣରେ ନିର୍ମିତ ଭୁବନେ ନାହିଁ ତା'ପରି
ମୁଁ ତହିଁ ।
ପୁଣ୍ୟ-ଜନାଧିପତି ଅଟଇ । ବିଭୂତି୫ ବାକ୍ୟେ ନୁହଇ କହି ।୩୦।
ଚତୁର୍ବିଂଶାଧିକ ବେନି ଶତଯୁଗ ଭୋଗ କରିବି ମୁଁ ବସି
ବେଦଜର ବର ଦେଇଛୁ ମୋହର ଟିପୁର ବିଶ୍ରବା ଋଷି
ମୋ ବଳ ।
ଦେଖି ଭୟେ ବୃନ୍ଦାରକଦଳ । ସେବା କରନ୍ତି ଚରଣତଳ ।୩୧।
ଦେବ ଗୋନପତି ସୁନାମା୬ ମୋ ପୁତ୍ର ହାତେ ହୋଇଥିଲା ବନ୍ଧା
ରାବଣ ମୋ ନାମ କୁମ୍ଭକର୍ଣ୍ଣ ସାନ ଚତୁର୍ଥ ପୁରୁଷ ବେଧା
ଗୋ ଶାନ୍ତ ।
ଏଥୁଁ ମୋ ବିଭବ ଅନୁମିତ । ସୁଖ ଭୋଗ କରୁଛୁ ମୁଁ ନିତ୍ୟ ।୩୨।

---

(୧) ନିଯାମା—ରାତି, (୨) ତମ—ଅନ୍ଧକାର, (୩) ଶାଖୀ—ବୃକ୍ଷ, (୪) ରଭସ—ଶୀଘ୍ର, (୫) ବିଭୂତି—ଐଶ୍ୱର୍ଯ୍ୟ, (୬) ସୁନାମା—ଇନ୍ଦ୍ର

ଅରେ ରସବନ୍ତ ନ ଲଭ ଦୁର୍ଗତ ବସିନେ ଉଚିଣ୍ଣ ପର
କ୍ଳେଶ ଭୋଗ କରୁ କୁଣ୍ଠିତ ଅଳ୍ପାୟୁ ମାନବର କର ଧର
ଯୋ ଅସ ।
ସୁଖେ ରହିବୁ ମୋହର ବାସ । ସଦା ସେବିଥିବ ହୋଇ ଦାସ ।୩୩।
ମୁଁ ତୋ ଯୋଗ୍ୟପତ୍ତ ଭ୍ରମେ ବେଦପଥ ଖଣ୍ଡି ଦେଇଛୁ ଅନଳୁ
ପିତୃ ମାତୃ ଭ୍ରାତୃଠାରେ ଶଙ୍କ୍ରାରେ ଅସିଅଛ ଯେ ବନକୁ
ତା ସହ ।
ଦୁଃଖ ଭୋଗ କରୁ ଅହରହ । ଏହା ତୋ ପକ୍ଷେ ଅତି ଦୁଃସହ ।୩୪।
ସଂସାରସାର ସୁନ୍ଦରୀ ମୋ ଅବାସେ ଅଛନ୍ତି ଅପରିମିତ
ସେମାନଙ୍କ ପରେ ଶିରୋମଣି ହେବୁ କଷ୍ଟ ସହୁ ଅପ୍ରମିତ
ଯୋ ମିତ ।
ଯେଉଁ ପଦାର୍ଥେ ବଳିବ ଇଚ୍ଛା । ତାହା ପାଶେ ହେବ ଉପସ୍ଥିତ ।୩୫।
ଯାତୁଧାନ ବାଣୀ ଚନ୍ଦ୍ରବଦନ କହୁସ୍ୱ ପସ୍ୱନ୍ତେ ମଣି
ଶୁଣିଲେ ପ୍ଲବଗ(୧) ହୋଇ ନାଗରାଜ ଫଣମାଙ୍କୁ ନେବୁ ମଣି
ତୁ ପଳା ।
ଅବଳାଠାରେ ମନ ନ ବଳା । ସୁପ୍ତ କଣ୍ଠୀରବକୁ ନ ଚଳା ।୩୬।
ଧବ ଆଗମନ ପୂର୍ବରୁ ବର୍ବର ସ୍ୱନବରେ ଯାଅ ଚଳି
ଏକା ଏକ ଶରେ ଦଶଶିର ଦଶ ଦିଗପାଳେ ଦେବେ ବଳି
ରେ ବଳି ।
ସେହି ବାମନ ତୁ ହେବୁ ବଳୀ । ତାଙ୍କୁ ବଳେ ନ ପାରିବୁ ବଳି ।୩୭।
ବିଭୁଙ୍କ ଘୋର ବିଭୂତି(୨) କହିବେ ଅଦ୍ଭୁତ ତାଙ୍କ ପ୍ରକୃତି
ସତ୍ୟର ମହତ୍ତ୍ୱ ରକ୍ଷଣ ନିମିତ୍ତ ତ୍ୟାଗ କଲେ ଯେ ରାଜତ୍ୱ
ତା ନାରୀ ।
ନେଲେ ତେଜ ନ ହେବ ରକ୍ଷୋକାରୀ । ପ୍ରାଣେ ପ୍ରେତ ହେବ ଅଧିକାରୀ ।୩୮
ରୋଷେ ହଂଶଦୃଶ କେଶାକର୍ଷି ଶଶୀହାସୀଙ୍କୁ ବସନ୍ତେ ରଥେ
ସ୍ୱପତିଙ୍କୁ ଚିନ୍ତି କପୋତୀ ପରାୟେ କାନ୍ଦିଲେ ଗଗନପଥେ
ତା ଦେଖି ।
ଦେବତାଏ ହେଲେ ମହାସୁଖୀ । ଦଶାନନ ମୃତ୍ୟୁଦିନ ଲେଖି ।୩୯।

---

(୧) ପ୍ଲବଗ—ବେଙ୍ଗ (୨) ବିଭୂତି—ଋଦ୍ଧି

ଅଷାଢ଼ କୃଷ୍ଣପକ୍ଷ ଶେଷ ତିଥିରେ ହରିନେଲ ବାଂଶପାଣି
ଚତୁର୍ଦ୍ଦଶମାସ ଶେଷେ ନାଶ ଯିବ ଅଙ୍ଗିରସ ଭଣି ଗଣି
ସେ ସୁରେ ।
ଉତ୍ସବରେ ରତ ସ୍ୱର୍ଗପୁରେ । ଗୋପନରେ ଦେଖୁଛନ୍ତି ଦୂରେ । ୪୧ ।
ଗଜଡ଼ର ଖୁଣ୍ଟ ଧୋଇ ହୋଇଗଲେ ମୋଷଘର ବାସ୍ତୁଘର(୧)
ଡା'ର ହାଲ୍‌ହୁଲ, ଡା'ର ହୁଲହୁଲ ନିୟମ ଏ ଜଗତର
ଏ ପ୍ରଥା ।
ସୁରପୁରେ ନ ହୁଏ ଅନ୍ୟଥା । ଯଥା ମାନବେ ସର୍ବତ୍ର ତଥା । ୪୧ ।
ଜଟିଳରେ ସୀତା ଚନ୍ଦ୍ର ବିରହିତା ପଣ୍ଡିକ୍ସ କହିଲେ ସ୍ୱର
ଦିବଦେବରଙ୍କ ଦେବ ଏ ଖବର ଶ୍ରବଣ ନେଲେ ଶ୍ରେସ୍ୱର
ସେ ଯିବେ ।
ସ୍ୱାନ୍ତ ନ ରଖିବେ ଅଜ ଜୀବେ । ବଂଶ ନାଶି ମୋତେ ଉଦ୍ଧାରିବେ । ୪୨
ଅରୁଣସୁତ କରୁଣ ସ୍ୱର ଶୁଣି ଦାରୁଣ ଆଘାତ ଦେଲା
ଦଶମଥା ବ୍ୟଥା ପାଇ କଥା କହି ନ ପାରି ଅଚେତା ହେଲା
ସେ ଏହି—
ତାଳେ ପଳାଇ ଗଲେ ବୈଦେହୀ । ଲତାନ୍ତରାଳେ ଗୁପତେ ରହି । ୪୩ ।
ଚଞ୍ଚଳା(୨) ଚଞ୍ଚଳା ନ ହୋଇ ଅଚଳା ଚଞ୍ଚଳା ଶୋଭାରେ ରହି
ଖଗରାଜ ଭୟେ ନାଗୁଣୀ କି ଅବା ସ୍ଥାବର ଭାବକୁ ବହି
ସେ ଲମ୍ବ ।
ହୋଇ ଅବସ୍ଥିତ ଡେଙ୍ଗ ଦମ୍ଭ । ଜମ୍ବା ସ୍ୱଜାତ ପାଦପସ୍ତମ୍ଭ । ୪୪ ।
ଫୁଲମାଳ ଫୁଲମାଳ ଅବା ଶାଳ ଡାଳୁ ତଳକୁ ଲମ୍ବିତ
ପାଦପେ ସଂଲଗ୍ନ ହୋଇ କିବା ଜାତରୂପ(୩) ପ୍ରତିମାବସ୍ଥିତ
ସେ ଶାନ୍ତ ।
କିମ୍ବା ଶୀତଭାନୁ-କରବ୍ରାତ । ସ୍ୱର୍ଣ୍ଣଦୀ(୪) ଜଳରେ ପ୍ରପତିତ । ୪୫ ।
ଗୁପ୍ତେ ପ୍ରତିଷ୍ଠିତ ହେଲେହେଁ ଜେଉଁକା ନ ପଡ଼ିଲ କି ସେ ଜଣା
ଯୋଜନଗନ୍ଧା ନାମକୁ ବହି ଏହି କପରି ହୋଇବେ ବଣା

(୧) ଗଜଡ଼ର···ଗୋମହିଷାଦି ମୃତ୍ୟୁରେ ଗଜଡ଼ର ସର୍ବନାଶ ହୁଏ; କିନ୍ତୁ ଗୋମହିଷାଦି ଚର୍ମରେ ମୋଚିମାନଙ୍କର ଜୀବିକା ବଢ଼େ ।

(୨) ଚଞ୍ଚଳା—ଲକ୍ଷ୍ମୀ, ବିଦ୍ୟୁତ୍, ଚଞ୍ଚଳ (୩)ଜାତରୂପ—ସ୍ୱର୍ଣ୍ଣ (୪) ସ୍ୱର୍ଣ୍ଣଦୀ—ଗଙ୍ଗା

ସେ ଧୀର ।

ଅନ୍ଧକାରେ ନ ପଡ଼େ କି ଧର । ସେହିପରି ହେଲେ ନାହିଁ ଧୀର । ୪୬ ।

ଶୁଣି ପାଇ ଦଶାନନ ଜାନକୀଙ୍କ ବନ୍ଧୁ କଲ ଅନୁମାନ
କରବାଳଂ(୧) ଧରି ଗରଜନ କଲ ରକ୍ତାକ୍ତ କରି ନୟନ

ତା ଗୃହି ।

ଖଗବର ବେଗଭର ଧାଇଁ । ଘନେ ଶତାଙ୍ଗେ ପ୍ରବିଷ୍ଟ ହୋଇ । ୪୭ ।

ତୀକ୍ଷ୍ଣ ନଖ ବଂଶଅକ୍ଷ-ବକ୍ଷ-ମୁଖସ୍ଥଳେ ଲକ୍ଷ କରି ମାରେ
ଖଣ୍ଡାରେ ଅଣ୍ଡଜ-ଚଞ୍ଚୁଣୀ ଛିଣ୍ଡାଇଲ ଚଣ୍ଡାଳ ଘୋର ପ୍ରହାରେ

ସେ ସୀତା ।

ବର ଦେଲେ ହୋଇଣ ବ୍ୟଥିତା । ଭର୍ତ୍ତାଙ୍କୁ(୨) ବାଞ୍ଛିଦେବୁ ବାର୍ତ୍ତା । ୪୮ ।

ପବନ ସମାନ ଅନନ୍ତେ ଗମନ ଜାନକୀବାହକ ଯାନ
ଋଷ୍ୟମୂକ ପରେ ସ୍ୱଦେହୁଁ ବିଦେହ-କନ୍ୟା କାଢ଼ି ଭୂଷାମାନ

ସେ ବାସେ ।

ବାନ୍ଧି ଫିଙ୍ଗିଲେ କପିଙ୍କ ପାଶେ । କାନ୍ତ ସମ୍ବାଦ ପାଇବା ଆଶେ । ୪୯ ।

ଦେଖିଲେ ବାନର ଊର୍ଦ୍ଧ୍ୱେ ସମୀରର ବିହାୟସପଥେ ରଥେ
ଗମେ କାଦମ୍ବିନୀକୋଳେ କ୍ଷଣପ୍ରଭା ଶୋଭା ଯଥା ତଥା ବ୍ୟସ୍ତେ

ସେ ଜଳ ।

ଲୋଚନରୁ ପଡ଼ୁଅଛି ତଳ । ଯଥା ପତିତ କର୍କନ୍ଧୁ(୩) ଫଳ । ୫୦ ।

ଦକ୍ଷିଣେ ଚଳିବା ଦେଖି ବଳୀମୁଖ ରଖିଲେ ଭୂଷଣମାନ
ଅକୂପାର ପାରହୋଇ ସ୍ୱର୍ଣ୍ଣପୁର-ମଧ୍ୟେ ପ୍ରବେଶ ବିମାନ ।

ସେ ଲଙ୍କା

ବାସୀ ଦେଖି ହୋଇଲେ ତାଟଙ୍କା । କେହୁ କେହୁ କଲେ ମହାଶଙ୍କା । ୫୧ ।

ଅଶୋକ ଅଚ୍ୟୁତ(୪) ଯୁକ୍ତେ ଅଶୋକରେ ରହିଲେ ଅଚ୍ୟୁତନାରୀ
ହରିଣୀକି ହରି ପରି କ୍ଷଣଦାଚରୀ(୫) ଗୃହପାଶେ-ଘେରି

ସେ ଜଗି ।

ରହିଲେ ହୋଇଣ ଇଙ୍ଗାଳଗି । ସୀତା ଭୀତା ଦେଖି ତାଙ୍କ ଭଙ୍ଗୀ । ୫୨ ।

---

(୧) କରବାଳ—ଖଡ୍ଗ, (୨) ଭର୍ତ୍ତା—ସ୍ୱାମୀ (୩) କର୍କନ୍ଧୁ—ବର-କୋଳି, (୪) ଅଶୋକରୁ ଆଚ୍ୟୁତ ଓ ଲୋପ କଲେ ହେବ ଶୋକ (୫) କ୍ଷଣଦାଚରୀ—ରାକ୍ଷସୀ

ଦବାଇବାପାଇଁ ବୋବାଇ କହୁଲେ ଗୈରିବାଇବା ହାଡ଼ଗୋଡ଼
ତର୍ଜ୍ଜନ ଗର୍ଜ୍ଜନ ସର୍ଜ୍ଜନ କରନ୍ତି ଲମ୍ଭାଇ ଲମ୍ଭାଇ ଥୋଡ଼
ସେ ଦନ୍ତ ।
କୃତାନ୍ତଠାରୁ ଭୀଷଣ ଅତ୍ୟନ୍ତ । ଭଣି ପାରିବେ ଅନ୍ତକ-ଅନ୍ତ । ୫୩ ।

ବେଧାଦେଶେ ସୁଧା ନେଇ ବୃଦ୍ଧଶ୍ରବା୧ ବସୁଧାସୁତାଙ୍କ ପାଶେ
ପ୍ରବେଶି ପ୍ରତ୍ୟୟ ଜନ୍ମାଇ ପ୍ରଦାନ କଲେ କ୍ଷୁଧାନାଶ ଅଶେ
ସେ ବଦେ ।
ବନ୍ଦନ କରି ସୀତା ଶ୍ରୀପଦେ । ଅମ୍ବ ହୃତ ଭ୍ରମର ବପଦେ । ୫୪ ।

ଦେବତାଙ୍କ ମାତା ପିତା ତୁମ୍ଭେ କାନ୍ତା କାନ୍ତ ବେନି ସବୁକାଳେ
ଦଶାସ୍ୟ ବିନାଶ ସକାଶ ପ୍ରକାଶ ହୋଇଛ ମହୀମଣ୍ଡଳେ
ସେ ବଦେ ।
ଧ୍ୟାନ କରି ଜାନକୀ ଶ୍ରୀପଦେ । ଦୀନ ଗୋକୁଳାନନ୍ଦ ଏ ଛନ୍ଦେ । ୫୫ ।

---

## ଏକତ୍ରିଂଶ ଛାନ୍ଦ

ରାଗ—ଦେଶାକ୍ଷୀ

ଶ୍ରବଣ କର ପ୍ରବୀଣ ମାନବ
ନରବାଣୀ ଶୁଣିବାରୁ ରାଘବ ।
ଭାବିଲେ ଏ ମୃଗ ଅଟେ ଦାନବ
ବିପତ୍ତି ପତନ ହେବା ସମ୍ଭବ ।
ମୋ ସ୍ୱର
ଅବିକଳ ପଶୁର
ବଡ଼ ମାୟାବୀ ଅଟନ୍ତି ଅସୁର । ୧ ।
ଛନ ଛନ ମନେ ଅସନ୍ତି ରାମ
ଘନ ଘନ ସ୍ଫୁରେ ନୟନ ବାମ ।

---

(୧) ବୃଦ୍ଧଶ୍ରବା—ଇନ୍ଦ୍ର

ବାଟରେ ଭେଟ ହେଲେ ସଜ୍ଜିନୀ
ଛାଟକା ହେଲେ ଦେଖି ରଘୁପତି ।
କହିଲେ
ଗ୍ଲାନି ପ୍ରିୟସହିକି
ଅକାରଣେ ତୁ ଅସିଲୁ ଛାଡ଼ିକି । ୨ ।

ଲକ୍ଷ୍ମଣ କାତର ହୋଇ ଅତ୍ୟନ୍ତ
ବ୍ୟକ୍ତ କଲେ ସବୁ ପୂର୍ବ ବୃତ୍ତାନ୍ତ ।
ଶ୍ରମ ବଦତ ଜ୍ଞାତ ପରାକ୍ରମ
ରମଣୀ ବାଣୀରେ ଜନମ ଭ୍ରମ ।
ବିଗ୍ରହ
କିଛି ନ ଗଲା ଜଣା
ବୁଦ୍ଧି ଥାଇ ଥାଇ ହୋଇଲୁ ବଣା । ୩ ।

କହିଲେ ମୋତେ ଯାହା ବଇଦେହୀ
ସହି ପାରିବେ କି ମହୀରେ କେହି ।
ବହିଯିବ ନଈ ହୋଇ ପାଷାଣ
ବହି ନ ପାରିବେ ଦେହୀ ପରାଣ ।
ପାତକ ।
ହେବ କଲେ ବ୍ୟକତ
ଅପଣ ପ୍ରଭୁ ମୁଁ ଯେଣୁ ଭକତ ।୪।

ଏହିପରି କହି କହି ହିଗ୍ଭଇ
ପର୍ଣ୍ଣଶାଳା ଦ୍ୱାରେ ପ୍ରବେଶ ଯାଇଁ ।
ଗୃହିଲେ ଅଭ୍ୟନ୍ତରେ କେହି ନାହିଁ
କହିଲେ ଛାଡ଼ିଗଲୁ ପ୍ରିୟସହୀ ।
ଅଧୀର ।
ହେଲେ ଧୀର ପ୍ରବର
ବୋଧିଲେ ଲକ୍ଷ୍ମଣ ନୁହ କାତର ।୫।

ବୃକ୍ଷଶ୍ରେଣୀଙ୍କି ପୁଚ୍ଛିଲେ ବାରତା
ସୀତା କେଉଁଣେ ଗଲେ କେବେ କହ ତା

ବୈଦେହୀ[୧] ଦେଖିଲ କି ବୈଦେହୀକି
ମିଠଣୀ ବାଣୀ ନ କହ କାହିଁକି ।

ଅଶୋକ ।

ମୋର ଶୋକ ବିନାଶ
ଦୟିତା ସୁଦୟା କର ପ୍ରକାଶ ।୭।
ରସାଳ ରସାଳସା ଗନ୍ଧ କେଣେ
ମଲ୍ଲୀ ଗୋ ମଲ୍ ତା ବିହୀନେ ବଣେ ।
ସହଚରୀ ସହଚରୀ ଗୋ କାହିଁ
ମାଧବୀ ବାନ୍ଧବୀଙ୍କି ଦେଖୁ ନାହିଁ ।

କିଶୁକ ।

ଗିରିଶମୋହିନୀକି
ଦେଖିଲ କି ଗନ୍ଧ କେହୁ ସେନ କି ।୭।
ନଦୀକି କହୁଲେ ଗୋ ଗୋଦାବରୀ
କିପରିତେ ମିତ ହେଲ୍ ଭ୍ରମର ।
ଜୀବନ ଦାନ କରୁଛ ପ୍ରାଣୀଙ୍କି
ମୋ ଜୀବନ ରଖ କହି ବାଣୀକି ।

ସୁବୃକ୍ଷ ।

କରୁ ଦୀର୍ଘ କିଷୟ
ପଡ଼ୁଛୁଛି ମୋର ନାଶ ସଂଶୟ ।୮।
କମଳାକ୍ଷୀ ମୋର ପ୍ରାଣସଙ୍ଗାତ ।
କ୍ରବ୍ୟାଦ-କୁଞ୍ଜରେ[୨] ହେଲି କି ହତ ।
ସୁନ୍ଦରୀ-ପୁରନ୍ଦରୀ କୁନ୍ଦଦନ୍ତୀ
ଚୈର କର ନେଲ କେଉଁ ଦୁର୍ମତି ।

ଗଜକ ।

କର କରୀକି ଲକ୍ଷ୍ୟ
ଭକ୍ଷଣ କି ଅଛି କଲା ହର୍ଯ୍ୟକ୍ଷ[୩] ।୯।
କିପଦକାଳେ ମୋ ଦୁଃଖୀ-ସମ୍ପଦ
ଉଛାର ଥିବ ରାମ ରାମ ପଦ ।

---

(୧) ବୈଦେହୀ—ହରିଦ୍ରା, (୨) କ୍ରବ୍ୟାଦ-କୁଂଜର—ରାକ୍ଷସରୂପକ ହସ୍ତୀଦ୍ୱାରା,
(୩) ହର୍ଯ୍ୟକ୍ଷ—ସିଂହ,

ତାକୁ ତାଙ୍କ ହୋଇଥିବ ହତାଶ
ଧୈର୍ଯ୍ୟଦ୍ରୁମକୁ ନିରଶ-ବତାସ ।
କପାଡ଼ି
ଦେଇଥିବ ପୋପାଡ଼ି
ସାହସ ତା'ର ଯାଇଥିବ ଖଣ୍ଡ଼ି ।୧୦।
ମୃଗଙ୍କ ଅଗ୍ରତେ କହନ୍ତି ରାମ
ଏକାର ପ୍ରଭେଦେ ଯୋଷାଙ୍କ ନାମ ।
ସମତା ଥିବାରୁ ମମତା ବହୁ
କହିବ କାହିଁଗଲା ପ୍ରିୟସହୀ ।
ଗଳାର
ମାଳା ବାଳା ମୋହର
ସନ୍ଦେଶ ଦେଇ ମୋ ସନ୍ଦେହ ହର ।୧୧।
ଶୁଣି ଏଣଗଣ ତୃଣ ତେଜିଲେ
ଦକ୍ଷିଣେ ମୁଖ ରଖିଣ ରହିଲେ ।
ଊର୍ଦ୍ଧ୍ୱକୁ ଦୃଷ୍ଟି କରନ୍ତେ ନିପାତ
ବୋଧହୁଏ ଶୋକ ହେଲା ସମ୍ପାତ ।
ବୁଝନ୍ତି
ସେ ତ ମନୁଷ୍ୟ-ବାଣୀ
ଶୁଝନ୍ତି ଉପକାର ମନ ଜାଣି ।୧୨।
ସୌମିତ୍ରି ବଦତ ସେ ଦଗେ ସୀତା
ଯିବାର ଜଣାନ୍ତି ନୁହେ ଅନ୍ୟଥା ।
ଅଗ୍ରସର ହେଲେ ବ୍ୟଗ୍ରତା ସହ
ମାର୍ଗେ ଅଗ୍ରହେ ତୋଳ ହରପ୍ରିୟ[୧] ।
ବୃନ୍ତକୁ
ତହୁଁ କଲେ କର୍ତ୍ତିନ
ଛେଣ୍ଡ଼ି ନ ପାରିଲେ ସଂଲଗ୍ନ ଶିଙ୍ଗ ।୧୩।
ପ୍ରିୟକ[୨] ପ୍ରାୟ ପ୍ରିୟାକୁ ହାରି
ଜୀବ-ଜୀବନ ପରି ମଣିଥିଲି ।

(୧) ହରପ୍ରିୟ—କଦମ୍ବ (୨) ପ୍ରିୟକ—ଶଙ୍କିତ ମୃଗ

ପ୍ରାଣ ପବନର ଗମନ ବାଟ
ସ୍ଥିତ ନିରୂପଣ ଯେମନ୍ତ କଷ୍ଟ ।
ତେମନ୍ତ
ହେଲା ପ୍ରାଣବଲ୍ଲଭି
ଅବ କି ତାହାକୁ ପାରିବ ଲଭି ।୧୪।
ବିଜୟ ପୁନଶ୍ଚ କଲେ ପଥରେ
ଜଟାୟୁକୁ ଦେଖିଲେ ସମ୍ମୁଖରେ ।
ସୌମିତ୍ରିଙ୍କି ଭାଷିଲେ ବୀରବର
ସଖୀକୁ ଭକ୍ଷିଥିବ ପକ୍ଷୀବର ।
ଲୋହିତ
ବର୍ଣ୍ଣ ଦିଶଇ ଦେହ
ନୋହିବ ଅବା କାହିଁକି ସନ୍ଦେହ ।୧୫।
ନିକଟେ ମିତ୍ର ସେ କଲା ପ୍ରକଟ
ଏକପରେ ଶୂନ୍ୟ୧ ମୁଖ ବିକଟ ।
ଯାଚକରୂପେ ସେ ବାଚକ୨ ହୋଇ
ବାଳାକୁ ବଳାତ୍କାରେ ଗଲା ନେଇ ।
ସମର
ମୁହିଁ କଲି ଅନଳ୍ପ
ପାମର କରନ୍ତୁ ମରଣକଳ୍ପ ।୧୬।
ବ୍ୟକତ କରୁ ତା ପ୍ରାଣ ତ୍ୟକତ
ଭକତବତ୍ସଳ ଗୃହିଁ ମୁକତ ।
ସାକେତପତିଠାରୁ ବର୍ଦ୍ଧି ପ୍ରାପ୍ତ
ଶକତ ଫଳ ପାଇଲା ଶକୁନ୍ତ ।
ଅମର
ହୋଇ ରହନ୍ତା କି ସେ
ଅମରପୁରେ ବସିଲା ଅକ୍ଳେଶେ ।୧୭।
ଅକୁଳ ହୋଇ ଗୋକୁଳପାଳକ୩
ସମୀପେ ଗମିଲେ ରଘୁନାୟକ ।

(୧) ଏକ ପରେ ଶୂନ୍ୟ—ଦଶ (୨) ଯାଚକ—ଭିକ୍ଷୁକ, ବାଚକ—ବୋଧକ, ସୂଚକ (ନିଜକୁ ଭିକ୍ଷୁକ ବୋଲି କହି) (୩) ଗୋକୁଳପାଳକ—ଗରୁଡ

ପୟଃ ନିମିତ୍ତ ପୟୋଜପୟୁର
ଯାଚକ ହେଲେ ଗୋପାଳ ପାଶର
ଅମୂଲ୍ୟ
ମଣି ମୂଲ୍ୟସ୍ୱରୂପ
ଘେନ ଦାନ କର ଗୋରସ ଅଳ୍ପ ।୧୮।
ଯେସନ ଗଜମୋତକୁ ଶବରୀ
ବରଜ ସଂଗ୍ରହ କରି ବଦରୀ ।
ତେସନ ଅଜ୍ଞାନୀ ଗୋପ ସକଳ
ବିକଡା ଏ କେଉଁ ପାଦପଫଳ ।
ବିଚୂଲ୍ଲ
ବିଚୁ ହୋଇ ଅପଣ
ଅର୍ଥ ବିନା ନ କରବୁ ଅର୍ପଣ ।୧୯।
ଶ୍ରୀର ବଦନ୍ତେ ହୋଇ ବିରକତ
କ୍ଷୀରଡକ ହୋଇଗଲ ରକତ ।
ଖେଦେ ପାଦେ ବଦେ ଗୋପାଳ ବୃଦ୍ଧ
କ୍ଷେହତ ବର୍ଣ୍ଣ ବହଲ ତ ଦୁଧ ।
ଅଦ୍ଭୁତ
ଏହୁ ନ ଯିବ ବିକା
କପଟ ନିର୍ବାହ ହେବ ଜୀବିକା ।୨୦।
ଦୈନ୍ୟ ତା ଦେଖି ଦୀନାର୍ତ୍ତିନାଶନ
ଧନ୍ୟବାଦ ଦେଇ ହେଲେ ପ୍ରସନ୍ନ ।
ଗୋ-ଦୁଗ୍ଧ ପୂର୍ବ ଅବସ୍ଥାକୁ ପ୍ରାପ୍ତ
ଗୋପାଳ ସନ୍ତୋଷେ ଦେଲ ପାନାର୍ଥ ।
ଯାଉନ୍ତେ
ବର କୃପାନିଧାନ
ସୁତ ଜାତ ହେଉ ତବ ସମାନ ।୨୧।
ଗୋପରେ ଦ୍ୱାପରେ ନରରୂପରେ
ପୁତ୍ରରୂପେ ପ୍ରାପ୍ତ ହେବୁ ଗୋପରେ ।

(୧) ପୟ—କ୍ଷୀର

ବଲ୍ଲବଙ୍କୁ୧ ବଳଦେଷ୍ଟା-ବଲ୍ଲଭ
ପ୍ରସନ୍ନେ ପ୍ରଦାନ କର ଦୁର୍ଲ୍ଲଭ ।
ଅନୁଜ
ସହ ଅନୁସନ୍ଧାନ
ବନୁ ବନାନ୍ତର କର ଗମନ ।୨୨।
କବନ୍ଧ ବନ୍ଧନ କଲା ପ୍ରବଳେ
ବ୍ୟାଳ କି ନକୁଳ ଧରିଲା ବଳେ ।
ଗାତ୍ର ତା ଗୋତ୍ର ଏକ ମାତ୍ର ନେତ୍ର
ମିତ୍ର ମିତ୍ର ହେବା ନୁହେ ବିଚିତ୍ର ।
କୁକ୍ଷିରେ
ମୁଖ ବିଳ ସଦୃଶ
ଗିଳଇ ମିଳଇ ଯେ ତା'ର ପାଶ । ୨୩ ।
ହସି କସି ଅସି କଲେ ପ୍ରହାର
କରଦ୍ୱୟ ଛିନ୍ନ ହୋନ୍ତେ ତାହାର
ଭାଷିଲା ଦୈତ୍ୟ ତୁମ୍ଭେ କି ଶ୍ରୀରାମ
ଅସି ନାଶି ପୂର୍ଣ୍ଣ କଲ ମୋ କାମ
ବହନ
ଷଡ଼ାନନ୨ ଦହନ
କର ଭବ୍ୟ ଜାଳି ହବ୍ୟବାହନ । ୨୪ ।
ସ୍ୱଦେହ ବହିଲେ ତୁମ୍ଭ ସନ୍ଦେହ
ବିଦୂର କରିବ ମେଦୁରଦେହ ।୩
ପିତୃ-ବନକୃତ କର୍ମ୪କୁ ରାମ
ସମାପନ କଲେ ନନ୍ଦନ ସମ
ବହ୍ନି
ପୂର୍ବ ତନୁ କବନ୍ଧ
ରହି ସ୍ୱର୍ଗେ କହିଲା ସ୍ୱ-ସମ୍ବାଦ । ୨୫ ।

---

(୧) ବଲ୍ଲବ—ଗୋପାଳ (୨) ଷଡ଼ାନନ—ଶଙ୍କର (୩) ମେଦୁରଦେହ—ଶ୍ୟାମକାୟ
(୪) ପିତୃବନକୃତକର୍ମ—ଅନ୍ତ୍ୟେଷ୍ଟିକ୍ରିୟା

୨୩ ପଦ—ଗାତ୍ର······ବିଚିତ୍ର—କବନ୍ଧ ଏକାକ୍ଷ, ସୂର୍ଯ୍ୟ ମଧ୍ୟ ଏକଚକ୍ର-ରଥ, ଏଣୁ ଦୁହେଁର ମିତ୍ରହେବା ଆଶ୍ଚର୍ଯ୍ୟଜନକ ନୁହେଁ । (ଏକଚକ୍ରଃ ରଥୋ ଯସ୍ୟ ·········) କବନ୍ଧ-ରାକ୍ଷସବିଶେଷ । ମିତ୍ର-ସୂର୍ଯ୍ୟ ଓ ବନ୍ଧୁ ।

ଦନୁତନୁଜ ଅଭନୁ ପ୍ରକାର
କୁନ୍ଦନ ଅଙ୍ଗ ସୁନ୍ଦର ଆକାର
ଦୀଭ ମୂର୍ତ୍ତିକି ବହ୍ନଣ ଯତିକି
ଭୟୁ ଦହୁ ଅନ୍ତେ ଦେଲେ ଶାସ୍ତିକ
ତର୍ଜ୍ଜା
ତହୁଁ ହେଲ ପ୍ରବଳ
ଜବେଡ଼ିଲି ମୁନି ପାଦଯୁଗଳ । ୨୬ ।
କହିଲେ ସେହୁ ବହି ସ୍ତବକରୁଣା
ଶାପ ରୂପ ବ୍ୟାଧି ହୋଇବ ଊଣା
ଜ୍ଞାନ ଚ୍ୟୁତ ହୋଇ ଅଚ୍ୟୁତ ଜାତ
ରାମ ନାମ ବହି ହୋଇବେ ମର୍ତ୍ତ୍ୟ
ପାଳିବେ
ସତ୍ୟ ବନକୁ ଯାଇ
ଭେଟିବେ ତୋତେ ଭାର୍ଯ୍ୟା ହଜାଇ । ୨୭ ।
ତରବୁ ମରିଲେ ତାଙ୍କ ହାତରେ
ଏହା ଶୁଣି ମୁହିଁ ଦୁଃଖ ଚିତ୍ତରେ
ଧାତା ତୋଷି ବର ହେଲି ପ୍ରାପତ
ଗର୍ବେ ନିଦରରେ କଲି ଉତ୍ପାତ
ପୂର୍ବରେ
ଦେଖିଥିଲ ଯେ ରୂପ
ପୁଲୋମଜା(୧)ପତି କଲେ ସେ ରୂପ । ୨୮ ।
ଲକ୍ଷ୍ୟ କରି ଯାଅ ଋଷ୍ୟମୂକକୁ
ଦେଖି ପାରିବ ତହିଁ ସୁଗ୍ରୀବକୁ
ସଖ୍ୟ ସ୍ଥାପନ କଲେ ତା ସହିତ
କରିବ ଅବଶ୍ୟ ସେ ହିତ ହିତ
ଶଂସିତ(୨)
ସ୍ଥଳେ କଲେ ପ୍ରୟାଣ
ସଂଶିତ(୩) ନ ହୋଇ ଶୀରଧୃତ୍ରାଣ । ୨୯ ।

(୧) ପୁଲୋମଜା—ଶଚୀ (୨) ଶଂସିତ—କଥିତ (୩) ସଂଶିତ—ସନ୍ଦେହ ।ନ

ଅତଃପରେ ଅତଃପରି କାନନ
ଯମାସର ପାରେ ନଳିନାନନ
ଶବଶ୍ରୀ ଅଗତ ଯହିଁ ଦେଖିଲେ
ଶବରୀ ଅବାସେ ପ୍ରବେଶ ହେଲେ
ତାପସୀ
ଅପେ ଅପେ ସୁଖରେ
ପାଦ ପ୍ରକ୍ଷାଳନ କଲା ସତ୍ୱରେ । ୩୦ ।
କ୍ଷୁଧା ହରଣାର୍ଥ ବୃଦ୍ଧା ଭକ୍ତରେ
ସୁଧା ସମ ଫଳ ଦେଲେ କଷ୍ଟରେ
ଶ୍ରଦ୍ଧାରେ ଆଧାର କଲେ ରାଘବ
ବାଧା କଥିତ ହୁଅନ୍ତେ ଲାଘବ
କୁଶଳ
ପୁଚ୍ଛନ୍ତେ ସେ କହନ୍ତି
ହେ ରାମ ଅପଣ କି ନ ଜାଣନ୍ତି । ୩୧ ।
ଅତୀତ କାଳେ ବହୁ ଯତି ଏଥି
ଥିଲେ ସୁଦୟା ଥିଲା ମୋହ ପ୍ରତି
ଅତ ବୃଦ୍ଧହେତୁ ଗତ ବହୁତ
ଇନ୍ଦ୍ରିୟ-ଶକ୍ତି ହେଲା ଅନ୍ତର୍ହିତ
ସ୍ୱର୍ଗକୁ
ଗଲେ ତପସ୍ୟାବଳେ
ଯିବାକାଳେ କହିଗଲେ ସକଳେ । ୩୨ ।
ଦୁଷ୍ଟ ନିବାରଣପାଇଁ ବୈକୁଣ୍ଠ୧
ଅଯୋଧ୍ୟାରେ ଜାତ ହେବ ବୈକୁଣ୍ଠ୨
ସତ୍ୟ ପାଳନାର୍ଥ ବରଜ କୁଣ୍ଠ୩
ଭ୍ରାତା ପତ୍ନୀ ସହିତେ ଚଦକୁଣ୍ଠ
କୁଣ୍ଠରେ
କଷ୍ଟ ବହୁଅଛନ୍ତି
ନାସ୍ତିକ ହାର୪ ଅସିବେ ସେ ଏଥି ।୩୩।

(୧) ବୈକୁଣ୍ଠ—ବିଷ୍ଣୁ (୨) ବୈକୁଣ୍ଠ—ବିଷ୍ଣୁ ପୁରୀ, ଗୋଲକ ଧାମ
(୩) କୁଣ୍ଠ—ଗୃହ (୪) ହାର—ହଜାର

ପରିଚର୍ଯ୍ୟା(୧) ସାର ଶରୀର ବର୍ଜି
ଚିରକୁ ଶବରୀ ହରଙ୍କି ଭଜି
ସୁଖରେ ଅମ୍ଭ ପାଖରେ ନାକରେ
ବସିବୁ ଶଙ୍କ ନ ମଜ୍ଜା ଦୁଃଖରେ
ସେ ଦନୁ
ଗୃହଁ ଅଛୁ ମୁଁ ପଥ
ଅଦ୍ୟ ପୂର୍ଣ୍ଣ ହେଲା ମୋ ମନୋରଥ ।୬୪।
କହି ଦହିଲା ପାବକେ ଶରୀର
ପମ୍ପାତୀରେ ମିଳିଲେ ରଘୁବୀର
ବିରହରେ ମୁଖ ଥିଲେ ହେଁ ଶୁଖି
ପକ୍ଷୀଗଣ ଦେଖି ହୋଇଲେ ସୁଖୀ ।
ପୃଚ୍ଛନ୍ତି
ମତ୍ସ୍ୟାଦି ଜଳଚର
ସ୍ୱଚ୍ଛାନ୍ତଃକରଣେ ଦିଅ ଉତ୍ତର ।୬୫।
ଦଶରଥ ସୁତ ମୋ ନାମ ରାମ
ସତ୍ୟ ରକ୍ଷଣାର୍ଥେ ବରଜି ଗ୍ରାମ
ପଞ୍ଚବଟୀରେ କରିଥିଲି ଧାମ
ଭାର୍ଯ୍ୟାକୁ ତହୁଁ ନେଲା କେ ଅଧମ
ବିଧାତା
ମୋତେ ହୋଇଛି ବାମ
ନବୀନା ବିନା ବିନାଶୁଛି କାମ ।୬୬।
ଦେଖିଛ କି ପକ୍ଷି । ସଖୀକି ମୋର
ଚକ୍ରବାକ ବଦେ କଣ୍ଠୁ ବାକ୍ୟର
ମୋ ବଡରେ ଘାତ ହେଲା କରତ
ତେଣୁ ପୁଚ୍ଛୁଛ ସ୍ୱନାରୀ-ଭାରତୀ(୨) ।
ଜାଣିକି
ବହି ବୋଲଅ ଯତ
ଛଟପଟ ହୋଇ ଲେଉଡ଼ ପୀରତ ।୬୭।

(୧) ପରିଚର୍ଯ୍ୟା—ସେବା (୨) ଭାରତୀ—କଥା (ବାର୍ତ୍ତା)

ବୀରବର ବିରହଭାବ ଦେଖି
ବିରହରେ ବଖାଣିଲେ ବେ ପକ୍ଷି ।
ଅଜହୁଁ ତୁମ୍ଭଙ୍କୁ ବାଧୁ ବିରହ
ସନ୍ତତ ଅନ୍ତର ହୋଇଣ ରହ ।
ମିଳିତ
ହେଲେ ତେଜିବ ଜୀବ
ମୋହର ଗିର ଅନ୍ୟଥା ନୋହିବ ।୩୮।
ଶାପ ପ୍ରାପତ ହେବାରୁ ଦମ୍ପତ
ବିପତ୍ତି ବିନାଶେ କଲେ ଅପତ୍ତି
ଅଜ୍ଞତା ହେତୁ କହିଦେଲୁଁ ପଦେ
ବିଜ୍ଞ ହୋଇ ପକାଉଛ ବିପଦେ
ସେପରୁ
ନାଶ କ୍ଷମନ୍ତୁ ଦୋଷ
ଜୀବ ହେ ବିନାଶ ନ କର ବଂଶ ।୩୯।
କହିଲେ ସ୍ୱାମ ସଙ୍ଗିମିନି କଥା
ମହିଁ ଥିବା ଯାଏ ନୋହିବ ବୃଥା
ବାସରେ ଏକନ କରିବ ବାସ
ନିଶାରେ ମିଳିଲେ ଭଜିବ ନାଶ ।
ଭଣିଲ
ଯେଣୁ ବାଣୀ ଅପଥା
ବଂଶାନୁସାରେ ରହିବ ଏ ପ୍ରଥା ।୪୦।
କହି ଏହିମତ ମହୀଜା-ଧବ
ଋଷ୍ୟମୂକ ପାଶେ ପ୍ରବେଶ ଜବ ।
ଜାନକୀ-ବଲ୍ଲଭ କୋଦଣ୍ଡଧର
ଅଧିକ ମ ଗୁଣି ନାହିଁ ମୋହର ।
ଗୋକୁଳା-
ନନ୍ଦ ଜଣାଏ ପାଶ
ଅନ୍ତେ ଅନ୍ତ କର ଅନ୍ତକ କ୍ଲେଶ ।୪୧।

———

## ଦ୍ୱାବିଂଶ ଛାନ୍ଦ

### ରାଗ—ଚକ୍ରକେଳି

ରାମ ଋଷ୍ୟମୂକ ସନ୍ନିଧାନରେ,
ବଞ୍ଚେ ସୁଗ୍ରୀବ ଅନୁସନ୍ଧାନରେ ।୧।
ମନ ରହିଛି ବୈଦେହୀ ଧ୍ୟାନରେ,
ଏଣୁ ଚିନ୍ତିତ ସଦା ବିଧାନରେ । ୨ ।
କହେ ସୁଗ୍ରୀବ ସଖାଙ୍କ କାନରେ,
କିଏ ବୁଲୁଛନ୍ତି ଏ କାନନରେ । ୩ ।
ଚାହିଁ ଭୀତ ଉପୁଜଇ ମୋ ମନରେ,
ରହି ନ ପାରିବି ଏହି ସ୍ଥାନରେ । ୪ ।
କର ଭ୍ରମ ବେଗକୁ ଉପଚାର,
ଖରତର[1] ଯାଅ କିଏ ପଚାର । ୫ ।
ବାଲି ପେଷିଛି କି ଗୁପତ ଚାର,
ଦେଖି ଯାଇ ସେ କରିବ ପ୍ରଚାର । ୬ ।
ସମୀରଣ-କୁମର ହରଷରେ,
ସମୀପକୁ ଗଲେ ବିପ୍ରବେଶରେ । ୭ ।
ପ୍ରଣମି ପାଦେ ପଚାରେ ପାବନି,
ରଣବେଶେ କିମ୍ପା ବୁଲ ଏ ବନି । ୮ ।
ଦରଶନ କରି ବେନି ମୂର୍ତ୍ତିଙ୍କି,
ଦର[2] ହରଷ ପାଉଛି ମତିକି । ୯ ।
ଶୀତା[3] ସିତ-ସୁମନା[4] ପରାଜିତା,
ଶୀତାଂଶୁ ଅହ୍ଲାଦରେ ପରାଜିତା । ୧୦ ।
ଜହ୍ନୁ-ଭାନୁକନ୍ୟା[5] ଅବା ମିଳିତ,
ତନୁ ମନୋଜକୁ ପାରେ ଦଳି ତ । ୧୧ ।
ଯତି କ୍ଷତ୍ରିୟବୃତ୍ତିକି ଧାରଣ,
କରିଅଛ କହ କେଉଁ କାରଣ । ୧୨ ।

---

(୧) ଖରତର—ଅତିଶୀଘ୍ର (୨) ଦର—ଅଳ୍ପ (୩) ଶୀତା—ସୀତା
(୪) ସିତ ସୁମନା—ଶିରୀଷ ପୁଷ୍ପ (୫) ଜହ୍ନୁ-ଭାନୁ-କନ୍ୟା—ଗଙ୍ଗା, ଯମୁନା

ସୁମିତ୍ରାଜ କହନ୍ତି ହେ ଭୂସୁର୧,
ଅମ୍ଭେ ବାସ୍ତବରେ ଅଟୁଁ ଭୂ-ଶୂର୨ । ୧୩ ।
ଅଯୋଧ୍ୟାରେ ନୃପତି ଦଶରଥ,
ଯୋଧାବୃନ୍ଦରେ ଅତି ସମରଥ । ୧୪ ।
ଅମ୍ଭେ ଦୁହେଁ ତାହାଙ୍କର କୁମର,
ଯାଙ୍କୁ ସମରେ ଅମର ଗୁମର । ୧୫ ।
ପିତାସତ୍ୟ ପାଳନାର୍ଥ ଧନକୁ,
ପିତା ମଣି ରାଜସିଂହାସନକୁ । ୧୬ ।
ବର୍ଷ ଚଉଦ ନିମନ୍ତେ ବନକୁ,
ବର୍ଜି ଆସିଲେ ଏ ସ୍ୱ ଭବନକୁ । ୧୭ ।
ଏ ରାମ, ମୋ ନାମ ଅଟେ ଲକ୍ଷ୍ମଣ,
ଆସିଛୁ ମୁଁ କରିବାକୁ ରକ୍ଷଣ । ୧୮ ।
ଏହାଙ୍କ ବାମାକୁ ପଞ୍ଚବଟୀରୁ,
ହରି ଘେନିଗଲା କେହୁ କୁଟିରୁ । ୧୯ ।
ସିକତା-ସେତୁରେ ବାରି ବାରଣ,
ବଙ୍କ ଊର୍ଣ୍ଣନାଭ୩ ସୂତ୍ରେ ବାରଣ୪ । ୨୦ ।
ହର ଗର କରିଥିଲେ ଆହାର,
ତାପ ସହି ନ ପାରିଲେ ତାହାର । ୨୧ ।
ତେଣୁ ଜାହ୍ନବୀ ମସ୍ତକେ ବିହାର
କଲେ ଶଶୀ ବରଷିଲେ ନୀହାର । ୨୨ ।
ବିଷକଣ୍ଠ ନାମ ଏଥି ସକାଶ,
ବିଶ୍ୱମଣ୍ଡଳେ ପାଇଲା ପ୍ରକାଶ । ୨୩ ।
ବିଷରୁ ବିଷମ ରାମ ଘରଣୀ,
ହରି ରହି ପାରିବ କେ ଧରଣୀ । ୨୪ ।
ଯକ୍ଷ ଗନ୍ଧର୍ବ ପିଶାଚ କିନ୍ନର,
ସୁର ଅସୁର ତପସ୍ୱୀ କି ନର । ୨୫ ।

---

(୧) ଭୂ-ସୁର—ବ୍ରାହ୍ମଣ (୨) ଭୂ-ଶୂର—ବୀର (୩) ଊର୍ଣ୍ଣନାଭ—ବୁଢ଼ିଆଣୀ (୪) ବାରଣ—ହସ୍ତୀ

କଣ୍ଟା ପଡ଼ିଲେ ଏକା ବାଣକରେ
ଯମ ଲୋକକୁ ଯିବ କ୍ଷଣକରେ । ୨୬ ।
ଅମ୍ଭ ଦେହରେ ଥିଲେ ଏତେ ବଳ,
ସୁଗ୍ରୀବଙ୍କ ଲୋଡ଼ୁ ଅଛୁଁ କେବଳ । ୨୭ ।
ସିଂହ ପଡ଼ଇ ଶବରଜାଲରେ,
ମୂଷା କାଟି ଥାଇ ତ ବେଳରେ । ୨୮ ।
ତୁମ୍ଭେ କଏ ଜାତ କେଉଁ ଦେଶରେ,
ପରଚୟ ନେଇ କ ଉଦ୍ଦେଶ୍ୟରେ ।୨୯ ।
ହନୁମାନ କହେ ନୁହେ ମୁଁ ନର,
ବାତଠାରୁ ଜାତ ଜାତି ବାନର । ୩୦ ।
ଶ୍ରମ ଅଦେଶେ ନିଜ ମୂରତିକି,
ବହି ପାଦେ ବହିଲି ପ୍ରଣତିକି । ୩୧ ।
ଗୃହିଁ ବଲିଦେବାପାଇଁ ଭୂଷଣ,
କାହୁଁ ପାଇଲି ଏ ଦେବ-ଭୂଷଣ । ୩୨ ।
ହନୁ ବଦଳ ମୁଁ ଜନ୍ମକାଳରେ,
ଭାନୁ ଧଇଲି ନଭୋମଣ୍ଡଳରେ । ୩୩ ।
ଅମରାବତୀଶ ଅତିକୋପରେ,
ବଜ୍ର ପ୍ରହାରିଲେ ମୋହ ଉପରେ । ୩୪ ।
ଦେଖି ସଦାଗତ ୧ ହେଲେ ସ୍ଥଗିତ,
ଅକ୍ଷି-ଅଷ୍ଟ୨ ତଦ୍ଭୟେ ଶଙ୍କିତ । ୩୫ ।
ବସୁଧା ବୁଃଖରେ ପଦ୍ମଆସନ,
ସୁଧା କରିଲେ ମୋତେ ଅଶନ୩ । ୩୬ ।
ବରଦ ହେଲେ ସକଳ ନିର୍ଜ୍ଜର,
କହିଲେ ହୁଅ ଅମର ଅଜର୪ । ୩୭ ।
ଅମ୍ଭ ଅସ୍ତ୍ର ନ ଭେଦିବ ପ୍ରତୀତେ,
ଦୟା ବହି କହି ଗଲେ ପ୍ରତ୍ୟେକେ । ୩୮ ।

(୧) ସଦାଗତ—ପବନ (୨) ଅକ୍ଷିଅଷ୍ଟ—ବ୍ରହ୍ମା (୩) ଅଶନ—ଭୋଜନ (୪) ଅଜର—ବାର୍ଦ୍ଧକ୍ୟ ଶୂନ୍ୟ

ଦାନ କଲେ ସେ ମୁକୁଟ କୁଣ୍ଡଳ,
ବଳି ହୋଇ ଦଳିଲ ଭୂମଣ୍ଡଳ । ୩୯ ।
ବହୁ ଧ୍ୟାନଯୋଗ କରି ବର୍ଣ୍ଣିଲେ,
ବ୍ୟାଧି ଯିବ ଶ୍ରୀରାମଙ୍କୁ ଦେଖିଲେ । ୪୦ ।
ନାରାୟଣ ଜାତ ହେବେ କ୍ଷିତିରେ,
ଭେଟ ପାଇବୁ ପମ୍ପାସରତୀରେ । ୪୧ ।
ଏହୁ ଭୂଷଣ ଦର୍ଶିବ ଯାହାଙ୍କୁ,
ସେହୁ ରାମ ମନେ ରଖ ଏହାଙ୍କୁ । ୪୨ ।
ଏତେ କହୁ ପଡ଼ି ପଦ୍ମପାଦରେ,
ବହୁ ସ୍ତୁତି କଲା ମୋଦ ହୃଦରେ । ୪୩ ।
ଜୟ ନନ୍ଦକ ୧ ଅବ୍ଜ ୨ ଦର ୩ କର,
ଜଗତ-ଭୟହର କ୍ଷୟ କର । ୪୪ ।
ଅକ୍ଷୟ ଅବ୍ୟୟ ପଦ୍ମପୟର,
ବସ ସକଳ ଅନ୍ତଃକରଣର । ୪୫ ।
ଶଶଧର ସମ ରମ୍ୟ ଲପନ,
ନବଘନ ମତ ଅଙ୍ଗବରନ । ୪୬ ।
ଖର-ପର ଦାଶରଥନନ୍ଦନ ।
ସତ୍ୟସନ୍ଧ ୪ ଲକ୍ଷ୍ମଣ ଅଗ୍ରଜନ୍ମ । ୪୭ ।
ହର୍ଯ୍ୟକ୍ଷ ସମକକ୍ଷ ବଳ ବହ,
ମହତ ନରଙ୍କ କଳଙ୍କ ଦହ । ୪୮ ।
ଅଜ ୫ ଅନଶ୍ୱର ୬ ତ ଅବୟବ,
ଜନ୍ମ ମରଣ ସମ୍ଭବ ଏ ଭବ । ୪୯ ।
ଜନକ ବଚନ କଲ ରକ୍ଷଣ,
ଭବନ ଭଳପ କଲ ଅରଣ୍ୟ । ୫୦ ।

---

(୧) ନନ୍ଦକ—ବିଷ୍ଣୁଙ୍କର ଖଡ୍ଗର ନାମ (୨) ଅବ୍ଜ—ପଦ୍ମ
(୩) ଦର—ଶଙ୍ଖ (୪) ସତ୍ୟସନ୍ଧ—ସତ୍ୟପ୍ରତିଜ୍ଞ (୫) ଅଜ—ଅଜନ୍ମା
(ଯାହାଙ୍କର ଜନ୍ମ ନାହିଁ) (୬) ଅନଶ୍ୱର—ଅବିନାଶୀ
(ଯାହାଙ୍କର ବିନାଶ ନାହିଁ)

ଅମରଙ୍କ ବନ୍ଦ୍ୟ ସମସ୍ତ-ଦକ୍ଷ,
ଷଟ୍-ସମ୍ପଦପ୍ରଦ ବଳ ଅଲକ୍ଷ୍ୟ ।୫୧।

ଯା ମାତା କ୍ଷ୍ମା ତାହା ବାପା ଜାମାତା,
ଜାୟା ଯା କାୟା ଛାୟା ସାହା ଭ୍ରାତା ।୫୨।

ତ୍ରାତା ଦାନା-ଦାତା ଜ୍ଞାତା ନାଁ ନାନା,
କାୟା ଭା ଅଚ୍ଛା ଖାସା ଖାସ୍ ଦାନା ।୫୩।

ବାମା ବାଞ୍ଛି ବାଞ୍ଛା ବାଧା ବାହାନା,
ରାହା ଯାହା ଅକାଙ୍କ୍ଷା ଠା ତାହା ନା ।୫୪।

କୀର୍ତ୍ତି ନିନ୍ଦ ନକ୍ଷିନାଥ ଦୀପ୍ତିକ,
ଜୀବ ନିତ ଚିନ୍ତ ଶାନ୍ତ ମୂର୍ତ୍ତିକ ।୫୫।

ସରସ୍ୱତୀ, ଧୀ, ହ୍ରୀ, ଶ୍ରୀ ଧୃ ବିଧିଗୀତ,
ପ୍ରୀତ ବଟ ମିଳିଛି କଣ୍ଠୁ କ୍ଷିତି ।୫୬।

---

୫୨ । ଯା (ଯାହାର) ମାତା, କ୍ଷ୍ମା (ପୃଥିବୀ) ଅର୍ଥାତ୍ ସୀତା । ତାହା ବାପ ଜାମାତା । ଜାୟା—ସ୍ତ୍ରୀ । ଯା କାୟାର ଛାୟା ଭ୍ରାତା (ଲକ୍ଷ୍ମଣ) ଯାହାର ସାହା (ସହାୟ) ଏମନ୍ତ ଯେ ରାମ ।

୫୩ । ତ୍ରାତା (ତ୍ରାଣକର୍ତ୍ତା) ଦାନା-ଦାତା (ଖାଦ୍ୟ-ଦାତା) ଜ୍ଞାତା—(ସର୍ବଜ୍ଞ) ନା ନା ନା (ରାମ, ରଘୁନାଥ, ଦାଶରଥି) ଇତ୍ୟାଦି । କାୟା—ଦେହ ଭା (ତେଜ) ଅଚ୍ଛା (ଉତ୍ତମ) ଦାନା ଖାସା (ଭଲ) ଖାସ୍ (ଠିକ୍) ।

୫୪ । ବାମା (ସ୍ତ୍ରୀ) ବାଞ୍ଛା ବାଞ୍ଛି (ଇଚ୍ଛା କରି) ବାହାନା (ଛଳନାରେ) ବାଧା ପାଇ ରାହା (ପଥରେ) ଯାହା (ଗତି କରୁଛ) ଠା (ସ୍ଥାନ) ତାହାନା (ଯେ ନେଇଛ) ଜାଣିବାକୁ ଅକାଂକ୍ଷା (ଇଚ୍ଛା ଅଛି) ।

୫୫ । କୀର୍ତ୍ତି (ଯଶ) ନକ୍ଷିନାଥ (ଚନ୍ଦ୍ର) ଦୀପ୍ତିକ (ତେଜକୁ) ନିନ୍ଦ (ନିନ୍ଦା) କରେ ଜୀବ (ପ୍ରାଣୀ) ନିତ (ସର୍ବଦା) ଆପଣଙ୍କର ଶାନ୍ତମୂର୍ତ୍ତିକୁ ଚିନ୍ତା ଓ ଚର୍ଚ୍ଚା କରନ୍ତି ।

୫୬ । ସରସ୍ୱତୀ (ଈ)(ମୂର୍ତ୍ତି) ଧୀ (ବୁଦ୍ଧି) ହ୍ରୀ (ଲଜ୍ଜା) ଶ୍ରୀ (ଲକ୍ଷ୍ମୀ) ଧୃ (ଧାରଣ ଶକ୍ତି) ବିଧି (ବିଧାତା) ଗୀତ (ଗାନ) କରେ ପ୍ରୀତରୂପ ବଟ (ଲକ୍ଷଣ) ପୃଥିବୀରେ ମିଳିଛି । ଆପଣଙ୍କର ପ୍ରୀତ ଉଦାସ ପଣ୍ଡ ପୃଥିବୀରେ ଖେଳୁଛି ।

ଭୂ-ଗୁରୁ ମୁହୁର୍ମୁହୁ ମୁମୂର୍ଷୁଙ୍କୁ,
ମୃତ୍ୟୁମୁଖୁ ସୁ ଉରୁ ଭୂକୁ ଦୁଃଖୁ । ୫୭ ।
ଯେବେ ସ୍ନେହେ କେ ସେବେ ଲେଶେ ଗେଲେ,
ତେବେ ସେ ଶେଷେ ଦେବେ ଗେହେ ଖେଳେ । ୫୮ ।
ଅଦର କରି କେଣେ ସୋଦରଙ୍କୁ,
କନ୍ଧରେ ଧରି ଗଲ କନ୍ଦରକୁ । ୫୯ ।
ତାର୍କ୍ଷ୍ୟ୧ ପୁଣ୍ୟଶ୍ରବାଙ୍କୁ ବହିଲ
ଲକ୍ଷ୍ୟ ପବନନନ୍ଦନ ଶୋହିଲ । ୬୦ ।
ମର୍କଟେଶ ନିକଟ ହନୁମାନ,
ପ୍ରକଟ କଲ ସମ ବାର୍ତ୍ତାମାନ । ୬୧ ।
ଦେଖି ସୁଗ୍ରୀବ ଗୁହାରୁ ବାହାରି,
ରଖି ପାଦେ ଶିର କଲ ଜୁହାରି । ୬୨ ।
ମଥା ପୋତି ବ୍ୟଥା-କଥା କହିଲ,
ବୃଥା ଏ ଥାନେ ଜୀବନ ରହିଲ । ୬୩ ।
ଶୁଣି ପୂଷଣବଂଶଜ ଭୂଷଣ,
ଦୁଇ ଜଣଙ୍କର ସମ କଷଣ । ୬୪ ।
ମାତା ରଖାଇ ନ ଦେଲେ ଗୃହରେ,
ଭ୍ରାତା ଭୟେ ଲୁଚିଅଛ କୁହରେ୨ । ୬୫ ।
ମିତ୍ରପୁତ୍ର ଜାତ ମୁଁ ସେ ଗୋତ୍ରରେ,
ମିତ୍ର ହେବା ଉଚିତ ଏ ଗୋତ୍ରରେ୩ । ୬୬ ।
ଚଳାଇବା ବାଳି ଦାନ ବେଭାର,
ପରସ୍ପର ନାଶିବା କ୍ଲେଶଭାର । ୬୭ ।

---

୫୭ । ଭୂ (ପୃଥ୍ୱୀ) ର ଗୁରୁ ମୁହୁର୍ମୁହୁ (ବାରମ୍ବାର) ମୁମୂର୍ଷୁ (ପଡ଼) କୁ ମୃତ୍ୟୁ ମୁଖୁ ଏବଂ ସୁ (ଉତ୍ତମ) ଉରୁ (ବିଶାଳ) ଭୂ (ପୃଥ୍ୱୀ) କୁ ଦୁଃଖୁ (ଦୁଃଖରୁ) ରଖ ।

୫୮ । ଯେବେ କେହି ଅପଣଙ୍କୁ ସ୍ନେହରେ ଶେଲରେ ଲେଶମାତ୍ର ସେବା କରେ ତେବେ ସେ ଶେଷରେ ଦେବେ ଗେହେ (ସ୍ୱର୍ଗରେ) ଖେଳେ ।

— (୧) ତାର୍କ୍ଷ୍ୟ—ଗରୁଡ଼ (୨) କୁହରେ—ଗୁହାରେ (୩) ଗୋତ୍ର—ପର୍ବତ

୬୭ । ମିତ୍ରହେଲେ ବେଭାର ଚାଲ । ଏଠାରେ ବାଳୀ ଦାନ ବେଭାର ଚଳିବ । ଅର୍ଥାତ୍ ସୁଗ୍ରୀବଙ୍କପାଇଁ ବାଳୀର ଦାନ ବା ଛେଦନ ଓ ରାମଙ୍କ ପାଇଁ ବାଳୀ ବା ସ୍ତ୍ରୀ ଦାନ ବା (ସୀତାଙ୍କର ଲଭ) ।

ଶ୍ରେଣୀ ସାକ୍ଷୀ ରଙ୍ଗି ଅଖିଳପତି,
ସଖ୍ୟ ସଂସ୍ଥାପନ କଲେ ସଂପ୍ରୀତି । ୬୮ ।
ଅରୁଣ-ଚରଣେ ଅରୁଣସୁତ୧
ପ୍ରଣମି ଭଣିଲ ଶୁଣ ହେ ମିତ । ୬୯ ।
ଦିନେ ରଥେ ଯାଉଥିଲ ବାଳାଏ,
କାନ୍ଦୁଥିଲ ସେ କୁରରୀ୨ ପରାଏ । ୭୦ ।
ଯାନ ଘନ ଘନ ନଭେ ପଳାଏ,
ମନେ ପରତେ ଘନେ ଚପଳା ଏ । ୭୧ ।
ଊର୍ଦ୍ଧ୍ୱ ଦୃଷ୍ଟି କରନ୍ତେ ସନ୍ନିପାତ,
ବାସାବନ୍ଧ ଭୂଷା ହେଲ ପ୍ରପାତ । ୭୨ ।
ତାକୁ ଯତ୍ନେ କରିଛୁ ସଂପାଦନ,
ତାହା ଏବେ କରୁଛୁ ସଂପ୍ରଦାନ । ୭୩ ।
ଦୃଷ୍ଟିକାଳ ସୃଷ୍ଟି କଲ ସେ ଧନ,
ସନ୍ତାପ-ନଦୀ କର ବିବର୍ଦ୍ଧନ । ୭୪ ।
କାସର ରୂପ ସର ଗୃପସରୀ,
ବଳୟୁ ସବିତାମଣ୍ଡଳ ସରି । ୭୫ ।
ବଳାହକ ସମ ଅଳକାବଳୀ,
ମୁକ୍ତାପନ୍ତି ବର୍ଷା-ଉପଳ୩ ଭଳି । ୭୬ ।
ସାଧବବଧୂ ନିନ୍ଦୁଛି ସିନ୍ଦୁକ୪
କର୍ଣ୍ଣଫୁଲ ହଳୀପ୍ରିୟ ସମାଜ । ୭୭ ।
ଶୋକ-ପଙ୍କରେ ଜୀବନ ଅଚଳ,
ପ୍ରକାଶ୫ ରୂପ ହା ରବ ପ୍ରବଳ । ୭୮ ।
ରଘୁକୁଳପତି ଅତି ଅକୁଳ,
ସୁଗ୍ରୀବ ବନ୍ଧୁ ମତ ଅନୁକୂଳ । ୭୯ ।
କରିଗଲକି କରୁଣାନିଧାନ,
ନିଷ୍ଟେ କରିବି ମୁଁ ଅନୁସଂଧାନ । ୮୦ ।

---

(୧) ଅରୁଣସୁତ—ସୁଗ୍ରୀବ (୨) କୁରରୀ—କପୋତୀ (୩) ବର୍ଷାଉପଳ—କରଡ଼ା (ଲୁଅପଥର) (୪) ସିନ୍ଦୁକ—ପୋଦ୍ଦଳା (୫) ପ୍ରକାଶ—ଘଡ଼ଘଡ଼ି

ଶୋକ କରିବାର ନୁହେ ବିଧାନ ।
ଲୋକ କହିବେ ଏ ତ ଅପ୍ରଧାନ । ୮୧ ।
ପ୍ରଭୁ ବାଳକ ମୋ ଭୟ ମାତର,
ତ୍ରିଭୁବନକୁ ନ କରେ ଖାତର । ୮୨ ।
ଖ୍ୟାତି ରାଘବ କରିବ ନିଧନ,
ଦେବ ତୁମ୍ଭଙ୍କ ରାଜ୍ୟରୂପ ଧନ । ୮୩ ।
ବୋଲେ ସୁଗ୍ରୀବ ତା ମୃତ୍ୟୁ ବିଷୟ,
ଛନ୍ଦେ ପ୍ରତେ ନୁହେ କାତ ସଂଶୟ । ୮୪ ।
ବଳ ବାଲିଠାରୁ ବଳୀ ଭୁବନେ,
ନର ଅସୁର ନାହାନ୍ତି ଜୀବନେ । ୮୫ ।
ଏକା ବାଣକେ ନ କଲେ ବିନାଶ,
ଘାତକକୁ ଭେଟାଇବ କୀନାଶ ।(୧) ୮୬ ।
ଦୁନ୍ଦୁଭିକି ଟେକି ଶକ୍ତି ପରଖ,
ବାଲି ମରିବା ବାଣୀ ମନେ ରଖ । ୮୭ ।
କହ ଅହଃପତି(୨) ସୁତ କାହିଁଛି,
କେତେ ପ୍ରମାଣେ ଗୁରୁତା ବହିଛି । ୮୮ ।
ଅସ୍ଥି ସଂସ୍ଥାନ ସ୍ଥାନେ ପରିବେଶ,
ସହଜେ ତ ସର୍ବଦା ବୀର-ବେଶ । ୮୯ ।
ସର୍ବେଶ୍ୱର ଚରଣ ଅଙ୍ଗୁଷ୍ଠରେ,
ଦର୍ଭ ଫିଙ୍ଗିଦେଲେ ବିନା କଷ୍ଟରେ । ୯୦ ।
ବି(୩) ସଦୃଶ ଉଡ଼ିଗଲା ଅକାଶ,
କ୍ଷଣଦୃଶ(୪) ମନେ ଏହା ପ୍ରକାଶ । ୯୧ ।
ବହୁଦିନୁ ପ୍ରପତିତ ଧରାରେ,
ଲହୁ ବସାହୀନ(୫) ବି ଶୁଷ୍କ ଖରରେ । ୯୨ ।
ତେଣୁ ଉଡ଼ିଲା ବିବୁଧ-ବୀଥିରେ(୬),
ସନ୍ଦେହ ତ ନ ତୁଟିଲା ଏଥିରେ । ୯୩ ।

---

(୧) କୀନାଶ—ଯମ (୨) ଅହଃ ପତି—ସୂର୍ଯ୍ୟ (୩) ବି—ପକ୍ଷୀ
(୪) କ୍ଷଣଦୃଶ—ବାନର ପରି (୫) ଲହୁ—ରକ୍ତ, ବସା—ମଜ୍ଜା
(୬) ବିବୁଧ ବୀଥିରେ—ଅକାଶରେ

ଅର୍ଯ୍ୟମାଜ(୧) କହେ କରି ପ୍ରଣତ,
ଅର୍ଯ୍ୟ ଶୁଣିବା ହେଉ ମୋ ବିନତ । ୯୪ ।
ସର୍ଜ୍ଜ(୨) ସପତ ସର୍ଜ୍ଜି ଅବ୍ଜଯୋନି,
ବୀର୍ଯ୍ୟ ବାଳିର କରି ସମ ବେନି । ୯୫ ।
ଧାର୍ଯ୍ୟ ହୋଇଛି ଅର୍ଦ୍ଧେକ ତନୁରେ,
କାର୍ଯ୍ୟ କରିବ ଯେ ବୀର ମଧ୍ୟରେ । ୯୬ ।
ଧୈର୍ଯ୍ୟ ଧରି ଯେ ଏକା ଶରକରେ,
ବର୍ଯ୍ୟ ତରୁ ଛେଦିବ ତାର କରେ । ୯୭ ।
ହର୍ଯ୍ୟକ୍ଷ-ଶତ ପରାକ୍ରମୀ ବାଳି,
ସୂର୍ଯ୍ୟସୁତ ପୁରକୁ ଯିବ ଚଳି । ୯୮ ।
ଭାରତୀ ଶୁଣି ରାମ ସୁଗ୍ରୀବର,
ଶରଧି(୩)ରୁ ବାଛିଲେ ଶରବର । ୯୯ ।
ଭେଦ ସପ୍ତାବ୍ରୁହ ଅଦ୍ରି କଣ୍ଟକୁ,
ଖେଦ ପାତାଳ ଅସିଲ ପାଖକୁ । ୧୦୦ ।
ବସ୍ତୁମଣି ବ୍ୟୁମଣି ପୁନମଣି,
ପାଣି ଯୋଡ଼ି ଭଣିଲ ସ୍ତବବାଣୀ । ୧୦୧ ।

ସ୍ତୁତି

ହରି ବିଭୁ ଭୂମା ଭୀମ ପ୍ରଭାବୀ,
ଭବ୍ୟ ଭୂ-ବ୍ୟାପୀ ପ୍ରେମେ ଭୀମ ଭାବ । ୧୦୨ ।
ବାମାଭବେ ବିଭବ ଭୁବ ଭ୍ରମ,
ପୂର୍ବ ବିଭବ ଭବ ଭବ ଭ୍ରମ । ୧୦୩ ।

---

(୧) ଅର୍ଯ୍ୟମାଜ—ସୂର୍ଯ୍ୟଙ୍କ ପୁତ୍ର (ସୁଗ୍ରୀବ) (୨) ସର୍ଜ୍ଜ—ଶାଳଗଛ
(୩) ଶରଧି—ତୂଣୀର (ଶରରଖିବା ମୁଣା) ।

୧୦୨ । ହରି ବିଭୁ (ନାରାୟଣ) ଭୂମା (ମହାନ୍) ଭୀମ (ଭୟଙ୍କର) ପ୍ରଭାବୀ (ଶକ୍ତିଶାଳୀ) ଭବ୍ୟ (ଉତ୍ତମ) ଭୂ-ବ୍ୟାପୀ (ପୃଥିବୀବ୍ୟାପୀ) ଭୀମ (ଶିବ) ଭାବ (ଭାବନା କର) ।

୧୦୩ । ବାମାଭବେ—ବାମା + ଅଭବେ (ସ୍ତ୍ରୀ ଅଭାବେ) ଭୁବ (ପୃଥ୍ୱୀ) ଭ୍ରମ (ଭୁଲ) ମୁଁ ପୂର୍ବ (ଅଗ) ବିଭବ (ସମ୍ପଦ) ଭବ ଭବ ମୁଁ ଭ୍ରାନ୍ତ ହେଲଣି ।

## ଦ୍ୱ୍ୟକ୍ଷରୀ

ରସା ସାର ସରସ ସାରସାସ୍ୟ,
ସୁର ସର ସଂସାରେ ସରସେ ରସ । ୧୦୪ ।
ସୁସାରେ ସୁରେଶାର୍ ଶାସ ଶ୍ରୀଶ ।
ସୁଶ୍ରୀ ଶଶିର ଶଶୀ ଶିର ଶଂସ୍ୟ । ୧୦୫ ।

## ମେଷଯୁକ୍ତ

ଦାଶରଥି ରଣର ଥିର ସଦା,
ଦାନ ଅର ନା ଯା ନାଥ ଅନନ୍ଦା । ୧୦୬ ।
ବକ୍ଷ ଖର ଦର ଦରଣ ଭୁବ,
ବିଦ ପରମ ଅମର ପଦବୀ । ୧୦୭ ।
ବର୍ଚ୍ଚ ରବି ସଦୃଶ ବୀର ଭବ,
ବହେ ରସାରେ ବାରେ ସାର ହେବ । ୧୦୮ ।
ବଦେ ଦେବା ହେବ ହେ ବାଦେ ଦେବ ।
ବହୁଛି କର-ଯୋଡ଼ିକ ଛୁ ହୁବ । ୧୦୯ ।

---

୧୦୪ । ରସା (ପୃଥିବୀ) ରେ ସାର (ଶ୍ରେଷ୍ଠ) ସରସ (ଉତ୍କୃଷ୍ଟ) ସାରସାସ୍ୟ (ପଦ୍ମମୁଖ) ସୁର (ଦେବତା) ସର (ସମାନ) ସଂସାରେ (ସରସକ୍ରୀଡ଼ାରେ ରସ) ।

୧୦୫ । ସୁସାରେ (ଉତ୍ତମରୂପେ) ସୁରେଶାର (ଅସୁର) ଶାସ (ଶାସନ କର) ଶ୍ରୀଶ (ଲକ୍ଷ୍ମୀପତି) ସୁଶ୍ରୀ (ଉତ୍ତମ ଶୋଭା) ଶଶିର ଶଶୀଶିର (ଶିବ) ଙ୍କ ସ୍ୱାମୀ, ଶଂସ୍ୟ (ପ୍ରଶଂସନୀୟ) ।

୧୦୬ । ଦାନ (ଛେଦନ) ଅର (ଶତ୍ରୁ) ନା (ନାମ) ଅପଣଙ୍କ ନାମ ଶତ୍ରୁ-ଛେଦନକାରୀ । ଅନନ୍ଦା (ଅନ୍ନଦାତ୍ରୀ) ଅର୍ଥାତ୍ ଲକ୍ଷ୍ମୀ ଯା ନାଥ ।

୧୦୭ । ବକ୍ଷ, ଖର, ଦରଦ (ଭୟଦାତା) ରଣ ଭୁବ (ସଂସାର) ବିଦ (ଚତୁର) ପରମ (ଉତ୍କୃଷ୍ଟ) ଅମର (ଦେବତା) ପଦବୀ (ଉପାଧି) ଅର୍ଥାତ୍ ଅପଣ ଦେବତା ଉପାଧି ପ୍ରାପ୍ତ ସେମାନଙ୍କ ମଧ୍ୟରେ ଚତୁର ଓ ଉତ୍କୃଷ୍ଟ ।

୧୦୮ । ବର୍ଚ୍ଚ (ତେଜ) ବହେ (ବହେ) ।

୧୦୯ । ବଦେ (କହେ) ବାଦରେ ମୋତେ ସଜ୍ୟ ଦେବା ହେବ । ମୁଁ କର-ଯୋଡ଼ିକ ବହୁଛି । ଅର୍ଥାତ୍ ହାତଯୋଡ଼ି କହୁଛି । ମୋର ହୃବଳୁଛି ।

ବନ୍ଧନ ବନରୁ ନବ ନହବ ।
ବଦ ସହସା ସୁସାହସ ଦବ । ୧୧୦ ।
ଗରବ ପୂରତ ରିପୁବରଗ,
ଗରସେ ନାଶିବେ ଯିନା ସେ ସ୍ୱଗ । ୧୧୧ ।

ଯୁଗ୍ମ କପାଟ ବନ୍ଧ

ରାମ ଶୀତଭାନୁ ମତ ବଦନ,
କାମଜିତ ତନୁ ଦ୍ୟୁତି ସଦନ । ୧୧୨ ।
ନାରାୟଣ କୁବଳୟ ନୟନ,
ପରାୟଣ କୁବଳୟ ଶୟନ । ୧୧୩ ।
ଶ୍ୟାମକାୟ ଚରାଚର ଶରଣ,
ପ୍ରେମମୟ ସୁରାସୁର ତାରଣ । ୧୧୪ ।
ସତ୍ୟ ଶିବ ଦେବ ବାସ ଅଙ୍ଗରେ ।
ଭୃତ୍ୟଭାବ ଯେବ ବସ ସଙ୍ଗରେ । ୧୧୫ ।

ଅନୁପ୍ରାସ

ସୁଧୀର ଧୁରନ୍ଧର ଧନୁର୍ଦ୍ଧର,
ଧରଣୀଧର ସୁରଙ୍ଗ ଅଧର । ୧୧୬ ।
ଅଯୋଧ୍ୟା ଦଣ୍ଡନାଦର୍ଶ-ନନ୍ଦନ ।
ଭବ ଦଣ୍ଡଧର ଦଣ୍ଡ-ଖଣ୍ଡନ । ୧୧୭ ।
ଧନନାଥ-କୁଳଜ ଧାନଙ୍କର,
ଦୈନ୍ୟଦାରଣ କରତା ଶ୍ରୀଧର । ୧୧୮ ।
ଶକ୍ତ ଶକ୍ତିଶାଳୀ ଶାନ୍ତଦାୟକ ।
ସତ୍ୟସନ୍ଧ ସାଧୁ ସୀତାନାୟକ, ୧୧୯ ।

ବନା ଓ ଅବନା

ରାମ ଶ୍ୟାମ କାମଜିତ ମୂରତ,
ଦେବଦେବ ନାମ ନିତ୍ୟ ଭାବନ୍ତ । ୧୨୦ ।

---

୧୧୦ । ବନ୍ଧନ (ଚଞ୍ଚଳ) ମୋତେ, ବନରୁ ନବ । ବଦ (ମନ୍ଦ) ନ ହେବ (ନ ହେବ) , ସହସା (ହଠାତ୍) ସୁ (ଉତ୍ତମ) ସାହସ (ଦୃଢ) ଦେଇ (ଦେବ) ।

ସବୁ ଘଟେ ରହିଛ ଦୀନନାଥ,
ତଚ୍ଛଲତା ଅଛ ଅଙ୍ଗେ ଯଥାର୍ଥ ।୧୨୧।
ଦେବରାଜ ସେବ୍ୟ ପୂର୍ବାଶାପରେ ।
ଜ୍ଞାନଚ୍ୟୁତ ମାନ୍ଦ ଜାତ ମର୍ତ୍ତ୍ୟରେ ।୧୨୨।

ବନା

ପତା ବାଣୀ ପାଳି ଭୁଲି ବିପିନେ,
ଶୋକାବ୍ଧିରେ ବୁଡ଼ି ବାମା ବହ୍ନିନେ । ୧୨୩ ।
ପାଶେ ଭ୍ରମେ ଯୋଡ଼ି ବେନି ପାଣିକି,
ଘେନିବା ହେଜ ମୋ ସୁତ-ବାଣୀକି । ୧୨୪ ।

ଲକ୍ଷିତଲକ୍ଷଣା

ପକ୍ଷୀ-ଚରଣେ କାନନରେ ସର୍ପ,
ତାଙ୍କଙ୍କ ନାଶିଲ ହସ୍ତୀର ଦର୍ପ । ୧୨୫ ।
ନାସାରେ ଅମ୍ବର ହେଲ ତାଙ୍କର,
ଛେଦନ କଲ କୁସ୍ତିତ କୁମର । ୧୨୬ ।
ଜନନୀ ବଂଶ ହରଷ ରଚନା,
ଶତ୍ରୁ-ପର୍ବତ ଶିବ ମୋ ଶୋଚନା । ୧୨୭ ।

---

୧୧୧ । ଗରବପୂରିତ (ଗର୍ବ-ପୂର୍ଣ୍ଣ) ରିପୁବର୍ଗେ (ଶତ୍ରୁମାନେ) ଗରସେ (ଗ୍ରାସ କରି) ଗର୍ବପୂରିତ ଶତ୍ରୁମାନେ ମୋତେ ଗ୍ରାସ କରି ନାଶିବେ କିନା ।

୧୧୩ । କୁବଳୟ (ନୀଳପଦ୍ମ) କୁ (ପୃଥିବୀ) ବଳୟ (ଅଳଙ୍କାର ବିଶେଷ) ପୃଥିବୀର ବଳୟ (ସମୁଦ୍ର) ।

୧୨୫ । ପକ୍ଷୀ (ବି) ଚରଣେ (ପଦେ) । ପକ୍ଷୀ ଚରଣେ (ବିପଦେ) । କାନନରେ (କନରେ) ଅର୍ଥାତ୍ ଜଳରେ । ସର୍ପ (ନାଗ) ଅର୍ଥାତ୍ ହସ୍ତୀ । ହସ୍ତୀ (କୁମ୍ଭୀ) ହସ୍ତୀର (କୁମ୍ଭୀର) ।

୧୨୬ । ନାସା (ନାକ) ଅର୍ଥାତ୍ ସ୍ୱର୍ଗ, ଅମ୍ବର (ବାସ) ହେଲ ଅର୍ଥାତ୍ ହସ୍ତୀ କୁମ୍ଭୀର ଦୁହେଁ ସ୍ୱର୍ଗରେ ବସିଲେ । ଛେଦନ (ଦାନ) କୁସ୍ତିତ (କୁ) ଅର୍ଥାତ୍ ପୃଥିବୀ, ପୃଥିବୀ-କୁମର ମଙ୍ଗଳ । ଅର୍ଥାତ୍ ମଙ୍ଗଳ ଦାନକଲ ।

୧୨୭ । ଜନନୀ (ଗୋ) ବଶ (କୁଳ) ହରଷ (ଅନନ୍ଦ) ଗୋକୁଳ ଅନନ୍ଦ, ଗୋକୁଳାନନ୍ଦ, ଶତ୍ରୁ (ଅରି) ଅର୍ଥାତ୍ ଚନ୍ଦ, ପର୍ବତ (ଧର) ଶିବ (ହର) ଅର୍ଥାତ ଚନ୍ଦଧର ମୋ ଶୋଚନା ହର ।

## ୨୩ଶ ଛାନ୍ଦ

### ରାଗ—କଲ୍ୟାଣ ଅହାରି

କୋବିଦବୃନ୍ଦରେ ପ୍ରମୋଦ ପ୍ରଦାନ କରି କି ନ ପାରେ ଏ ଛାନ୍ଦ ।
ହୃଦୟ-କନ୍ଦରୁ ପାପ-ଅନ୍ଧକାର ଛେଦନକରଣେ ଏ ଚନ୍ଦ୍ର ।
ପୟୋଜ-ପୟର ବିଷୟ ନିଶ୍ଚୟ
ଭବ-ଭୟଚୟ କ୍ଷୟ କରିବ ଏ ଲୟ ଦିଅ ଗୁଣୀନିଚୟ । ୧ ।

ପୁଲକ ଚିତ୍ତରେ ବୋଲନ୍ତି ଭୂଲୋକ-ପାଳକ ମିତ୍ର ବାଳକଙ୍କୁ
କାଳ ବିଳମ୍ବ ନ କର ମିତ୍ର କର ବାଳି ସଙ୍ଗେ ମଲ୍ଲଯୁଦ୍ଧକୁ ।
ତନୁଜୁ, ଲଗୁଡ଼ ଧରି ମୁଁ ଧନୁକୁ ।
କ୍ଷଣକରେ ବାଣକରେ ତାକୁ ନିଶ୍ଚେ ଭେଟାଇବି ଜନୁସଣକୁ । ୨ ।

ପରବଳେ ବଳୀ ହୋଇ ପରବଳେ ଚଳିଗଲେ ବାଳି ନିକଟେ
ସହାୟତା ବଳେ ବୃହଦ୍ବିହାୟସ୧ ଲଙ୍ଘିବା ଉପମା ପ୍ରକଟେ ।
ରୋଷରେ । ଶୈଳାଟଦ୍ୱାରେ୨ ପ୍ରବେଶିଲେ ।
ବୀରବେଶେ କରି ନ୍ୟାସି ଗାଣ-ଇଣ ଅସ ଅସ ଭାଷା ଭାଷିଲେ । ୩ ।

ଘନ ସମ ଘନ ଘନ ସ୍ୱନ କର୍ଣ୍ଣେ ଶୁଣି ଘନ-ଯାନ-ନନ୍ଦନ୩
ବଦନ କମ୍ପାଇ ସଦନୁ ବାହାରି ବାହାକୁ କରି ବିମର୍ଦ୍ଦନ
ମୋଦରେ । କ୍ରୋଧରେ ମାଇଲେ ବିଧାଏ ।
ଧରାଧରି ହୋଇ ଧସ୍ତ ଗଡ଼େ ଭଣ୍ଡ ମରାମରି ହେଲେ ଉଭୟେ । ୪ ।

ପବି୪ ଭଳି ବାଳି ବିଧାଏ ମାଇଲା ଦବିଗଲା ରବି-ଅଙ୍ଗଜ,
ଅବିଛବି୫ ବହୁ ରବ ରବ ଗଲା ସ୍ରବି ଯାଉଅଛି କ୍ଷତଜ
ଲୁହରେ । ରହିଲା କୋହରେ ମୋହରେ ।
ଚଳଦଳ୬ ପରି ଥରଇ ଶରୀର ଗିର ନ ସ୍ଫୁରଇ ମୁହଁରେ । ୫ ।

---

(୧) ବୃହଦ୍ବିହାୟସ—ଘରଚଟିଅ । "ପକ୍ଷ ପାଇଲେ ଘରଚଟିଅ ଯୁଝନ୍ତି ।"
(୨) ଶୈଳାଟଦ୍ୱାର—ସିଂହଦ୍ୱାର (୩) ଘନଯାନ-ନନ୍ଦନ—ଇନ୍ଦ୍ରପୁତ୍ର (ବାଳି
(୪) ପବି—ବଜ୍ର (୫) ଅବିଚ୍ଛବି—ମୃତ୍ତିକାକୁଣ୍ଡ (୬) ଚଳଦଳ—ଅଶ୍ୱତ୍ଥପତ୍ର

ସରିବକ୍ଷ କହେ ନ ମୁହିଁ ଜୀବନ ଲଭି ବହିବାର ଧିକ ଯେ
ପର ଅହବେ୧ ଅହବେ୨ ଯାହା ହେଲା ତାହା ମରଣୁ ଅଧିକ ଯେ
କାହିଁକି । ବାଧା ଦେଲି ବର ଯୋଦ୍ଧାକୁ
ମୂର୍ଖାକୁ ବାଧା ଦେଇ ସେ ସିଧା କଲା ଅମାପ୍ରାଣେ ନନ୍ଦେ ବେଧାକୁ ।୬

ଜାନକୀଭରତା ଜଗତଙ୍କରତା ଭରତାଗ୍ରଜ କାତରତା
ଦେଖି ଉଦାରତା ବହୁ ସୁଦାରତା ବକତା ବର୍ଜ ଅଧୀରତା
ସ୍ଥିରତା । ଭଜ ଦେଖ ମୋର ଶୂରତା
ମୋ ଶର ଖାସର ନୁହଇ ନାଶର ବାସର ଅସେ ଏ ଥର ତା ।୭।

ମିଳିତ ହେବାରେ କଳିତ ନ ହେଲା ବାଳି ତୁମ୍ଭେ ଏକାଭଳି ତ
ଗୃଳିବାକୁ ଶର ସତ ନ ବଳିଲା ତେଣୁ ମୁଁ ହୋଇଲି ଭୁଲିତ
ନ ଲୋଡ଼ । ବହୁ ଯାଇ ଥିବା ପାଣିକି
ଗଳାଣି ତ ଗଲା କଥା ମିତ ଚିନ୍ତା ଅଗକୁ ଉପାୟ ଏଣିକି ।୮।

ମୃତକଳ୍ପ ମିତ ଚିତ୍ତରେ ଅମୃତ ଦାନ୍ତ କଲେ ଭୃତ୍ୟବତ୍ସଳ
ପରଭୃତ-ସ୍ୱନେ୩ କୁଟଜ୪ ଗୁନ୍ଥିଲେ ବାତସୁତ ହାତେ ଚଞ୍ଚଳ
ସୁଗ୍ରୀବ । ସୁ-ଗ୍ରୀବାରେ ଦେଲେ ଲମ୍ବାଇ
ସଂକେତ ଏକ ପ୍ରଦାନ ସାକେତେଶ୫ ଅନ୍ତ ତରେ ଦେଲେ ପଠାଇ ।୯।

ବୁଅରେ ମିଳି,ତୁ ଅରେ । ବୋଲି ବାଳି ତୁହାଇ ଡୁହାଇ ଭୂପେ ଯେ
ଛାଡ଼ି ପ୍ରାଣ ଅଣ ବାସ ତେଜି ଅସ ବସ ବୈବସ୍ୱତ ପାଶେ ସେ
ବଦାପ୍ୟ । ଘେନି ଥାଅ ଚିର କାଳକୁ
ଏଥର ମୋ ହାତ ମୁଥର ଅଘାତ ନ ଲୋଡ଼ିଥାଇବ ଘରକୁ ।୧୦।

ନାଗେଶ୍ୱରସ୍ୱନେ ନାଗେଶ୍ୱର ଯେଣ୍ଡେ ଅବଳମ୍ବେ ଅସେ ବଳରୁ
ସୁଗ୍ରୀବର ଗିର ଶୁଣି ବୀରବର ତରତରେ ଅସେ ଗୃହରୁ
ତା ନାରୀ । ଧର କହେ କାନ୍ତ କରକୁ
ବାରଣ କରୁଛୁ ପରାଣ ଈଶ୍ୱର ମୋରାଣ ନ ଯାଅ ରଣକୁ ।୧୧।

---

(୧) ପରଅହବେ—ଅନ୍ୟର ସାହସରେ (୨) ଅହବେ—ଯୁଦ୍ଧରେ
(୩) ପରଭୃତ ସ୍ୱନେ—କୋଇଲି ସ୍ୱରରେ (୪) କୁଟଜ—ବନମଲ୍ଲୀ
(୫) ସାକେତେଶ—ଅଯୋଧ୍ୟାଧିପତି (ରାମଚନ୍ଦ୍ର)

କାଲି ଯେ ପାଲିରୁ ଚାଲି ଯାଇଥିଲା ମଲି ମଲି ବୋଲି ଡାକ ଯେ
ନ ଭଙ୍ଗ ସେ ପାଙ୍ଗ ଗର୍ଜି ଗର୍ଜି ଆଜି ଆଜିକୁ(୧) ଆସେ କାହିଁକି ଯେ
ଶୁଣୁଛୁ । ସାହା ତାକୁ ରଘୁନାହା ଯେ
ତାହାଙ୍କ ଆହବେ ସାହସ ବାନ୍ଧନ୍ତୁ ନ ଯାଅ ତା ପାଖେ ନାହା ଯେ ।୧୨।
ବାଳଣ ମୁଁ ନୁହେ ବଳୀଶ ବୋଲାଏ ବାଳୀଶ ନ ହୁଅ ଦ୍ୱିମନା
ଦାଶରଥି ଦାସରଥିର ସାରଥି(୨) ଧର୍ମପ୍ରାଣ ସାଧୁ ସୁମନା
ତାହାଙ୍କ । ତାପାଇଁ କରବେ ସମର
ହେଲେ ହେବ ପଛେ ଡର ନ ରହିବ ରହିବ କି ହୋଇ ଅମର ।୧୩
ଦୁଃଖିନୀ ନ ହୁଅ ଶଶୀମୁଖୀ ସଖୀ ଟେକ ରଖିବ ତାକୁ ଦେଖିବ
ଦ୍ୱୀପପର ଚାପି କୃତଘ୍ନ ପାପୀଙ୍କ ଗ୍ରୀବାରୁ ଶୋଣିତ ଚାଖିବ ।
ମୂର୍ଖଙ୍କ । ବଜାଇ ତା ମାଂସ ଭକ୍ଷିବ ।
ପକ୍ଷୀବ୍ରଜ ସଙ୍ଗେ ସମାନ ହେବାକୁ ମର୍ଷିକାକୁ କପାଁ ଲେଖିବ ।୧୪।
ତୁହାର ହୁଅନା ମୁଁ ହାରବ ନାହିଁ ସଂହାର ବାହାର ଆସିବ
କୁହାର ଇଷ୍ଟଙ୍କୁ ବାହାସି ମାର୍ଗରେ ପ୍ରହାରିଲା ମୁଥେ ପ୍ରଭାବୀ
ସୁଗ୍ରୀବ । ବ୍ୟସ୍ତରେ ହସ୍ତରେ ପାଦପେ ।
ଧର ବାସ୍ତୋପତ-ସୁତ ଅସ୍ତ୍ରପାଇଁ ମସ୍ତକେ ପିଟିଲା ସଦର୍ପେ ।୧୫।
ମୂଷାକୁ ମାର୍ଜାର ସଦୃଶ ସୁଗ୍ରୀବ ଉପରେ ବସିଲା ବାଳି ଯେ
ପାଳି ପଡ଼ିବାର ବେଳକାଳ ବାର ରାମ ଶର ଦେଲେ ଚାଳି ଯେ
ଉଦ୍ଧୁର । ପର ପ୍ରପତତ ପ୍ରତାକେ
ଭୀମ ରଡ଼ି ଛାଡ଼ି ଛିନ୍ନ ଦ୍ରୁମସମ ବୀରପତ ଗଲା କ୍ଷଣକେ ।୧୬।
ମରଣ ଆସନ୍ନ ଦେଖି ଶରାସନ କାନ୍ଧେ ବହି ପୀତବସନ
ପ୍ରସନ୍ନ ମନରେ ପାଶେ ପ୍ରବେଶନ୍ତେ ପାକଶାସନଜ ପ୍ରଶନ
କରଇ । ଘର କେଉଁଠାରେ ତୁମର ।
ପରତେ ନୁହଇ ପରପାଇଁ କ୍ଷମା ଜୀବନ ହରଇ ମୋହର ।୧୭।
ବଦନ୍ତି ରାମ ଅଯୋଧ୍ୟା ଆମ ଗ୍ରାମ ନାମ ରାଘବ ଦାଶରଥି
ପିତା ସତ୍ୟ ପାଳି ବନକୁ ଆସିଲୁଁ ସଙ୍ଗେ ସହୋଦର ଯୁବତୀ
ସ୍ନେହରେ । ଗୋଡ଼ାଇ ଆସିଲେ, ଜାୟାକୁ
ପଞ୍ଚବଟୀରୁ କେ ଦେନଗଲା ଆମ୍ଭେ ଯାଇଥିଲୁଁ ତ ମୃଗୟାକୁ ।୧୮।

---

(୧) ଆଜିକୁ—ଯୁଦ୍ଧକୁ (୨) ଦାସରଥିର ସାରଥି—ଭୃତ୍ୟବତ୍ସଳ ଓ ସହାୟକ

ତାଙ୍କୁ ଅନ୍ୱେଷଣ କରୁଁ ଏ ପୂଷଣପୁତଙ୍କୁ ଦେଖିଲୁଁ ଗ୍ରାବରେ୧
ମିତ୍ର ହେଲୁଁ ସବ ପୂର୍ବର ଖବର କହିଲେ ଶୁଣିଲୁଁ ଶ୍ରବରେ ୨
ପ୍ରଭଞ୍ଜ । କଲେ ସେ ଖୋଜିବେ ସୀତାଙ୍କୁ
ମିତଙ୍କ ହିତ ନମିତ୍ତ ହତ କରି ତବ ସ୍ୱକଣ୍ଠୁ ଦେଲୁଁ ତାଙ୍କୁ । ୧୯ ।

ବାଳି ଶ୍ରେଷେ ଜଳ କହେ ଅଂଶୁମାଳି-କୁଳେ ଜନ୍ମି ବଳୀ-ଅବଳ୩
ଯାଉଛନ୍ତି ଚଳି ମାନ ତୁମ୍ଭଭଳି ଲଗାଇ ନ ଥିଲେ କେ କାଳି ।
ଶବର । ସ୍ୱଭାବ ଅଟଇ ତୁମ୍ଭର
ଶବର ଅବସ୍ଥା ପ୍ରାପ୍ତ ଅବଶ୍ୟ ହେବାରେ ଜାଣିଲି ଖବର । ୨୦ ।

ସମ୍ମୁଖ ରଣରେ ମରଣ ଲଭନ୍ତି ନ ବାହୁଡ଼ନ୍ତି ଅଯୋଧ୍ୟାକୁ
ଏ କାର୍ଯ୍ୟ ନିତାନ୍ତ କଦର୍ଯ୍ୟ କେବଳ ବର୍ଯ୍ୟ ଅଟଇ ଅଯୋଦ୍ଧାକୁ
ଆପଣ । ଏ ପଣରେ କ୍ଷମା ମାଗିଲେ
ମୋ ପ୍ରାଣଧନ ହରଣ କରିବାକୁ କୃପଣତାକୁ ନ ବର୍ଜିଲେ ।୨୧।

ଜାଣିଲ ପରି ଏ ବାଣୀ ପାଣି ଧରି ଭଣିଥିଲ ମୋର ରମଣୀ
ମୁଁ ବଖାଣିଲି ସେ ଗୁଣୀ-ଗଣାଗ୍ରଣୀ ପବନ ପ୍ରାଣୀ-ଶିରୋମଣି
ଦ୍ୟୁମଣି—ଠାରେ ରହିବ କି କଳଙ୍କ
ତଦ୍‌ବଂଶାବତଂସ୪ ନିଦଶାଂଶ-ବର୍ଷ୍ମେ୫ କାହିଁକି ଲଗାଇବେ ଅଙ୍କ୬ ।

ବଦତି ରାଘବ ଯା କହିଲ ସର୍ବ ଅଛିତାର ପରିଶ୍ରୟକ
ଦୁଷ୍ଟନିବାରଣ ଅର୍ଥେ ମର୍ତ୍ତ୍ୟେ ଜାତ ଅମ୍ଭେ ବଇକୁଣ୍ଠନାୟକ
ଭକ୍ତଙ୍କ—ରକ୍ଷକ ଅଭୟଦାୟକ
ଅଧର୍ମୀ କପଟୀ ପାପୀ ଦୁରାଚାର ବିନାଶନେ ଧରୁଁ ଶାୟକ୭ ।୨୩।

ଘନିଷ୍ଠ ସମ୍ପର୍କ ତୁଟାଇ କନିଷ୍ଠ ଭ୍ରାତାର ଅନିଷ୍ଟ କରିଛ
ଜ୍ୟେଷ୍ଠ ସହୋଦର ହୋଇ ଭ୍ରାତୃବଧୂ କେଉଁ ନ୍ୟାୟବଳେ ହରିଛ
ତୁମ୍ଭେ ତ । ଗରିଷ୍ଠ ପାତକୀ ହୋଇଛ
ଅଦୃଷ୍ଟ-ଅଶ୍ରୁତପୂର୍ବ ବ୍ୟାପାରକୁ ନିଜ ଅଦୃଷ୍ଟରେ ଥୋଇଛ ।୨୪।

---

(୧) ଗ୍ରାବ—ପର୍ବତ, (୨) ଶ୍ରବ—କର୍ଣ୍ଣ, (୩) ଅବଳ—ସମୂହ
(୪) ଅବତଂସ—ଅଳଙ୍କାର, ମୁକୁଟ (୫) ବର୍ଷ୍ମ—ଶରୀର
(୬) ଅଙ୍କ—କଳଙ୍କ (୭) ଶାୟକ—ଶର

ବିଶେଷେ ଅମ୍ଭେ ତ ନରେଶ ଅମ୍ଭର ମୃଗୟା ପ୍ରଧାନ କରିବ୍ୟ
ତୁମ୍ଭେ ବନ୍ୟ ପ୍ରାଣୀ ଶାଖା-ମୃଗଶ୍ରେଣୀ ଏ ଦୋଷ ନୁହଇ ଧରିବ୍ୟ
ମୁଖର-ପ୍ରକୃତ ଭୂଷଣ ମୂର୍ଖର
ବ୍ୟଥାରେ ଅଯଥା କଥା କହୁ ସ୍ୱମଥାରୁ ଦୋଷ କର ଅନ୍ତର ।୨୬।

ବାଳିର ନିଧନ ଶୁଣି ତା'ର ବାଳୀ ବୋବାଳି ପକାଇ ବାହାର
କେଶ ବାସ ଅସମ୍ଭାଳ ବେଶ ନାଶ କ୍ଲେଶ ଶ୍ଳେଷ ହୃଦେ ବିହାର
ବେଦନ । କଲେ ତେଦା ଗୃଢବଦନ
ତଳେ ପଡ଼ି ଗଡ଼ି ରଡ଼ି ଝଡ଼୍‌ଚୂଡ଼ୀ ଭୋଡ଼ି ଲଭେ ମହା କଦନ୧ ।୨।

କୁସୁମ-ଚନ୍ଦନ-ଭୂଷଣଶରୀର ଏବେ ଧୂଳିରେ ଧୂସରିତ
ତୁଳୀତଳ୍ପ କଳ୍ପ କଳ୍ପ କି ଧରଣୀ ଶୟନ ନୁହଇ ଉଚିତ
ଅଙ୍କରେ । ବସ ହେ ରଙ୍କିଣୀରତନ
ଧବ ବିନା ନବନବୀନାଙ୍କ ଜୀବ ରହିବା ନୁହଇ ବିଧାନ ।୨୮।

ବିଗ୍ରହେ୨ ଅଗ୍ରହ ବଢ଼ାଇ ବିଗ୍ରହ୩ ତେଜି ଭୁଞ୍ଜିଲ ଏ ନିଗ୍ରହ ୪
ପୂର୍ବ ଅନୁଗ୍ରହ ମୋଠାରୁ କୁଗ୍ରହବଳେ ଚ୍ୟୁତ ହେଲା ଏ ଦେହ
ନାଥ ହେ, ବହିବାର କେଉଁ କାରଣ
ବହୁଗଲଣି ମୋ ସୁଖ-ତୋୟଚୟ ସହିବ କାହିଁକ କଷଣ ।୨୯।

କୀଶ-ପଞ୍ଚାନନ୫ ବୋଲାଅ ଶଠକ ସଦୃଶ ସୁଗ୍ରୀବ ହୋଇଲା
କପଟେ ବିପଦ ସ୍ୱରୂପ-କୂପରେ ପ୍ରପତନ କରି ରହିଲା
ପାମର, ସମରେ ତ ସମ ନୋହିଲା
ବଂଶ ପର ପରାଭୟ କରି ନିଜ ବଂଶ ବିନାଶ କରାଇଲା ।୩୦।

କପିକୁଳ-ତାରାପତି ତାରାପତି ଶୁଣି ବନିତାର ବିଳାପ
ଚେତା ପ୍ରାପ୍ତ ହୋଇ ଗୃହିଁଲା ବନିତା ଭ୍ରାତା ସୁତ ବିଜେ ସମୀପ
କହିଲା । ରାମଙ୍କ କାମକୁ ବିଧିରେ
ସାଧିବ ଅଧୀର ହେଲଣି ପରାଣ ଗଲ ବୈକୁଣ୍ଠ ସନ୍ନିଧିରେ ।୩୧।

---

(୧) କଦନ—କ୍ଲେଶ
(୨) ବିଗ୍ରହେ—ଯୁଦ୍ଧରେ (୩) ବିଗ୍ରହ—ବିଶେଷ ରୂପେ ଗ୍ରହଣ
(୪) ନିଗ୍ରହ—ଦଣ୍ଡ (୫) କୀଶ ପଞ୍ଚାନନ—ମର୍କଟ ଶ୍ରେଷ୍ଠ

କ୍ରୋଧରେ ଅଧର କମ୍ପାଇ ଭୂଧର-ଜରଜା କହୁଛି ହେ ରାମ,
ବିନା ଯୁଦ୍ଧରେ ମୋ ଧବ ବଧ କଲ ନୁହନ୍ତି ତୁମ୍ଭର ସେ ବାମ୧
ସେ ଘେନ । ତୁଅ ତୁମ୍ଭେ ଅଭିଶପ୍ତ ଯେ
ଯେଉଁ ସୀତା ଲାଗି ଏହୁ କର୍ମ କଲ ସେ ନୋହୁ ତୁମ୍ଭଙ୍କୁ ପ୍ରାପ୍ତ ଯେ ।୩୨।
ଅରୁଣ-ଚରଣ କରୁଣକଣ୍ଠରେ କହିଲେ ଶୁଣରେ ସାଧବୀ
ତାଯ୍ୟା ବିନା ତାଯ୍ୟା ଧବ ନ ପାର ଦୟା କର ବାଳି-ବାନ୍ଧବୀ
କୋପନା । କୋପନା ଶାପକୁ ଅର୍ପନା
ସୀତା ପ୍ରାପ୍ତ ପରେ ଶେଷକୁ ବିଚ୍ଛେଦ ଘଟିବ ଭାଷିଲି ସୁମନା । ୩୩ ।
କ୍ରନ୍ଦନରୁ କ୍ଷାନ୍ତ ହୋଇ ସମ୍ପାଦନ କଲେ ସେ ଚନ୍ଦନ-ଇନ୍ଧନ
ସର୍ବ ପ୍ଳବଗ୨ ଶବକୁ କନ୍ଧେ ନେଇ ପିତୃବନେ୩ କଲେ ଦହନ
ସୁଗ୍ରୀବ । ପ୍ରାପ୍ତ ହେଲା ରାଜପଦ ଯେ—
ପ୍ରସ୍ରବଣ ପର୍ବତରେ ରାମ ବିଜେ କହଇ ଗୋକୁଳାନନ୍ଦ ଯେ ।୩୪ ।

---

## ୨୪ଶ ଛାନ୍ଦ

### ( ଯଥାରାଗ )

ଗିରୀପମ ହରସମ ଧରନୀର ଛିଗ୍ଧ ହରଣ ହର୪ ଗୁପତ,
ସୃଷ୍ଟି ନାଶ ଦୃଷ୍ଟି କର ବୃଷ୍ଟି ରଣେ ତଡ଼ଦେଇଲି ଅବା ପୁରୁହୂତ୫
ଗୁହ ବାରିଧର୬ ।
ସେନାସମ ଶର ନୀରଧାର । ୧ ।
ଘନ ଘନ ଘନ ଗରଜନ ସୈନ୍ୟ ସ୍ୱନ ବର୍ଷୋପଳ୭ ଗୁଳି ଭଳି,
ବିକାଳ ଉଷ୍ଣୀଷ୮ ଇନ୍ଦ୍ରଗୋପ୯ ବର୍ଣ ରକ୍ତ ବିଦ୍ୟୁଦ୍ରଥ ଧ୍ୱଜ ଝଳି ।
ରୌଦ୍ର ଭଷ୍ମ ବାତ ।
ବିପକ୍ଷ ପକ୍ଷର ସୈନ୍ୟ ହତ । ୨ ।

---

(୧) ବାମ—ବିପକ୍ଷ (୨) ପ୍ଳବଗ—ମର୍କଟ । (୩) ପିତୃବନେ—ଶ୍ମଶାନରେ ।
(୪) ହର—ସୂର୍ଯ୍ୟ । (୫) ପୁରୁହୂତ—ଇନ୍ଦ୍ର ।
(୬) ଗୁହବାରି ଧର—ପୁଷ୍କର, ସମ୍ବର୍ତ୍ତିକ, ଅବର୍ତ୍ତକ, ଦ୍ରୋଣନାମା
ଗୁହ ମେଘ । (୭) ବର୍ଷୋପଳ—କୁଆପଥର (୮) ଉଷ୍ଣୀଷ—ମୁକୁଟ ବା ପଗଡ଼ି
(୯) ଇନ୍ଦ୍ରଗୋପ—ସାଧବାଣୀ ପୋକ

ଜ୍ୟାଭୃତ ଜ୍ୟାଭୃତ୧ ସଦୃଶ ଶୋଭିତ ଶୁଭ୍ର ଭ୍ରୂ ମୁକୁଟ ଶିରେ ଯୁକ୍ତ,
ବରହୀ ଦମ୍ଭ ବରହୀର ହେତୁହିଁ ସ୍ୱଚ୍ଛ ପୁଚ୍ଛ ଟେକି କରେ ନୃତ୍ୟ ।
ଗୃଳେ ବ୍ୟଜନ କି ?
ଦେଖ କା ରବେ ଧଏ କାହାଳଙ୍କ । ୩ ।
ଦର୍ଦ୍ଦୁରବଳ ଦଅନ୍ତି ହୁଳହୁଳ ଦାତ୍ୟୂହବ୍ୟୂହ୨ ବଜାନ୍ତି ବାଜା
ବାହାର ପ୍ରହରୀ୩ ଋକ୍ଷ୪ ବ୍ୟାଘ୍ର ହର ଗୃହସ୍ଥ ପ୍ରାଣୀଙ୍କି ଦେଲେ ସଜା
ଅତପତ୍ର୫ ସମ ।
ହଳୀପ୍ରିୟ ସୁମ ମନୋରମ । ୪ ।
ନଦୀବୃଦ୍ଧି ହୋଇ ସାଧୁଙ୍କ ଅହିତ ଭସାଇ ଭବନ ଜୀବଗଣ
ନିର୍ଦ୍ଧନ ଜନ ଧନ ପ୍ରାପତ ହେଲେ କରେ ଏହିପରି ଆଚରଣ
ଅନ୍ୟ ଦୁର୍ବିଗ୍ରହ ।
ଯେସନ କରେ ପର ଅତ୍ୟାଗ୍ରହ । ୫ ।
ଖାଲଠାଇ ବିଲ କ୍ଷୁଦ୍ରତମ ସର ସର୍ବ ପୂରିତ ହେଲା ଜଳ
ଦେଖାନ୍ତି ବଢ଼ିମା ଯଥା ପୌଷମାସେ ସ୍ୱଳ୍ପ ଧାନ୍ୟେ ଶ୍ରମଜୀବୀଦଳ
ପଥ ପଙ୍କମୟ ।
ଏତାଦୃଶ କପଟୀ ହୃଦୟ । ୬ ।
ନୀଳ ବଳାହକେ୬ ବଳାସିତଗୃପ୭ ଶୋଭିତ ସବୃତା ସମ୍ମୁଖରେ
ହୁଅଇ ପ୍ରତୀତ କି ଅବା ସଂଯୁକ୍ତ ବନମାଳା ଶ୍ରୀକୃଷ୍ଣ ବକ୍ଷରେ
ପିକ ହେଲେ ମୂକ ।
ଶାମୁକ ସକଳ ବାବଦୂକ । ୭ ।
ଅଶାରେ୮ ଅସାର୯ ଦର୍ଶନେ ଚଷାର ଅଶାର ବିସ୍ତାର ଅତିଶୟ
ଅବ୍ୟବସ୍ଥିତଚେତାଙ୍କୁ ଉପଦେଶ ଦେବା ନ୍ୟାୟ ଠାଙ୍ଗି ତୃଣମୟ
ଫୁଲ ନାନା ଜାତି ।
ପ୍ରସ୍ଫୁଟିତ ଚମ୍ପା ଯୂଥୀ ଜାତି । ୮ ।

---

(୧) ଜ୍ୟାଭୃତ—ଟେକିଉ, ଧନୁ (୨) ଦାତ୍ୟୂହବ୍ୟୂହ—ଡାହୁକସମୂହ
(୩) ପ୍ରହରୀ—ଚୌକିଦାର (୪) ଋକ୍ଷ—ଭାଲୁ
(୫) ଅତପତ୍ର—ଛତ (୬) ନୀଳବଳାହକ—ବର୍ଷୁକ ମେଘ
(୭) ବଳାସିତଗୃପ—ଇନ୍ଦ୍ରଧନୁ (୮) ଅଶାରେ—ଦିଗମାନଙ୍କରେ
(୯) ଅଶାର—ବୃଷ୍ଟିପାତ

ପଞ୍ଚବସ୍ତୁ ପରଧାନ ପଯୃପାନ ପାବୁକା ପୁରାଣାଦ ପଠନ
ନାଟେକ ସଦନ ଶୟନରେ ମନ ବଳାଇଲେ ଧନବାନ ଜନ ।
ବିଭୁଙ୍ଗାନ ନରେ ।
ଏ ବିଣ ସେ ବିଣ ଭବନରେ । ୯ ।

ଦାନ୍ତା ବିଚ୍ଛେଦରେ ଚିନ୍ତାଯୁକ୍ତ ହୋଇ ଏକା ରଘୁନାଥ ଏ କାଳରେ
ଦୈବିଶ୍ରବଣ ଦଉ ଦଶା ଦାରଣାର୍ଥେ[୧] ବସି ପ୍ରସ୍ରବଣ ଶଇଳରେ ।
ଭାବ ଭାବନାର ।
ଗୁଣ ନିରନ୍ତର ବହେ ନୀର । ୧୦ ।

ଘୃମରଚିଭୁର ଚମ୍ପା ଗୃମୀକର[୨] ଗୋରୀ ଚନ୍ଦ୍ରବଦନମୋହିନୀ
ଘୁବ ଚତୁର୍ଗୁଣବୟସୀ ଚତୁରୀ ଚଞ୍ଚଳେକ୍ଷଣା ଗୃହ୍ୱହାସିନୀ
ଗୃହେଁ ଚମକିବ ।
ଚପଳେ ଶଉ୍ ଚୈତନ୍ୟ ଯିବ ।୧୧ ।

ଛଇପର ଥିଲ ଘୁଞ୍ଜିଗଲ ଦନୁ ଛଇଳରତନ ସହସେ
ଛନାଛନ ମତ ଘୁତ ହୁଏ କର୍ତ୍ତ ଛୁରୀ ଘୁର ଦାଢ଼ ନୁହେ ସର ।
ଛନ୍ଦ କଲ ବହୁ ।
ଛଟକେ ଛଡ଼ାଇ ନେଲ ସଙ୍ଗୀ । ୧୨ ।

ଧାରାଧର ଧ୍ୱନି ଶୁଣି ଧରଣୀଜା ଧୃତ ଧରି ନ ପାରବ କ୍ଷଣେ
ଧମକାଉଥିବେ ଜାହ୍ନି ରକ୍ଷୀଗଣ ଧ୍ୟାନ ରଖିଥିବ ମୋ ଚରଣେ
ଧନୀ ହେଲ ଦୂର ।
ଧାନୁଷ୍କ[୩] ପଣକୁ ଧିକ ମୋର । ୧୩ ।

ବକ ବାକ୍ୟଦ ବିବେଙ୍କିବର ବଡ଼ ବ୍ୟସ୍ତେ କହୁଛ ବନିତାବାଣୀ
ବିହାୟସବର୍ତ୍ତ୍ମେ[୪] ବସାଇଣ ରଥେ ଅବଳାକୁ ନେଲ ବିଂଶପାଣି
ବହିବା ଶ୍ଲେଚଭ ।
ବପୁରେ ପଡ଼ି ବଳକ୍ଷ[୫] ପକ୍ଷ । ୧୪ ।

---

(୧) ଦାରଣାର୍ଥ—ଛେଦନ କାମନା (୨) ଗୃମୀକର—ସ୍ୱର୍ଣ୍ଣ
(୩) ଧାନୁଷ୍କ—ଧନୁର୍ଦ୍ଧର (୪) ବିହାୟସବର୍ତ୍ମେ—ଆକାଶ ମାର୍ଗରେ
(୫) ବଳକ୍ଷ—ଶୁକ୍ଳ

ବାରିଦବକ୍ଷରେ ବିଦ୍ୟୁତବନିତା ବିଶେଷ ସୁଷମା ବହୁଥିଲା
ବୈଦେହୀ ବସୁଧା-ଜେମା ଶ୍ୟାମ ଶ୍ୟାମା ବିମନେ ବିମାନେ ବହୁଥିଲେ
ବରଙ୍କ ନିଷ୍ଠୁର ।
ବାଞ୍ଛା ଦେବ ବନ୍ୟ ପ୍ରାଣୀଚୟ । ୧୫ ।

ବୀଣାର ନିଃସ୍ୱନ ହେବାରୁ ନିଉନ ବାଣୀ କି ବାଣୀର ଦାମ୍ଭିକେ
ବସି ବଡ଼ ଉଚ୍ଚେ ବିଳାପ ସ୍ୱରରେ ବାଦନ ଛଳରେ ସପ୍ତସ୍ୱରେ
ବନପ୍ରିୟ ବନେ ।
ବିହରେ ବର୍ଷାରେ ସ୍ୱର ଭଙ୍ଗେ । ୧୬ ।

ଶୁଦ୍ଧା ସୁଧା ସୁଦ୍ଧା ବସୁଧାରେ ବାସ ନ କରି ନାକରେ ଗୁପ୍ତ ହେଲା
ବଦନେ ବିଷପ୍ରସୂନ[୧] ସମ ନୋହୁ ବାରରେ ବିରସେ ଝାସ ଦେଲା
ବଧୂ ବାମଦେବେ ।
ଭବେ ସେବେ ଭାବେ ବର ଦେବେ । ୧୭ ।

ଚନ୍ଦ୍ର ବୃହଦବସ୍ତୁର ହୁଅଇ ଶୂନ୍ୟମୂର୍ତ୍ତି ଏକା ନାମ ଭିନ୍ନ
ଜ୍ୟାମିତି ଗଣିତ ବର୍ଣ୍ଣମାଳାରେ ତ ସଂସ୍କୃତରେ ବିନ୍ଦୁ ଶୂନ୍ୟଙ୍କ
ଦରପଣ ଦାସ ।
ପଣେ ସେବାକଲା ବାଳାପାଣ । ୧୮ ।

ନୟନେ ନଳିନ ନ ହୋଇ ସମାନ ନିରନ୍ତର ନୀରରେ ନିବାସ
କୃପାରେ ଖଞ୍ଜନ ହେଲା କୃଷ୍ଣ ବର୍ଣ୍ଣ ଅକାର ଅଦ୍ୟରେ ଦେଲା ଝସ[୨]
ଶଣ ପୁଷ୍ପଦଣ୍ଡ[୩] ।
ବହିଲା ନୋହିଲା ସମ ଲେଶ । ୧୯ ।

---

୧୮ । ମୁଖରୁ ସମାନ ନ ହୋଇ ସାନ ବଡ଼ ହୋଇ ଏକାକାର ଶୂନ୍ୟମୂର୍ତ୍ତି ହୁଏ କେବଳ ନାମ ପୃଥକ୍ । ଯଥା—ଜ୍ୟାମିତରେ ବିନ୍ଦୁ । ଗଣିତରେ ଶୂନ୍ୟ । ବର୍ଣ୍ଣମାଳାରେ ୦ ସଂସ୍କୃତରେ ଅନୁସ୍ୱାର ।

(୧) ବିଷପ୍ରସୂନ—ପଦ୍ମ, (୨) ଝସ—ମୀନ (ସୀତାଙ୍କର ଚକ୍ଷୁ ସହିତ ସମାନ ନ ହୋଇ 'ଝସ' ଯେ ମୀନ 'ଝ'ର ଅଦ୍ୟରେ ଅକାର ଦେଲା, ଅର୍ଥାତ୍ ପାଣିରେ ଝାସ ଦେଲା) । (୩) ପୁଷ୍ପଦଣ୍ଡ—ଚାପ

ତରୁଣୀ ଅଧରେ ସମ ନ ହେବାରୁ ଅରୁଣ ଗୃଳେ ତରଣୀ ବାରୁ ୧
ରକ୍ତଚ୍ଛବି କ୍ଷଣସ୍ଥାୟୀ କଲେ ରବି ନବୀନା ଓଷ୍ଠକୁ ଦବିବାରୁ
ଯବ ମାତ୍ର ସମ ।
ନୋହୁ ଖ୍ୟାତ କଲ୍ଲ ଜବାନାମ ।୨୦।

ଦଶନେ କଣ୍ଡିମା ହରାଇ ଦାଡ଼ିମ ଜର କୋଡ଼ ହୋଇ ଫଟେ ତଳେ
ପରାଜୟ ପାଇ ମୌକ୍ତିକ ଶାମୁକ ଉଦରେ ଗୁପ୍ତ ଗଭୀର ଜଳେ
ସ୍ୱନାମକୁ କୁନ୍ଦ ।
କହେ ହେବ ନଷ୍ଟେଁ ବଦ ବଦ ।୨୧।

ଗ୍ରୀବକ ହାରକ ହେବାରୁ କରକୁ ଦଏ ଲମ୍ବଦର ପରିଚୟ
ଆନନ ବ୍ୟତୀତ ଅନ ଅବୟବେ ପଡ଼ନାହିଁ ମୋର ନେତ୍ରଦ୍ୱୟ
ବର୍ଣ୍ଣେ ଅନଧିକ ।
ଚମ୍ପା ଶମ୍ପା ଶୋକ, କନକ ।୨୨।

କଙ୍କ୨ କହନ୍ତେ ଅହସ୍ତବଂଶଜ ବହନ ବରଦ କହେ ପତ୍ରୀ୩
କୁଳଚଳ ନ କରବ ପ୍ରାବୃଟରେ କୁଳାୟେ୪ ଅଧାର ହେଉ ପ୍ରାପ୍ତି
ସମା ଦେବ ଅଣ୍ଡି ।
ତାମରସଗାନ ସମ ଭଣ୍ଡି ।୨୩।

ବାମାଗୁଣ ଗୁଣି ବିଭ୍ରମୁ ବିପିନେ ଶୋକ ଦେଖି କୃକବାକ୫ କହେ
ସକଳ ସୌନ୍ଦର୍ଯ୍ୟ-ସଦନ ସୁନ୍ଦରୀ ଶଶାଙ୍କବଦନୀ ବନିତାଏ
ସୁରବର୍ତ୍ମ ପଥେ
ଶୋକାକୁଳେ ଯାଉଥିଲେ ରଥେ ।୨୪।

ଅବଳା ବଳାସ୍ତକ ବଳାତ୍କାରେ ନେଉଥିବା ହେଲା ଅନୁମିତ
ଦକ୍ଷିଣ କକୁଭେ ଯାତ୍ରା କରିଅଛି ହେବ ସମ୍ଭବ ସେ ତବ ମିତ
ତୁମ୍ଭେ ଅନମିଳ ।
ଶୋକ କରିବାର ଅନୁଚିତ । ୨୫ ।

---

(୧) ବାରୁ—ଘୋଟକ (୨) କଙ୍କ—ବକ (୩) ପତ୍ରୀ—ପକ୍ଷୀ
(୪) କୁଳାୟ—ନୀଡ଼ (ପକ୍ଷୀମାନଙ୍କ ବସା) (୫) କୃକବାକ କୁକ୍କୁଟ

ମହିଳା ସନ୍ଦେଶ ପାଇ ମହାତୋଷୋ ବରଦ ହେଲେ ମୈଥିଳୀବର
ମହାରଜତ ବର୍ଣ୍ଣ ଚର୍ମମୁକୁଟ ମସ୍ତକେ ମଣ୍ଡନ ହେଉ ତୋର
ବିହଙ୍ଗମବୀର ।
ବୋଲଇବୁ ବ୍ୟର୍ଥ ନୋହୁ ଗିର । ୨୬ ।
ଶରଦ ନୀରଦ ଗଲୁ ଘରେ ନେଲ ସରନୀର ସରସତା ପ୍ରାପ୍ତ
ଭାନୁତନୁଜ ଜାନନ୍ତୁ ଗନ୍ଧଦନ୍ତୁ ନ ଜଗ ସାକ୍ଷାତ ମୋ ସହିତ
ଯାଇଛନ୍ତି ଲକ୍ଷ୍ମଣ ।
ଧନ ପାଇ କଲ ବିସ୍ମରଣ । ୨୭ ।
ସୋଦର ବିଦୁର ଭଦୁର(୧) ପତନଠାରୁ ଶ୍ରୀ ରାମଙ୍କ ଗଲ ବଳ
ବିଚ୍ଛେଦ ବିଚ୍ଛେଦ କଲ ଧୈର୍ଯ୍ୟ-ଦ୍ରୁମ ଗୁଣିଲେ ତରୁଣୀ ଗୁଣାବଳି
ଅଷ୍ଟାବିଂଶ ପାଦ ।
ରଚିଲ ଗୋକୁଳାନନ୍ଦ ଛାନ୍ଦ । ୨୮ ।

---

୨୪ଶ ଛାନ୍ଦ

ରାଗ-ମଙ୍ଗଳ

ସଙ୍ଖ୍ୟାବାନ(୨) ଏ ଅଖ୍ୟାନ ଶୁଣ ଦେଇ ମନ
ବିଖ୍ୟାତ ରାମଚରିତ ଅମୃତ ସମାନ । ୧
କପିଧର-କଣ୍ଠୀରବଦ୍ୱାରେ ସଉମିତ୍ରି
ଖରବରକୁ ନବରକୁ ପେଷିଲେ ସ୍ଫୁଟିତ । ୨
ଦୌବାରିକ ସୁଗ୍ରୀବଙ୍କ ଅଗ୍ରତରେ କହି
ଲକ୍ଷଣବନ୍ତ ଲକ୍ଷ୍ମଣ ଦ୍ୱାରେ ଛନ୍ତି ରହି । ୨ ।
ହଂସସୁତ(୩) ହସଯୁକ୍ତ ମୁଖେ ତାକୁ ଗୃହି
କହିଲ କେଉଁ ଲକ୍ଷ୍ମଣ ପଗ୍ରୁର ଯା ଯାଇଁ । ୩ ।
ଜ୍ୱାହାର ପୁନ୍ତୁ ବାହାବ ଅସି ପ୍ରତିହାର
ଭାଷିଲ କେଉଁ ଲକ୍ଷ୍ମଣ କି ଜାଣି ତୁମ୍ଭର । ୪ ।

---

(୧) ଭଦୁର—ବଜ୍ର
(୨) ସଙ୍ଖ୍ୟାବାନ – ପଣ୍ଡିତ (୩) ହଂସସୂତ—ସୂର୍ଯ୍ୟପୁତ୍ର (ସୁଗ୍ରୀବ)

ବାଣୀ ହାଣିବାକୁ ଜଣି ମଣିଲେ ସୌମିତ୍ରି
ଭଣିଲେ ଜାଣି ଶୁଣିଲ କପିଶ୍ରେଣୀ-ପତି । ୫ ।
ବାଣକରେ ବୈବସ୍ୱତ-ବାସରେ ବାଳିଙ୍କ
ବସାଇ ତୁମ୍ଭଙ୍କୁ ଦେଲେ ଯେ ତା'ର ବାଳୀଙ୍କ । ୬ ।
ବିମ୍ବ ଚତୁର୍ଦ୍ଦଶ ଦହପାରେ ଯା'ର ଶର
ବୋଲିବ ସେ ଦାଶରଥିଙ୍କର ସହୋଦର । ୭ ।
ପ୍ଲବଗ ଗର୍ବ-ପର୍ବତ କରିବାକୁ ଚୂର୍ଣ୍ଣ
କୋପ ବହ୍ନି କ୍ଷେପ୧ ତହିଁ ଛାଡ଼ି ଦେଲେ ତୂର୍ଣ୍ଣ । ୮ ।
ସ୍ତନୟିତ୍ନୁ୨ ସମ ସ୍ୱନ କରି ବାଣ ଗଲା
ସିଂହାସନ ସମୀପସ୍ଥ ସ୍ତମ୍ଭ ଫୁଟାଇଲା । ୯ ।
ଖମ୍ବ ପରିରମ୍ଭ୩ କରି ଦମ୍ଭ ପରିହରି
ସମ୍ଭ୍ରମେ ସ୍ଥିତ ସମ୍ଭବ ଚେତା ଜଡ ହରି୪ । ୧୦ ।
ଦ୍ୱାସ୍ଥ ଏ ବିପଦ ବାର୍ତ୍ତ ଫେରିଲା ତୁରିତ
ଶସ୍ତ୍ର ପାଇ ଧରିଥିଲା ହସ୍ତ ଚିତ୍ତସ୍ଥିତ । ୧୧ ।
ଖଟାଇ ହେବାର ଶାସା ଫଳ ଭୋଗ କଲା
ଖଦ୍ୟୋତ-ସୁତ ଖଦ୍ୟୋତ ଜ୍ୟୋତି ପାଇଥିଲା । ୧୩ ।
ସୁମାନୁଜ ସୋମ ସମ ବାମ ହେଲେ ତା'ର
ବାଣ-କିରଣେ ହରଣ କଲେ ଦୀପ୍ତି ସାର । ୧୪ ।
ତା'ର ବାମା ତାରା ବାରି ସଜଳ ବାରତା
ତାରକେଶାନନୀ କ୍ଲେଶ ନାଶେ ହେଲା ରତା । ୧୫ ।
ବରବରନା ବରର ଅଚେତା ଜାବାର
ଧରି ଅର୍ଘ୍ୟଥାଳି ବାହାରିଲା ଯବାଧସ୍ତି । ୧୬ ।
ବନ୍ଦାଇ ବନ୍ଦାରୁ୫ ପରି ଜଗ୍ୱ ଶୋଭାବତୀ
ତମ-ତମ ବିନାଶନେ ଜାଳେ ବାକ୍ୟ-ବତି । ୧୭ ।
**ଅସ ଅସ ଅ**ବାସକୁ ପରମ ପୁରୁଷ
ଦାସ ନାଶ କରି ଲଭିବ କି ପଉରୁଷ । ୧୮ ।

---

(୧) କ୍ଷେପ—ଶର (୨) ସ୍ତନୟିତ୍ନୁ—ଘଡଘଡ଼ି
(୩) ପରିରମ୍ଭ—ଆଲିଙ୍ଗନ (୪) ହରି—ମର୍କଟ (୫) ବନ୍ଦାରୁ—ଭାଟ

କ୍ଷୀଣ ପାଳକର ପୋଷକତାକୁ ପାସୋର
ପାଶୁ ଖସି ଡାଳେ ବସି ମିଣନ୍ତି ଖେଚାର । ୧୯ ।
ଦଣ୍ଡିବା ବିହିତ ନୁହେ କଲେ ଅନାଗୃର
ଖଣ୍ଡିବା ଅଟଇ ସିନା ପଣ୍ଡିତ ବିଗୃର । ୨୦ ।
ଚନ୍ଦ୍ରବଦନୀର ମୋଦ-ପଦବୃନ୍ଦ ଗଦ
ଲକ୍ଷ୍ମଣଙ୍କ ରୋଷ ଅଣୀ ବିଷ କଲା ରଦ । ୨୧ ।
ବାଣ ସଦୃଶ ସୁଦୃଶା ବିନୟ ବଚନ
ବିପଦ-କ୍ଷିପ୍ରଦ ତାପ କଲା ବିମୋଚନ । ୨୨ ।
କ୍ରୋଧ-ପାବକ ଉଦୟ ହୃଦୟ-କାନନ
ରମଣୀର ବାଣୀ ପାଣି କଲା ନିର୍ବାପନ । ୨୩ ।
ଶୂର-ପୁରନ୍ଦର ବିଜେ କଲେ ପୁରୋଦର
ସୁର-କୁମର ବର୍ଷିଲେ ସୁଧାମୟ ଗିର । ୨୪ ।
ଭ୍ରାତୃ ମିତ୍ର ତୁମ୍ଭେ ମୋର ଜ୍ୟେଷ୍ଠ ଭ୍ରାତାକଳ୍ପ
ମୋ କଳ୍ପନା ସ୍ତବ କିପାଁ କଳ୍ପ ହେ ଅନଳ୍ପ । ୨୫
ବିଚକ୍ଷଣ ଲକ୍ଷ୍ମଣ କହନ୍ତେ ଏହୁପର
ହରି ହରଷିତ ହେଲେ ପୂର୍ବ ଦର ହର । ୨୬ ।
ନମୁଚିସୂଦନନପ୍ତା[୧] ନ ମୁଞ୍ଚି ମହତ୍ତ୍ୱ
ସମୁଚିତ ଅଭିହିତ ସେବାରେ ବିରତ । ୨୭ ।
ସମ୍ଭାବନାନ୍ତର ସୈନ୍ୟସମ୍ଭାରେ ବାହାର
ସମ୍ଭବ ନ ହେଲା ସମ୍ଭାଳିବାକୁ ବାହାର । ୨୮ ।
ଅଗ୍ରେ ଗତ ବ୍ୟଗ୍ରେ ସୁଗ୍ରୀବ ସୌମିତ୍ରି
ଜଙ୍ଗଲ୍ ଜନ୍ତୁଙ୍କ ସଙ୍ଗେ ଅଙ୍ଗଦ ଗମନ୍ତି । ୨୯ ।
ପ୍ରସ୍ରବଣ ପର୍ବତରେ ପରବେଶ କଲେ
ପ୍ରଣାମ କରି ରାମଙ୍କୁ ସୈନ୍ୟ ଚିହ୍ନାଇଲେ । ୩୦ ।
ପାଞ୍ଚ ସେନାପତିଙ୍କି ଯେ ଯୂଥପତି ପାଞ୍ଚ
ପ୍ରତ୍ୟେକଙ୍କର ଅଟନ୍ତି ପାଞ୍ଚମନେ ପାଞ୍ଚ । ୩୧ ।

---

(୧) ନମୁଚିସୂଦନନପ୍ତା—ଇନ୍ଦ୍ରଙ୍କ ନାତି (ଅଙ୍ଗଦ)

ଭଲ୍ଲ ଭଲ୍ଲ ମର୍କଟ ପଲରେ ଏକ ଯୂଥ
ନ୍ୟୂନାଧିକ କେ ନୁହନ୍ତି ସର୍ବେ ସମରଥ । ୩୨ ।
ଯଣ କର ପିଇ ଦେବେ ପୟୋଧିପାଣିକି
ପରବତ ବେଷ୍ଟ୍ରବତ ଏହାଙ୍କ ପାଣି କି । ୩୩ ।
ପଥର ପାଦରେ କର ଦେବେ ପରମାଣୁ
ପରୀକ୍ଷା କରନ୍ତୁ ପରାକ୍ରମ ପରମାଣୁ । ୩୪ ।
ପୁଚ୍ଛହୃତ ପରାଜୟ ପ୍ରାପ୍ତହେବେ ରଣେ
ଯକ୍ଷପୃଷ୍ଠ ଫଳାହାରୀ ପୂର ସଦା ବଣେ । ୩୫ ।
ପ୍ରଭୂତ ସାମର୍ଥ୍ୟଯୁକ୍ତ ବାତସୁତ ହନୁ
ପ୍ରଭୁ କାର୍ଯ୍ୟେ ବହୁପାରେ ନାନାବିଧ ତନୁ । ୩୬ ।
ଶଚୀବର ପରାକ୍ରମୀ ସଚିବର କାର୍ଯ୍ୟ
ଜାମ୍ବବାନ କରିବାରେ ଧରଣୀରେ ବର୍ଯ୍ୟ । ୩୭ ।
ଯଣସର ପଣ ସରେ ନାହିଁ ବଚନରେ
ପଣସ ପର ସେ ପଣେ ଶର ଗିଳି ପାରେ । ୩୮ ।
ସୁଷେଣଙ୍କୁ ଦୁଷଣଶୂନ୍ୟ ଭେଷଜ ଜ୍ଞାତ
ବ୍ୟାଧି-ଅବଧିକି ଅଟଇ କୁମ୍ଭସୁତ ମତ । ୩୯ ।
ବପୁ-ଚନ୍ଦନଙ୍କ ଶୀଳା ଚନ୍ଦନର ବପୁ
ଶରଭର ଡର ନାହିଁ ପର ପରତାପୁ । ୪୦ ।
ଦୁର୍ମୁଦକୁ-ମୁଦ ଦଏ ବଇରମର୍ଦ୍ଦନ
ବପୁ-କାର୍ଶ୍ୟେ ଅନିଳ ଅନଳ ସମାନ । ୪୧ ।
ଅରି-ବଶିକୁ କେଶସ୍ଥେ ଅଟଇ କେଶରୀ
ଦ୍ୱିବିଦଙ୍କୁ ବିବାଦରେ ନ ହେବେ କେ ସରି । ୪୨ ।
ସୁଟିଛନ୍ତି କୋଟି କୋଟି ଏଥି ବୀରଗଣ
କୋଟି ଗୋଟି ରଚିଲେ ମୁଁ ନ ତୁଟିବ ଗୁଣ । ୪୩ ।
ପ୍ରଭୁ ତ ତୁମ୍ଭେ ପ୍ରଭୂତ ସୈନ୍ୟ ତବ ଦାସ
ଦାଶରଥି ଶୁଣି କଲେ ପ୍ରଶଂସା ବିଶେଷ । ୪୪ ।
ପାର୍ଥିବୀଙ୍କ ଅନ୍ୱେଷଣ ପ୍ରସ୍ତାବ ଅଗତ
ଗୋକୁଳାନନ୍ଦ କହଇ ଶାନ୍ତ ସୀତାକାନ୍ତ । ୪୫ ।

———

୨୬ଶ ଛାନ୍ଦ

ରାଗ—ଦେଶାକ୍ଷ

ସଂସାର-ସରିତ ତରିବାକୁ ତରି ସରି ଏ ହରିଚରିତ
ହରି ପରି ହରିବାକୁ ସମରଥ ତ୍ରୁରିତ କଳି-ଦୁରିତ
ହେ ନରେ
ବର୍ଣ୍ଣନାକୁ ଯଥା ବିଧାନରେ । ପାନ କର କର୍ଣ୍ଣ ବଦନରେ ।୧।

ଚତୁରବନ୍ତ ଋକ୍ଷ କପି ଶତ୍ରୁର ସଦନ ସନ୍ଧାନପାଇଁ
ଚତୁର ଦିଗକୁ ସତ୍ୱର ପେଷିଲେ ଅତୁରେ ବାନରସାଇଁ
ସେ ଭୂପେ
ସୁରପୁର ନରଙ୍କର ବାସେ । ଗମି ଭ୍ରମିବ ସକଳ ଅଶେ ।୨।

ନୀଳ ଜାମ୍ବବାନ ବାଳୀର ନନ୍ଦନ ଶରଭ ବାତକୁମର
ଦକ୍ଷିଣକୁ ପ୍ରଦକ୍ଷିଣ କରିବାକୁ ଗତ ହେଲେ ଅଭ ତର
ସେ ବୀର
ବୁଲି ଜନପଦ ବନ ଘୋର । ପ୍ରବେଶିଲେ ନୀରଧିର ତୀର ।୩।

ଶକୁନ୍ତସମାଜେ ଶକ୍ତ ଶକ୍ତିମନ୍ତ ସମ୍ପାତିନାମକ ପକ୍ଷୀ
ଗ୍ରାସ କରିବା ଜୀବ ହେବ ଏ ଭାବନ୍ତ ତା ଅବୟବକୁ ଦେଖି
ସେ କପି
କଳି ନ ପାରି ରହିଲେ ଛପି । କାୟା ଭୟରେ ଯାଉଛି କମ୍ପି ।୪।

ବୈଦେହୀ-ହରଣ ଜଟାୟୁ ମରଣ ମୈଥିଳୀଙ୍କ ଅନ୍ୱେଷଣ
ଶ୍ରୀରାମ ଲକ୍ଷ୍ମଣ ସେନ ସୈନ୍ୟଗଣ ରହିଥିବା ପ୍ରସ୍ରବଣ
ଏ ଗିର
କଥୋପକଥନ ପରସ୍ପର । ଶୁଣି ବିହଗ ବର୍ଜିଲା ବୈର ।୫।

କହିଲା ମୁଁ ଥାଉ ଜଟାୟୁ ଗତାୟୁ ହେଲା ଶୁଣିଲି ଏ ଗିର
ଅକାଳେ ଲଙ୍କେଶ ସୁକେଶୀଙ୍କି ନେଲା ତା ଅବାସ ବାରିଧିର
ସେ ଅସ
ମୋହ ପୁଷ୍ଟେ ହୃଷ୍ଟେ ସର୍ବେ ବସ । ଦୃଷ୍ଟ ହେବ ଏଠାରୁ ତା ବାସ ।୬।

ପୁଚ୍ଛ ଦୂରବର୍ତ୍ତୀ ଦେଖି ସୁରପତି, ପୌନାଦ ବାନର ଗୃହ
ବାରିଧିର ବାରି ତରିବାକୁ ଭାରି କଷ୍ଟ ବାଛି ଗଲେ ହାରି

ସେ କହି

ଯାଇ ପାରିବ ସେଠାକୁ କେହି । ଠାବ କରି ଫେରିବ ବୈଦେହୀ ।୭।

ମାରୁତି କହିଲ ଶରୁ ଡର କମ୍ପା ଗରୁଡ଼ର ଗତିଠାରୁ
ବେଗରେ ସାଗର ଲଙ୍ଘନ କରିବା ବିଷୟେ ନୁହେ ମୁଁ ଭୀରୁ

ସେ ବୋଲେ

ଖରେ ଖ-ରେ ଗତି କଳ୍ପବେଳେ । ବଡ଼ବାଗ୍ନି ନ ରହିବ ଜଳେ ।୮।

ତନ୍ମନ୍ଥନେ ନବନୀତ ପ୍ରକାର ହେବେ ବନଚର-ପ୍ରାଣୀ
ତରଙ୍ଗ ରଙ୍ଗ ବିଭଙ୍ଗ ହେବ ଅଙ୍ଗ ପବନ ବାଜିଲକ୍ଷଣୀ

ସେ ବଳି

ବେଣୀ ଦେଖାଇବା କେଉଁ ଫଳ । ଅବଶ୍ୟକ ତ ଡେଇଁବା ଜଳ ।୯।

ରାମ-ତାମରସ-ପାଦ ଶନ୍ତ ପ୍ରେମଶବ୍ଦେ ହନୁମାନ ଚଳେ
ସହସ୍ରାକ୍ଷ ପକ୍ଷ ଛେଦନ ପୂର୍ବରୁ ଥିଲେ ଯେପରି ଅଚଳେ

ସେ କେମ-

ରାଜି ଲତା ଗୁଳମ୍ ଦ୍ରୁମ ସମ । ହରଣା ଧାରଣା ଦଏ ଘର୍ମ ।୧୦।

ବିରାମ ନମିଭ ଶ୍ରୀରାମଙ୍କ ଦୂତ ବରୁଣ କରୁଣା ବହି
ଭୂଧର ପ୍ରେରଣ କଲେ ସମୀରଣ ସୁତ ନ ରହିଲେ ତହିଁ

ସେ ଦେବେ

ସୁରସାକୁ ପଠାଇଲେ ଜବେ । ହନୁମନ୍ତ ବଳକୁ କଳିବେ ।୧୧।

ଭୁବନଙ୍କା ଧବ ସୁମରି ଭୁବନ ଉପରେ ତା'ର ଜୀବନ
ଯବନ ପବନ ନନ୍ଦନ ବିନାଶି ଗମନ ତାତ ସମାନ

ତା ବାରି

ସିଂହିକା ନାମିକା ନିଶାଚରୀ । ଓଗାଳିଲା ବଡ଼ ମୂର୍ତ୍ତି ଧରି ।୧୨।

ସ୍ଫୂର୍ତ୍ତିରେ କ୍ଷୁଦ୍ର ମୂର୍ତ୍ତିରେ ତା ଉଦର ଭିତରେ ପଶିଲେ ହନୁ
ଅନ୍ତକ ନିକଟେ ପେଶିଲେ ଅନ୍ତକୁ ଶିରି ଧରି ମୋଡି ତନୁ

ସେ ହରି

ବର୍ତ୍ମେ ବାଧା ବିଘ୍ନ ସର୍ବ ହରି । ବିନା କ୍ଲେଶେ ଅବ୍ଧି ହେଲେ ପାରି ।୧୩।

ଅରୁଣ ସହିତ ଅରୁଣ ପ୍ରୟାଣ କଲେ ବାରୁଣୀ ଅଚଳ
ଏ ବେଳରେ ସୁବେଳରେ ହନୁମନ୍ତ ପ୍ରବେଶ ହେଲେ କେବଳ
ସେ ଲଙ୍କା-
ଗଡ଼େ ପଶିବାକୁ ହେଲା ଶଙ୍କା । ଦୈର୍ଘ୍ୟସଂଖ୍ୟା ବେଶୀ ଏତ ଏକା ।୧୪।
ଦେଖି ପକାଇଲେ ରକ୍ଷୀ-ଗଣ ମୋତେ ରଖିବେ କି ଆଜ ପ୍ରାଣେ
ଭକ୍ଷିବେ ଉପଳ୧ ଗୃଧିବେ ଶୋଣିତ ଅଖି ପିଚୁଲାପ୍ରମାଣେ
ସେ ବୀର
ଚିନ୍ତି ଅଖିଲପତି ପଯ୍ୟର । ବହିଲେ ସେ ମକ୍ଷିକା ଶରୀର ।୧୫।
ଝଟ କରି କଟକକୁ ପଶିଗଲେ ଅଟକକାରୀ ଅଞ୍ଚଳେ
ଜାଣି ଲଙ୍କା-ଠାକୁରାଣୀ ହାଣିବାକୁ ଶାଣିତ କୃପାଣ ହାତେ
ସେ ଧରି
ପାଶେ ମିଳି କଲା ଭାରି ଜାରି । ତୁ ମରିବୁ ଇଷ୍ଟକୁ ସୁମରି ।୧୬।
ନିଃଶଙ୍କରେ କାଣେ କରି କରି ନ୍ୟାସ ସରୋଷେ ଭ୍ରୂସଇ କୀଶ
ବିଷଧର ପାଶେ ଭେକ ସଦୃଶ ତୁ ଝାଣି କରୁ ଜାଣୁ କିସ
ଲେ ଦେବୀ
ନ ସେବିବି ପ୍ରତିଫଳ ଦେବି । କବିଶିଷ୍ୟ୨ ବାସକୁ ଦହିବି ।୧୭।
ଶୀଘ୍ରରେ ବେଗରେ ବାତଜ ଅଙ୍ଗରେ ଲଙ୍କାଗଡ଼ ଠାକୁରାଣୀ
ମୁଷ୍ଟି କରି ହସ୍ତ ବୃଷ୍ଟି କଲେ ମସ୍ତ ବଡ଼ ମାଡ଼ ହୋଇ ଝାଣି
ତା କରି
ବଥାଇବା ମାତ୍ର ହେଲା ସାରି । ହନୁମନ୍ତର ନାହିଁ ଖାତରି ।୧୮।
ଶ୍ରୀ ଦୁର କରି ଭିତୁର ପରି ହରି ପ୍ରହାରଲେ ଏକ ବାଧା
ଗୋଟିଏ କୁଟିବାରେ ତାକୁଟି ମଲା କେଟି ମଣ୍ଡିଲା ବସୁଧା
ସେ ଚେତା
ଲଭି କହିଲା ଦେବୀ ଏ କଥା । ବ୍ୟଥାରେ ଘୂରି ଯାଉଛୁ ମଥା ।୧୯।
ଯାତୁଧାନଙ୍କର ମୃତ୍ୟୁ ହେତୁ ଏ ତ ଯା ତୁ କେ ତୁ ଗୃଦ୍ଧମୁହିଁ
ଦଇତୁଣୀଙ୍କର ଛଇ ଶୁଖିଯିବ ବହିବ ରକତ ନଈ
ସେ ବହି
ମୋତେ ପୂର୍ବେ ଥିଲେ ଏହା କହି । ଅଜ ନ ରହିବ ଏହି ମହୀ ।୨୦।

---

(୧) ଉପଳ—ମାଂସ (୨) କବିଶିଷ୍ୟ—ରାକ୍ଷସ

ସଯତନ ଶ୍ରବଣେତନ ସକଳ ନିକେତନ ଖୋଜିଗଲେ
ଶେଷରେ ଦଶାସ୍ୟ ଅବାସ ଦର୍ଶନେ ସାବାସ ଭାଷ୍ୟ ବର୍ଷିଲେ
ସେ ପୁର
ସହଜେ ତ ଅଟେ ରତ୍ନାକର । ସଉଧ-ସଦନ ସୁ-ରୁଚିର ।୨୧।
କାମ ଦମନ ଶମଜ ଅଭ୍ରସୃମ ଭ୍ରମ ଜନ୍ମାଉଛି ଚିତ୍ତେ
ମକରକୁଣ୍ଡଳୀ ମୁକ୍ତାବଳୀ ଦଶଗ୍ରୀବ କର୍କଟ କି ସତେ
ସେ କୁଳ
କଚ୍ଛପଠାରୁ ନୁହେ ନିକୃଷ୍ଟ । ମାଛ ଲକ୍ଷଣୀ ଲକ୍ଷଣେ ସ୍ପଷ୍ଟ ।୨୨।
ଭୂଷଣେ ଭୂଷିତ କୃଶୋଦରୀଯୂଥ ଗୋପଳ ତୁଲେ ସହଜେ
ଜଣନାଶିଷ୍ୟ ଶଶଧର ବୃଷଭ ସଦୃଶ ମଧ୍ୟରେ ବିଜେ ।
ସେ ରମା-
ସମାଜରେ ଏକ ମନୋରମା । ଜମା ହୋଇଛି ସର୍ବ ସୁଷମା । ୨୩ ।
ଜାନକୀ ଅନ କି ହେବ ଏମାନଙ୍କ ମଧ୍ୟେ ଭାବେ ମାନସରେ
ଅନ ସରେ ମାନସରେ ସାରସର ସାରସର ମାନସରେ ।
ତା ମତ
ବଳେ ଏ ମୋହର ଅଟେ ଭ୍ରାନ୍ତ । ଅଙ୍କ-ପଙ୍କକୁ କଲି ମୁଁ ଗତ । ୨୪ ।
ଅବଧାନ ସହିତ ମୁଁ ଅବହିତେ ସର୍ବ ଭବନ ଖୋଜିଲି
ମାନ ଚିକାଳୀ ଦାନବୀଙ୍କ ବ୍ୟତୀତ ମାନବୀକି ନ ଦେଖିଲି ।
ସେ ଦ୍ୱିଜ ।
କଲ ଅମୃତାରେ ଅବା ବ୍ୟାଜ । ଏଥିରେ ତ ନାହିଁ ତା'ର କାର୍ଯ୍ୟ ।୨୫।
ସୀତାନୁସନ୍ଧାନ ଗୀତା-କଥାପକୁ ବାରମ୍ବାର କଲି ପାଠ
ଏ କପି ଦୃଷ୍ଟିରେ ଏକମାତ୍ର ଲିପି ଛପି ନାହିଁ ତହିଁରେ ତ ।
ମୋ ଶ୍ରମ ।
ବୃଥା ହେଲା କି ବୋଲିବେ ରାମ । କର ନ ପାରିଲି ତାଙ୍କ କାମ । ୨୬ ।

---

୨୧ । ରତ୍ନାକର······ସମୁଦ୍ର । ରାବଣପୁରରେ ବହୁତ ରତ୍ନ ଥିବାରୁ ତାହା ରତ୍ନାକର ସଙ୍ଗେ ସମାନ । ସଉଧ—ଉଧ ସହିତ । ସମୁଦ୍ରରେ ଉଧ ଥାଏ । ଏଥିରେ ସଉଧ ଯେ ପକ୍କା ଘର ଅଛି ।

୨୨ । ଶମଜ—ସ୍ଥଳ । ଅଭ୍ରସୃମ—ଜଳ । ମକର—ଜଳଜୀବ । କୁଣ୍ଡଳୀ—ସର୍ପ । ମକର ଆକାର କୁଣ୍ଡଳ ଲଗାଇଥିବାରୁ ରାବଣ ମକରକୁଣ୍ଡଳୀ ଅଟେ ।

ଭାଳି ଭାଳି ବଳୀମୁଖ ବଳୀ ଏହିଭଳି ପୁଣି ହେଲେ ଦମ୍ଭ
ରାବଣ ଜଗତ-ଜୃମ୍ଭ କତ ଗଡ ଗୃହିଁଙ୍କ ଦଶକନ୍ଧର ।
ସେ ପୁର-
ଠାରୁ ନୁହଇ ବହୁତ ଦୂର । ଦେଖିଲେ କେତେକ ତରୁବର । ୨୭ ।
ଗହନ ମଣି ବହନ ତହିଁ ଗଲେ ନୁହଇ ତା ସେ ଉଦ୍ୟାନ
ରମଣୀୟତାରେ କଦାପି ନ ହେବ ନନ୍ଦନ ବନ ବନ୍ଦନ
ସେ ତହିଁ
ବସନ୍ତ ନରେଶ ସଦା ରହି । ମଧୁବନ ନାମ ପ୍ରକାଶଇ ।୨୮।
ଦ୍ୱିଜ ସମ ଦ୍ୱିଜ ଶୁକ ନାଦ ହେବ ବେଦ ପଠନ ସମ୍ଭବ
ଖଦିର ତରୁ ତରୁଣ ପଲ୍ଲବ ତ ବହନ୍ତି ଖଦିର ଭାବ
ସେ ଛନ୍ଦ
ଟେକି ଅଛି ସତ ଶତପତ୍ର । ସଜିବ ନୃପଙ୍କର ଛତ୍ରପାତ୍ର ।୨୯।
ମଲ୍ଲୀପୁଷ୍ପ ଅଳ ଅଳୀଙ୍କର ଅଳ କମ୍ବୁନାଦ ଭଳି ଅଟେ
ମଞ୍ଜୁଳ ବଞ୍ଜୁଳେ ହଳଦୀବସନ୍ତ ରୁତ ବନ୍ଦୀ-ସ୍ତବ ଘଟେ
ସେ ମନ୍ଦ-
ସୁତରସ୍ତ କାହାଳିଅବୃନ୍ଦ । ଡାକି କରନ୍ତି ହୃଦକୁ ମୁଦ ।୩୦।
ମଳୟ ଅନିଳ ସୁବାସିତ ଜଳ ସିଞ୍ଚିଲ ପସ୍ୱୟେ ପ୍ରତେ
ଶମ୍ପାକ ସୁମନଁ ସମ୍ଭାର କନ୍ଦୁକ ଭଳି ଗୁଳି ରେଣୁ ସତେ
ସେ କାଳେ
ଖର୍ଜ୍ଜୁର ତରୁ ଚାମର ଢାଳେ । ପଳାଶ ପଲ୍ଲବପଖା ଚାଳେ ।୩୧।
ବଧୂଲି ବକୁଳ ଗୋଲାପ ରସାଳ ଛୁରଅନା ନାଗେଶ୍ୱର ।
ଶଲ୍ଲୀ କେତକୀ-ପ୍ରସୂନ ସତେ କି ସଜାଇଛନ୍ତି ଅମ୍ବର
ସେ ରାଜା
ପ୍ରାପ୍ତି ହେଲେ ଦୋଷୀ ବଂଶ ପ୍ରଜା । ଖଗବର୍ଗଙ୍କର ସ୍ୱନ ବାଜା ।୩୨।
ଦସ୍ୟୁଭୂତ ହୋଇ କର୍ମକୁ ଅଦର ବଦର ରହନ୍ତି ଦୁଃଖେ
ତରୁଲତା ଗୁଳ୍ମ ପ୍ରକୃତ-ନୃପଙ୍କ ସମ୍ଭାବନା କଲେ ସୁଖେ
ତା ମୁହିଁ
କହିବାକୁ ମୁଁ ସମର୍ଥ ନୁହେଁ । ଶୋଭା-ବିପଣୀ ପ୍ରକୃତଗୃହେ ।୩୩।

ପ୍ରଶଂସା ବହୁତ କଲା ରାମଦୂତ ଧନ୍ୟରେ ବିଶ୍ରବା-ସୁତ ।
ଅମର-ଶିଳ୍ପିଙ୍କ ନଗରରେ ରହି ଗୁମର କରୁଛୁ ତୁ ତ
ରେ ମର୍ତ୍ତେ
ସ୍ୱର୍ଗସୁଖ ଭୋଗ କରୁ ନିତ୍ୟେ । ଚୌରବୃତ୍ତି କଲୁ କି ନିମିତ୍ତେ ।୩୪।
ପବନ-ତନୟ ମନରେ କାନନ ଆନନ୍ଦ ଚପଳା ପରି
ଖେଳିଗଲା ମାତ୍ର ଶାଖା ପତ୍ର ପତ୍ର ବୁଲିଲା ପତତ୍ରି୧ ପରି
ସେ ବୀର
କର୍ଣ୍ଣେ ଶୁଣିଲା କେତେକ ଗିର । ସେଠାକୁ ଗମିଲା ଧୀର ଧୀର ।୩୫।
ଅସୁରୁଣୀମେଳେ ଶିଂଶପାର ତଳେ ବସିଛନ୍ତି ଏକ ବାଳା
ପ୍ରସନ୍ନ ହୋଇ ଶ୍ୱସନାତ୍ମଜ ଭାବେ ହେବ ରାମ ପ୍ରେମଶୀଳା
ସେ ବିଧି
ସତେ କାମନା କରିବେ ସିଦ୍ଧି । ଦଅଇବେ କି ପୌରୁଷ-ନିଧି ।୩୬।
**ବିଂଶତି ପାଣି ଅଗଣିତରମଣୀ ଆଣି** ରଖିଛି ତା ଘରେ
ଦୁଃଖିତା ସହଜେ ଲଖି ତ ନ ହେବେ ଆଣି ଦେଖିଲା ସେଠାରେ
ଏ ବାମା
ସାରା ବ୍ରହ୍ମାଣ୍ଡରେ ଅନୁପମା । ଅବା ଜଙ୍ଗମ୨ ହେମପ୍ରତିମା ।୩୭।
ବିଦେହଜା ହେବେ ନିଃସନ୍ଦେହ ଏହା ଏ ଦେହର ରୁଚିରତା
ଲକ୍ଷ୍ୟରେ ଅକ୍ଷମ ହୋଇ ହେବ ନିଶ୍ଚେ ବିଦେହ-ସ୍ତ୍ରୀ ପରାଜିତା
ଏ ବାମା
ନିର୍ମିଣିଲା ବେଳେ ବିଶ୍ୱକର୍ମା । **ଆଣି**ଥିବ ସବୁଠୁଁ ସୁଷମା ।୩୮।
ଇନ୍ଦୁ ଚତୁଃପାର୍ଶ୍ୱେ ଜାତବେଦ୩ ପରି ଯାତୁଧାନଙ୍କର ନାରୀ
ବିକଟ ବଦନ ଦେଖାଇ ନିକଟେ କରନ୍ତି ସଙ୍କଟ ଜାରି
ସେ ଶଶୀ
ଗ୍ରାସିବାକୁ କେତୁଗୋଠ ଆସି । ତ୍ରାସ ଦାନ କରୁଛନ୍ତି ବସି ।୩୯।
ମରିବା ବେଳର ଡର ହରିବାକୁ ଭଜିବ ଗୋକୁଳାନନ୍ଦ
ସ୍ୱର ମାରିଗ୍ରୁର ଦେଲା ସାର ଗୁରୁ-ଦଶ ପଦରେ ଏ ଛନ୍ଦ ।
ହେ ସୁଧୀ
ମୋ ରଚନା ତଥା ଯଥା ବୁଦ୍ଧି । କାହୁଁ ପାଇବ ଶବ୍ଦସମୃଦ୍ଧି ।୪୦।

---

(୧) ପତତ୍ରି – ପକ୍ଷୀ (୨) ଜଙ୍ଗମ—ଗତିଶୀଳ (୩) ଜାତବେଦ—ଅଗ୍ନି

## ୨୭ଶ ଛାନ୍ଦ

### ରାଗ—ଗୈରୀ

ଯୁଗ୍ମ-ନିଶାରେ ଅବଶ ଚେତା ହରନ୍ତି ସଂବେଶ(୧)
ସୁନ୍ଦରୀ ରମଣୀବଂଶ-ରସରେ ବଶ ।
ହୋଇ ଅସ୍ତବ୍ୟସ୍ତ ବେଶ ଶୋଇଛି ବିଂଶାର୍ଦ୍ଧ-ଅସ୍ୟ
ସ୍ୱପ୍ନ ଲଙ୍କାଦେବ୍ୟାଦେଶ ରେ କବ୍ୟାଦେଶ ।
ଘୃରଖୀର ହେବ ଏ ଦେଶ
ଈଶ-ସନ୍ଦେଶ ପ୍ରବେଶ ବୈଦେହୀପାଶ । ୧ ।
ସ୍ୱପ୍ନ ଚେତ ଅନୁକ୍ରମ ସ୍ମର ଶଶଧର ଭ୍ରମ
ମଣାଇ ଜାଳି ଉଡ଼ିଲା ବିଶାଳ ତମ,
ରୋମେ ହୋଇ ଭମ ଭମ ସ୍ୱେଦ ବହେ ଗମ ଗମ
ହୃଦ ହୁଏ ଦମ ଦମ, ବହଇ ଘର୍ମ
ଅଶୋକବନ ଜଗନ୍ତକ
ଜଟିଳ ଭିମୀତ ହେବ ଗଜଗନ୍ତକ । ୨ ।
ହନୁମନ୍ତ କୌଣପଙ୍କୁ(୨) ଗୃହି ନାସିକା କୂପଙ୍କୁ
କଣେ ଚରଣ ତୃଣରାଜଙ୍କ(୩) ପାଦପଙ୍କୁ
ଜଣାଇ ସଂଶୟ-ପଙ୍କ ହେବାକୁ ଅଳି ରୂପଙ୍କୁ
ବନ୍ଦିଗଲା ମହିଳାମଣି ସମୀପଙ୍କୁ
ପାଶେ ବସେ ଭୟେ ହରଷେ
ଅସୁରେଶ ତୋ ମତ ମୋ ପ୍ରତ ନ ରସେ । ୩ ।
ମୁହିଁ ପୁଣ୍ୟ-ଜନେଶ୍ୱର ଭ୍ରାତା ପୁଣ୍ୟ-ଜନେଶ୍ୱର
ବିଶ୍ରବା ମୋ ବପ୍ତା(୪) ଜାତ ଜଳ ବଂଶର
ମୋର ବହୁତ ସଂପଦ ପ୍ରାପ୍ତ ଧନଞ୍ଜୟ ପଦ
ମୋତେ ଦେବାକୁ ବିପଦ ନାହିଁ ବିଶ୍ୱର
ବେଦପଭ ବରେ ଶରୀରୁ
ତୋ ପଡ ଘୃର ମାରବ ମୋତେ ଡରାଇ । ୪ ।

---

(୧) ସଂବେଶ—ନିଦ୍ରା (୨) କୌଣପ—ରାକ୍ଷସ (୩) ତୃଣରାଜ—ନାରିକେଳ
(୪) ବପ୍ତା—ଜନକ, ପିତା

ତୋହର ବର ଦେବର ମୋଠାରୁ ନୁହଁ ଜବର
ବୃନ୍ଦ ଛନ୍ତି ବରବର ଯଥା ଶବର
ହେଉଥିବେ ହରବର ନ ପାଇ ତୋର ଖବର
କ୍ଷୀଣ ହେବ କଳେବର ରେ ସ୍ଵମାବର
ପାଇବେ ଅବସ୍ଥା ଶବର
ମୋ କଳ୍ପନାରେ ଅଳ୍ପ ଶକ୍ତ ମାନବର । ୫ ।

ସୀତା ଭର୍ତ୍ସି ରାକ୍ଷସକୁ ଧିକ କାହା ସାହସକୁ
ଅସିଛୁ ମୋର ପାଶକୁ ଟଳେ ନ ଶଙ୍କୁ
ଯୋଗ୍ୟ ନୁହ ତୁ ଦାସକୁ ନ ମଗ୍ରଅ ସ୍ବବଂଶକୁ
ମୋତେ ନେବୁ ତୋ ବଶକୁ ଫେର ବାସକୁ
ହସ୍ତେ ନ୍ୟସ୍ତ କର ନାଶକୁ
ଚୋର ହୋଇ ଦେଖାଉଛୁ ପଉରୁଷକୁ । ୬ ।

ରାକ୍ଷସାଧମ ପାମର ମୁଁ କେତକୀ ତୁ ଭ୍ରମର
କଣ୍ଟକେ ପଡ଼ି ନ ମର ବୁଦ୍ଧି ଭ୍ରମର
ଗୁଣ ନ ଜାଣୁ ବ୍ରମର ବନ୍ଦନ୍ତି ଯାକୁ ଅମର
ଅତଥି ହେବୁ ଯମର କଲେ ସମର
ମହିମା ଅଜ୍ଞାତ ଧର୍ମର
ନାସତ୍ୟ¹ ହେଲୁ ତୁ ହୋଇ ଭିକ୍ଷୁମର । ୭ ।

ବାସ କର ଦଣ୍ଡକରେ ଧରଣ କୋଦଣ୍ଡ କରେ
ଖରାଦଙ୍କ ଦଣ୍ଡକରେ ଯେ କାଣ୍ଡକରେ ।
ଦେଇଥିଲେ ଦଣ୍ଡଧରେ ଚୂର ପାରନ୍ତି ଭୂଧରେ
ଜଣେ କେ ବଣ୍ଟ ମଧ୍ୟରେ ତାଙ୍କ ଯୁଦ୍ଧରେ ।
ବୀର ଜଣେ ଧରା ନ ଧରେ
ବନ୍ଦାରୁ² ନ ହୋଇ ନିନ୍ଦା କରୁ ଶ୍ରୀଧରେ । ୮ ।

(୧) ନାସତ୍ୟ—ଅଥ୍ୟାଗ୍ରସ୍ତ (୨) ବନ୍ଦାରୁ—ସ୍ତୁତିକର

ବୋଲୁଛୁ ତୁ ଧନଞ୍ଜୟ ମୁଁ ତହିଁ କି ଅଟେ ପୟ
ସ୍ପର୍ଶକଲ ମାନେ ଷୟ ହେବୁ ନିଶ୍ଚୟ ।
ଲଖାଇ ଅସୁରୀଚୟ ଦେଖାଉଛନ୍ତି ସେ ଭୟ
ତହିଁରେ କ୍ରୋଧ ଉଦୟ ମୋର ହୃଦୟ ।
ଗର୍ଦ୍ଧଭ ତୁ ହେବୁ କି ହୟ
ଚଳା ନା ବଳାନା ଅବଳାକୁ ନିର୍ଦ୍ଦୟ । ୯ ।

ରହୁଁ ଏ କହୁ ବାଣୀକି କାଟିଲା ବଂଶପାଣିକି
ଡକାଇ ଅସୁରୁଣୀଙ୍କି କହେ ଏଣିକି,
ତରାସ ଏ ତରୁଣୀକି ମଦନ-ସିନ୍ଧୂପାଣିକି
ତରିବାକୁ ତରଣୀକି ସେ ରମଣୀକି ।
ଦେବ ସେ ସୁଷମାଖଣିକି
ସିଂହ୍ନୀ ହୋଇ ଭୟ କର କମ୍ପା ଏଣୀକି । ୧୦ ।

କହୁ ଏପରି ମାର୍ଗରେ ଦୈତ୍ୟ ଗଳ୍ପ ସ୍ବନଗରେ
ଦାନବୀମାନେ ବେଗରେ ସୀତା ସଙ୍ଗରେ,
ଝଗଡ଼ା କଲେ ରଗରେ କହିଲେ ନାନା ବାଗରେ
ନ ମଜ୍ଜ ଚିନ୍ତା-ସାଗରେ ତୁ ବିରାଗରେ ।
ଘାଣ୍ଟି ନୁହ ଦୁଃଖ ସ୍ରୋତରେ
ଅମ ରଜା ଭଳି ନ ପାଇବୁ ସ୍ବର୍ଗରେ । ୧୧ ।

ନିଷ୍ଠା କହେ ଏତକି ବଢ଼ୁ କ୍ରୋଧ ମୂରତକି
କମ୍ପା କହୁ ଭାରତୀକି ବହ ସତୀକି,
ରାମ ବାନରପନ୍ତିକି ଧରି ତରି ଅପ୍ପତିକି(୧)
ଫନ୍ଦେ ବନ୍ଧ ଭାରତକି ଶରକାଉକି
ସର୍ଜ୍ଜି ଗର୍ଜ୍ଜି ବର୍ଜ୍ଜି ଭୀତିକି
ଅସୁରଙ୍କ ପଠାଇବେ ଯମ କତିକି । ୧୨ ।

---

(୧) ଅପ୍ପତି—ସମୁଦ୍ର

କାଲି ରାତ୍ର ଏ ସ୍ୱପନ ଦେଖିଲି ଦଶଲପନ
ସ୍ୱଦେହେ ତୈଳଲେପନ ଗାଢ କମ୍ପନ,
ମହିଷେ କରେ ଗମନ ଦଣ୍ଡ ଦେଉଛନ୍ତି ଶମନ
ସେଥିକି ଦେଖୁ ମୋ ମନ ହେଲା ଉଚ୍ଛନ୍ନ ।
ଭବିଷ୍ୟତେ ହେବ ଏମାନ
ତୂର୍ଣ୍ଣ ହୁଅ ତୁମ୍ଭେମାନେ ମୋ କଥା ମାନ । ୧୩ ।

ଅସୁସ୍ଥ ମନ୍ଦବଦନ ଦେଖାଇ ଦୀର୍ଘ ରଦନ
ଯାତୁଧାନ ନିବେଦନ ସୀତା କନ୍ଦନ,
ସନ୍ଦେହ-ଦ୍ରୁମ ଛେଦନ କଲା ପବନନନ୍ଦନ
କପିକୁଳ-ସଂକନ୍ଦନ ବୀରମର୍ଦ୍ଦନ ।
ଲେପି ଦେଲା ପର ଚନ୍ଦନ
ମଣିଲା ଜାଣିଲା ହେବେ ଦୈତ୍ୟ ସୂଦନ୧ । ୧୪ ।

ରାମ ସର୍ବ ଗୁଣାକର ସୁତ ଦଶରଥଙ୍କର
ବନ୍ଦ୍ୟ ସେ ନାଗନାକର କରୁଣାକର,
ହର୍ତ୍ତା କର୍ତ୍ତା ଭୂଲୋକର ଅଜାନୁଲମ୍ବିତ କର
ସକନ୍ଦର୍ପ୍ୟ ପ୍ରତୀକର କ ରୁଚିକର ।
ବୈକୁଣ୍ଠପତି ସେ ନିକର
ମୁଁ ବାତନନ୍ଦନ ଅଟେ ତାଙ୍କ କିଙ୍କର । ୧୫ ।

ବଧି ଯତପର୨ ଖରେ ଧନୁ ଭାଙ୍ଗି ପରଖରେ
ବାଳମା ନୃପମୃଗରେ ଦେଲେ ସୁଖରେ ।
ଯରଶୁରାମ ମାର୍ଗରେ ଭେଟିଲେ ଅତି ରାଗରେ
ପରଶୁ ଅନୁରାଗରେ ପେଷି ନଗରେ ।
ବିମାତା କୈକେୟୀ ଯୋଗରେ
ରାଜା ହୋଇ ନ ପାରିଲେ ନିଜ ନଗରେ । ୧୬ ।

---

(୧) ସଦନ—ବିନାଶ (୨) ଯଜ୍ଞ-ପର—ରାକ୍ଷସ

ବିଭୂତ ବୋଳି ଅଙ୍ଗରେ    ଭାଇ ଭାରିଯା ସଙ୍ଗରେ
ଅସ୍ଥିଲେ ଅତି ସୁଖରେ ନ ରହି ଘରେ,
ପିତା ସତ୍ୟ ପାଳନରେ    ମତ ଦେଇ କାନନରେ
ବୁଲିଲେ ହର୍ଷ ମନରେ ଫଳାଶନରେ ।
ଅସମ୍ଭବ ଯା' ଆନ ନରେ
ବିରସତା ସତ୍ତ୍ୱ ନ ଥାଏ ଆନନରେ । ୧୭ ।

ସୂର୍ପଣଖା ଖରବ ଦୂତରେ    ଯା ଅଶ୍ରିତ ଚରିତରେ
ପଞ୍ଚବଟୀରେ ଘୋରରେ ବାତାୟୁ[୧] ଚରେ ।
ଭୁଲି ଯାଇ ମାୟାରରେ    ଗୋଡ଼ାଇ ଗଲେ ପଛରେ
ଶାନ୍ତ ଲକ୍ଷ୍ମଣ ମିଛରେ ହେଲେ ବ୍ୟାଜରେ ।
ବୈଦେହୀଙ୍କ ବାକ୍ୟ ତେଜରେ
ଦଗ୍ଧୀଭୂତ ସଉମିତ୍ରି ଗଲେ ଓଜରେ । ୧୮ ।

ଦଶଗ୍ରୀବ ଗୋପନରେ    ରହିଥିଲା ବିପିନରେ
ଭିକ୍ଷା ମାଗିବା ଛଳରେ ଗଲା କୁଟିରେ ।
ମୈଥିଳୀଙ୍କୁ କପଟରେ    ନେଲା ସେ ନଭ ବାଟରେ
ଋଷ୍ୟମୂକ ପାହାଡ଼ରେ ବାଳିର ଡରେ ।
ସୁଗ୍ରୀବ ଥିଲେ ଜହାଡ଼ରେ
ଭାଇ ରଖାଇ ନ ଦେଲା ତାଙ୍କୁ ଗଡ଼ରେ । ୧୯ ।

ଶ୍ରୀରାମ ବୁଲି ବଣରେ    ସୀତା ଖୋଜିଲେ କାତରେ
ଋଷ୍ୟମୂକ ପର୍ବତରେ ପ୍ରବେଶ ତରେ ।
ସୁଗ୍ରୀବଙ୍କ ସଙ୍ଗତରେ    ମିତ୍ର ଅଗ୍ନି ଶପଥରେ
ମୁଁ ବିହାୟସ-ପଥରେ ବିନା ରଥରେ ।
ସମୁଦ୍ର ଡେଇଁଲି ନି-ଦରେ
ଲଙ୍କାଗଡ଼ଯାକ ଖୋଜି ଗଲି ଜଦରେ । ୨୦ ।

(୧) ବାତାୟୁ—ମୃଗ

ଏ ବାଣୀ ସୀତାହୃଦରେ ପ୍ରବେଶ ହୋନ୍ତେ ଅଦରେ
ଗୃହିଁ ଦେଲେ ଅନନ୍ଦରେ ବୃକ୍ଷେ ଊର୍ଦ୍ଧ୍ୱରେ ।
ଦେଖିଲେ ଏକ ବାନରେ ବସିଛୁ ପାଦପ ପରେ
ରାମ ଚରିତ ଗପରେ ତାଳେ ଶ୍ରାବରେ
ପଗ୍ଭରଲେ ଅନନ୍ଦଭରେ
କିଏ ତୁମ୍ଭେ ରାମକୀର୍ତ୍ତି ଗାଅ ପ୍ରେମରେ । ୨୧ ।

ମୁହିଁ ଏହି ଅବସରେ୧ ସଦା ଝୁରି ଝୁରି ମରେ
ବର ଦେବବ ସୁମରେ ଚନ୍ଦ୍ରା ମର୍ମରେ
ତୁମ୍ଭେ କି ତାଙ୍କ ବାର୍ତ୍ତାରେ ଅସି ଦଗ୍‌ଧ ଶରୀରରେ
ଜଳ ଢାଳ ଏ କାଳରେ ମୋତେ ପୂର୍ବରେ
ନୈକଷେୟ୨ ଋଷିବେଶରେ
ଯାଚକରୂପରେ ଅଣିଲା ଅକାଶରେ ।୨୨।

ରଖାଇ ଅଛୁ କ୍ଳେଶରେ ଏକଷ୍ଟି ମୋହ ପାଶରେ ୨୦
ଅସିଥିଲ ବା ଶେଷରେ କୀଟଶୀରସରେ
ସମ୍ଭୂତ ହେବା ଦେହରେ ଅସି ମୋତେ ଫଦେହରେ
ପକାଇଲ ପ୍ରତ୍ୟକ୍ଷରେ ଭିନ୍ନ ଲକ୍ଷ୍ୟରେ
ଖୋଜିଲେ ତାପର ଲକ୍ଷରେ
ନ ମିଳବେ ବିଶ୍ୱାସ ନାହିଁ ବଂଶାକ୍ଷରେ ।୨୩।

ବେଷ୍ଟିବ ସତେ କଣରେ ଅସି ସେହି ଶୂଳ ଶରେ
କମ୍ପା ମାରିବେ ଅସିରେ ସେ ଦଣର୍ଶିରେ
ମୋ ଜୀବନ ବଂଶା-ସରେ ପଶୁ ଯିବ ପଣ ସରେ
ସତ ରଖି ଚଳିବାରେ, ଅଠା-ବନରେ,
ଲଟିଗଲ ଚଳସ୍ତ ଶିରେ
ବାରି ଢାଳଥିଲେ ତରିଯିବ ମୁଁ ବାରେ ।୨୪।

---

(୧) ଅସର—ଉଦ୍ୟାନ (୨) ନୈକଷେୟ—ରାବଣ

ଦୂତ ଶୁଣି କାହାଣୀକି — ଦେଖି ବାଙ୍କ ଗୃହାଣିକି
ମୁଦ୍ରିକା ଦେଲା ପାଣିକି ନାରୀମଣିକି,
ସୀତା କହିଲେ ମୁଦିକି — ତେଜିଲି ଦୟାନିଧିଙ୍କି
ଅର୍ଜିଲି କେଉଁ ସିଦ୍ଧିକି ଧିକ ବୁଦ୍ଧିକି
ବୃଦ୍ଧି କଲି ଦୁଃଖ ବ୍ୟାଧିକି
ଏହା ମୋର କର୍ମେ ଲେଖିଥିଲା ବିଧି କି ।୨୫।

ଅବା ରାକ୍ଷସ ନଗରେ — ଶୁଆଇ ରାମଚନ୍ଦ୍ରରେ
ତୋତେ ଅଣିଲା ନଗରେ ବଡ଼ କଦରେ
ଖେଦ ଜାତ ମୋ ହୃଦରେ — ସତେ କି ବେନି ସୋଦରେ
ଭଲରେ ଥିବେ କନ୍ଦରେ ନିରାପଦରେ
ବିମାତା କୈକେୟୀ ବାଦରେ
ଏହା କଲା ବସୁଥିଲେ ରାଜପଦରେ ।୨୬।

ଗିରି ସମ ଚିନ୍ତା ମୋର — ହର ସାର ବନିତାର
ଭାବଥିଲି ଶର ତର ପେଶି କର୍ବୁର-
ପୁର(୧) ନାଶିବେ କର୍ବୁର(୨) — ହେମନ୍ତ କର ଅପାର
ଦେଖିବି ଦର-ହସିତ ମୁଖ ତାଙ୍କର
ମଧୁର ମୂରତି ରୁଚିର
ସତେ କି ପଡ଼ିବ ନେତ୍ରପଥେ ମୋହର ।୨୭।

କହେ ସମୀର-କୁମର — ମୁଁ ଅଟେ ଦୂତ ରାମର
ନୁହେ ବଇବ ଅମର ଦୈତ୍ୟ ପାମର,
ସନ୍ଦେହ ହୁଏ ତୁମର — ଏ ଦୋଷ ପୂର୍ବ କର୍ମର
ନ ପଡ଼ ଅଜ ଭ୍ରମର ଦୁଃଖ-ତମର
ନାଶପାଇଁ ଚେଷ୍ଟା ଅମର
ଲଭିଛୁ ମଧୁଶପ୍ୟାର କଥା ସୁମର । ୨୮ ।

---

(୧) କର୍ବୁରପୁର—ସ୍ୱର୍ଣ୍ଣପୁରୀ (ଲଙ୍କା) (୨) କର୍ବୁର—ରାକ୍ଷସ

ପ୍ରଦୀପ ଛୁଇଁ ପ୍ରମାଣ ଦଲ୍ ଥିବା ଯାଏଁ ପ୍ରାଣ
ପରସ୍ପରେ ଦେଇ ଶୁଣ ତହିଁ ଦ୍ୱିଜଣ,
ଏ ଅଟେ ମୂଳ କାରଣ କାନ୍ତ କାନ୍ତା ଗହଣ
ଭବିବ ନାହିଁ ଏ ପଣ କଥା ଅପଣ
ଥରେ ମାତ୍ର କର ସ୍ମରଣ
ବିଶ୍ୱାସ ନିମିତ୍ତ କହିଲେ ରଘୁଗୁଣ । ୨୯ ।

ଶୁଣି ସକଳ ବିଷୟ ସୀତା ନାଶିଲେ ସଂଶୟ
ଆନନ୍ଦିତା ଅତିଶୟ ହେଲେ ନିଶ୍ଚୟ,
ଭାଗ୍ୟ-ଶଶାଙ୍କ ଉଦୟ ଶୀତଳ ହେଲା ହୃଦୟ
ଏ ରାକ୍ଷସ ସମୁଦାୟ ବଡ଼ ନିର୍ଦ୍ଦୟ
ଶୀଘ୍ର ଅସି ସୋଦର ଦ୍ୱୟ
ପିଷ୍ଟପରୁ[୧] ଦୁଷ୍ଟଙ୍କୁ ଦିଅନ୍ତୁ ବିଦାୟ । ୩୦ ।

ସୀତା କହି ଏ ବାଣୀକି ଦେଲେ ସେ ମଥାମଣିକି
ଦେବୁ ତୁ ରଘୁମଣିକି ଅକ୍ଷୌହିଣୀକି[୨],
ଅଣି ତେତେ ଘାତକିଣୀକି ବିଜୟ କର ଏଣିକି
ମାରି ବଇରି-ଫଣୀକି ଏ ଧରଣୀକି
ଉଦ୍ଧରନ୍ତୁ ଦୁଃଖୁଁ ପ୍ରାଣୀଙ୍କି
ବିଧବା ଦଶା ଦିଅନ୍ତୁ ଦଇତ୍ୟୁଣୀଙ୍କି । ୩୧ ।

ଭୁଞ୍ଜି ଫଳ ମୂଳ ପତ୍ର ଥିଲୁଁ ଚିତ୍ରକୂଟ ଗୋତ୍ର
ମୋ ବକ୍ଷ ଚୈରିକ-ଚନ୍ଦ୍ର ଗ୍ରମଙ୍କ ଗାତ୍ର,
ବୋଇଲେ ହେଲି ପବିତ୍ର ବନ୍ଦ କଲେ ବାଙ୍କ ନେତ୍ର
ଏପରି ଘଟନା ତତ୍ର ଅତି ବିଚିତ୍ର
ନ ଜାଣନ୍ତି ସୁମିତ୍ରା-ପୁତ୍ର
ପତ୍ର ପ୍ରତ୍ୟୟ ନିମିତ୍ତ କହିଲି ମାତ୍ର । ୩୨ ।

---

(୧) ପିଷ୍ଟପ – ପୃଥିବୀ (୨) ଅକ୍ଷୌହିଣୀ – ସେନା

ଛିଡ଼ଜା ପ୍ରଭ ବନଯ୍ୟ ପରେ ମରୁତ-ତନଯ୍ୟ
ବିଟପୀ ଜାର ପସ୍ୱଯ୍ୟ ବିଟପୀକ୍ଷୟ୍ୟ
ଅଶୋକରେ ରକ୍ଷୀଚଯ୍ୟ ଶୋକେ କଲେ ହାଯ୍ୟ ହାଯ୍ୟ
ପଳାଇ ଭୂପାଗ୍ରେ ବ୍ୟଯ୍ୟ କଲେ ବିଷଯ୍ୟ
ଗୋକୁଳାନନ୍ଦର ଅଥଯ୍ୟ
ମନ କରୁ ପଯୋଜ-ପଯୃବଳୁ ଲଯ୍ୟ । ଘୋଷା ।

---

## ୨୮ଶ ଛାନ୍ଦ

### ରାଗ-ରସକୁଲ୍ୟା

ପ୍ରବୀଣ ଜନ ସ୍ଥିର କର ଚିତ୍ତ ଶ୍ରବଣ କର ଏ ରାମ ଚରିତ
ବଣ ଭାଙ୍ଗିବାରୁ ବାତ-ତନଯ୍ୟ ବାଣପର ଗଲେ ରାକ୍ଷସ ଚୟ
ରାବଣ ଅଗରେ ଭଣି
ଶ୍ରାବଣ ମାସର ଅସାର ଅସାର ହେବ ନେତ୍ରୁ ବହେ ପାଣି । ୧ ।

ଉପସ୍ଥିତ ଭୂପ ଘୋର ସଙ୍କଟ ଉପବନ ନଷ୍ଟ କଲା ମର୍କଟ
ରୂପ ତାହାର ନୁହେ ପରପାଟୀ କୂପ କଲ୍ପ କଲ୍ପ ନାସିକା ପାଟି
କୋପରେ ଗୈରବାଏ ଦାନ୍ତ
ଉପଲ୧ ଉପରେ ପିଙ୍ଗି ମଥା ପାତେ ଅଟେ ସେ ଅତ ଦୁର୍ଦ୍ଦାନ୍ତ ।୨।

ଗୋଟିଏ ମାତ୍ର ଶାଖୀ୨ ନାହିଁ ରଖି ଲୁଟି ଗୋଟି ବିଧା ବଧିଲା ରକ୍ଷୀ
ମିଟି ମିଟି କର ଗୃହେଁ ଚାହିଁଟି ହଟିବ କେୟାଡ଼େ ଶୂନ୍ୟ ଡରିଟି
ଯୁଟିବ ଯେ ହୁଏ ପ୍ରତେ
ଚ୍ଛୁଟି ଧର ତୋଟି ଚପିଲେ ଜୀବନ ଛୁଟିବ ଭେଟିବ ପ୍ରେତେ

---

(୧) ଉପଳ—ପଥର (୨) ଶାଖୀ—ବୃକ୍ଷ

ବୈଶ୍ରବଣ ଶ୍ରବଣେ ଏ ସଂବାଦ ପ୍ରସ୍ରବଣ ସମ ବହିଲା ସ୍ୱେଦ
ଅସ୍ତ୍ରପ ବଂଶଙ୍କୁ ଡକାଇ ପାଶେ ଅଶ୍ରୁ ମୁଖି କହେ ଅତି ବିରସେ
ଅସ୍ତ୍ର ଶସ୍ତ୍ର ଘେନି ଅସି
ତୁମର ସହିତ ସମରକୁ ଯାଇ ଗମାର କପିଙ୍କ ନାଶ ।୪।
ଭୈରବ ରବେ ଗର୍ଜିଲେ ସରବେ ଖରବେ ଖରବେ ଦୈତ୍ୟ ଗରବେ
ଫେରବେ ବୋବାଳି କଲେ ଏଇଠି, ମାରବରେ କେହି ନ ରହେ ସେଠି
ମାରି ଶର ଖରଧାର
ଧୂରନ୍ଧର ବୀର କୀଶ ଧରାଧର୧ ଧରି କଷିଡେ ଜବାର । ୫ ।
ବର୍ଣ୍ଣିତ ନ ହେଲେ ଘାତରୁ ଜଣେ ବର୍ଣ୍ଣ ନ ରହିଲେ ଯେ ଥିଲେ ରଣେ
ଘୂର୍ଣ୍ଣି ଲୁଚି ରହିଥିଲେ ଯେମାନେ ତୁର୍ଣ୍ଣ ଦେଇ ନିଜ ଜୀବନ-ଧନେ
ଦଶାସ୍ୟେ କଲେ ଗୋଚର
ଜମ୍ବୁମାଳି-ଜମ୍ବୁକଙ୍କୁ୨ ଶମ୍ଭୁବାମା- ବାହନ୩ ହେଲେ ବାନର । ୬ ।
ଜଦନ୍ତ୪ ଶୁଣି ଜଦ୍‌ବେଗେ ଦଶାସ୍ୟ ଡଦନ୍ତ କଲେ ସ୍ୱୀୟ ପଣ୍ଣାବାସ
ଡଦନ୍ତେ ସ୍ୱସୁତ ଅକ୍ଷୟୁ ସହ ଦ୍ୱିଦନ୍ତ ସ୍ୟନ୍ଦନ ହୟସମୂହ
ମଦ୍ୟପ କଲା ପ୍ରେରଣ
ମଦନକୁ ଯଥା ଅନ୍ଧକାରି୫ ପାଶେ ପେଷିଥିଲେ ସୁରଗଣ । ୭ ।
ଚତୁରଙ୍ଗ ଯାତୁରଙ୍ଗ ବାନର ଚତୁରାଙ୍ଗର ଦ୍ୱିତୁଙ୍ଗରେ ସାର
ଭ୍ରୁଭୁଉ ବଧେ ଅତୁରେ ଦନୁଜ ସତ୍ତୁର ସତ୍ତୁର ମାରେ ନାରାଜ
ଚତୁରବନ୍ତ ବନୌକା୬
ଶତ୍ରୁର ସୈନ୍ୟ-ଡାରକାକୁ ଏ ଷାଣ୍ଡୁ- ତ୍ରୁର ପରି ହେଲା ଏକା ।୮।
ଅକ୍ଷୟୁର ଅଦ୍ୟବର୍ଣ୍ଣ ବିକ୍ଷେପ୭ ଲକ୍ଷ୍ୟ କରି ପଳାଇଲେ କୌଣପ
ରାକ୍ଷସେଶ ଶୁଣି କଲା କ୍ରନ୍ଦନ ବକ୍ଷ ଉନ୍ତାଇଲା ନୟନବନ୮
ପକ୍ଷହୀନ ବ ପ୍ରକାରେ
ଅକ୍ଷମ ହୋଇ ପଡ଼ିଗଲା ଭୂତଳେ ଅକ୍ଷରେ କହି ନ ପାରେ । ୯ ।

---

(୧) ଧରାଧର—ପର୍ବତ (୨) ଜମ୍ବୁକ—ଶୃଗାଳ
(୩)ଶମ୍ଭୁବାମାବାହନ – ସିଂହ
(୪) ଉଦନ୍ତ—ସମ୍ବାଦ (୫) ଅନ୍ଧକାରି—ଶିବ
(୬) ବନୌକା—ମର୍କଟ (୭) ଅକ୍ଷୟୁର ଅଦ୍ୟବର୍ଣ୍ଣ ବିକ୍ଷେପ – କ୍ଷୟ
( ) ନ – ଜଳ

ମେଘନାଦକୁ କହିଲ ସଂଶ୍ରଦ୍ଧେ    ଶ୍ଳାଘ୍ୟ ତୁହି ପରା ଅସୁରମଧ୍ୟେ
ବାଘକୁ ଘାସ ଦାନ କଲ ପୀଡ଼ା    ମୋ ଘରେ ମର୍କଟ କରୁଛି କ୍ରୀଡ଼ା
ଅଘଟନ କଥା ହେଲ
ଅଘାରଙ୍କ[୧] ନ ଡରଇ ଯେ ବ୍ରହ୍ମାଣ୍ଡେ    ଅଘସ୍ର[୨] ଯନ୍ତ୍ରଣା ଦେଲ । ୧୦ ।

ବଜ୍ରପାତ-ବଳଦଳା-କଥିତ    ବଳାଇଲି ନାହିଁ ଯୁଦ୍ଧରେ ଚିତ୍ତ
ବଳାହକକୁ ଯେସନ ମରୁତ    ପଳାଇ ଯାଉ ଅଥବା ମରୁ ତ
ବଳୀମର୍ଦ୍ଦନ ମୋ ନାମ
ବଳୀବର୍ଦ୍ଦ କେବେ କଳପାର ତୁମ୍ଭେ    ଶାର୍ଦ୍ଦୂଳ ଦଳନେ କ୍ଷମ ।୧୧।

ଶକ୍ରଜିତ ବନ୍ଧ ବପ୍ରା ପାଦରେ    ତଳ୍ପ ପାଦରେ ବସିଲ ମୋଦରେ
ବନ୍ଦନେନା ଦେଲେ ତୁଳତୁଳିକ    ତକ୍ର[୩] ମସ୍ତ୍ୟ ପୂର୍ଣ୍ଣକୁମ୍ଭ ବଲୋଙ୍କ
ଶୁକ୍ରଶିଷ୍ୟ ଶସ୍ତ୍ର ଧରି
ବିକ୍ରମ ଦେଖାଇ ଗମନ୍ତ୍ର ପଛରେ    ପିପିଲିକା ଧାରି ପରି । ୧୨ ।

ଶର୍କରକୁ ଯଥା ପିମ୍ପୁଡ଼ି ପଲ୍ଲ    ମର୍କଟକୁ ତଥା ବେଷ୍ଟିତ ମଲ୍ଲ
କର୍କଟ ମାସର ବର୍ଷା ପ୍ରକାର    କର୍କଶରେ କଲେ ଶର ପ୍ରହାର
କର୍କନ୍ଧୂ ପତନ ପରି
ଅର୍କସୁତ ଭଗିନେୟ ମନେ କରି    ଦୈତ୍ୟକୁ ମାରନ୍ତି ଧରି ।୧୩।

ଅବର[୪] ଛବକ୍କ ବହୁଲେ ଦୈତ୍ୟେ    ବବ୍ବର ପ୍ରଭା ଯେମନ୍ତ ପ୍ରଭାତେ
ଅବୀର ଯେ ଦବ ଲଭଲେ ଭ୍ରାନ୍ତି -    ଅବ[୫] ପରି ବବ ବବ ପଳାନ୍ତି
ଶ୍ରବ ଯାଉଛି ଶୋଣିତ
ଛବର[୬] ସକଳେ କହୁଲେ ବାକଳେ    ଏହା ନ ଥିଲୁଁ ଶୁଣି ତ ।୧୪।

ଶରଦ ସରସୀ ଶୂର ଶରୀର    ଶରବର ସରସିଜ ପ୍ରକାର
ସୁରପତି-ପର ହେବାର ଜାଣି    ସରସ ଗଦା ମୁଦ୍ଗର ଅଣି
ବାରମ୍ବାର ପ୍ରହାରିଲ
ପରବଳେ ପରବଳେ ପରବତେ    ହନୁମନ୍ତ ନିବାରିଲ ।୧୫।

---

(୧) ଅଘାର—ବଜ୍ର  (୨) ଅଘସ୍ର—ସ୍ଵହ୍ଵଶୂନ୍ୟ  (୩) ତକ୍ର—ଦଧି
(୪) ଅବର—ପଙ୍ଗୁ  (୫) ଅବ—ଛାଗ  (୬) ଛବର—ବୃଦ୍ଧ

ଅର୍ଣ୍ଣୀ-ବିଷ ବିଶିଖକୁ ସ୍ଵଗରେ ପେଷିଲ ବାନ୍ଧଲ କପିକୁ ଖରେ
ଭଷିଥିଲେ ମୋତେ ସାବିତ୍ରୀବର୧ ଫାଶୀରେ ପଡ଼ି ବିଗୁରନ୍ତି ଗୀବ
ନାଶିବ ନାହିଁ ମୋ ପ୍ରାଣ ।
ହସି ହସି ଖସି ଯାଆନ୍ତି ଏଥିରୁ ଦୁଃଖିତ ହେବେ ଦ୍ରୁହୁଣ ।୧୬।
ବାନର ମନରେ ଭାବିଲ ଯାହା ଧ୍ୟାନରେ ଇନ୍ଦ୍ରାର ଜାଣିଲ ତାହା
ଦାନବମାନେ ଘେର ଗୁରୁପାଶେ ଆନ ଦଉଡ଼ିରେ ବାନ୍ଧଲେ ରୋଷେ
ଅନୟନ କର ତାକୁ
ଅନନ୍ଦରେ ଦଶାନନ ସମ୍ମୁଖରେ ଦେଖାଇଲେ ଶୂରତାକୁ ।୧୭।
ପ୍ରହସ୍ତ ପଚ୍ଛରେ ରାଜା ଆଦେଶେ କହ କପି ଅସି କେଉଁ ଉଦ୍ଦେଶେ
ମହତ ଗହନ କଲୁ ବିନାଶ ବହନ ପ୍ରକୃତ କଥା ପ୍ରକାଶ
ନୁହଇ ଏହା ଉଚିତ
ଅହସ୍ତ-ଜ୍ୟୋତି ବହ ସହନନେ ଅଟୁ କ କେଉଁ ଅଦଭ୍ୟ ।୧୮।
ହନୁମନ୍ତ ଭଣି ରାବଣ ପ୍ରତି ଭାନୁବଂଶେ ଦଶରଥ ନୃପତି
ତନୁଜ ତାଙ୍କର ଶ୍ରୀରାମଚନ୍ଦ୍ର ଧନୁର୍ଦ୍ଧର ମଧ୍ୟେ ଅଟନ୍ତି ଇନ୍ଦ୍ର
ମନୁଜମଧ୍ୟେ ଉତ୍ତମ
ଦନୁଜକୁଳ ମନୋଜ ଦହନକୁ କୃଶାନୁରେତା୨ଙ୍କ ସମ ।୧୯।
ଭୂମ୍ନାନକର ପାଶେ ଯଥା ଋକ୍ଷ୩ ଭୂ ମ୍ନାନ ତାଙ୍କ ପାଶେତ ଥା ମୂର୍ଖ
ମହିଳା ହର ଅଣିଲୁ ରାମର ମହିମା ଜାଣିବୁ ଥାଅ ପାମର
ମହୀରୁ ଯିବୁ ତୁ ପାଜି
ଅଜ କହିଲି ମୁଁ ରାଜବେ ଏଠାରେ ଭକ୍ଷ କପି ହେବ ଅଜ୍ଞ ।୨୦।
ଦଶବଦନ ଶୁଣି ହେଲ କ୍ରୋଧ ଦାସଙ୍କୁ ଅଜ୍ଞା ଦେଲ କର ବଧ
ପାଶସ୍ଥିତ ବିଭୀଷଣ ଭାଷଇ ନାଶ-ଯୋଗ୍ୟ ବାର୍ତ୍ତାବହ ନୁହଇ
ହସଇ ବଂଶ ନୟନ
ଦାଶରଥିଙ୍କୁ ଏ ମର୍ମ କହାଇବ ଦେଖିଲ ମୋର ସଦନ ।୨୧।

---

(୧) ସାବିତ୍ରୀବର—ବ୍ରହ୍ମା (୨) କୃଶାନୁରେତା—ଅଗ୍ନିତେଜ
(୩) ଋକ୍ଷ—ନକ୍ଷତ୍ର

ମଲ୍ଲପଲ୍ଲ ଭଲ୍ଲ ଶକ୍ତି ଧର — ଛଲ୍‌ବଲ୍ ହେଲେ ଅପେ ପ୍ରହାର
ବଲ୍ ବଲ୍ ଭର ଗୃହାନ୍ତ ହାର — ଭଲ୍ ବଳବନ୍ତ ଅଟେ ଏ ହର
ଛଲ୍ଲବ ନ କରେ କାଳ
ଅସ୍ତ୍ରାଘାତେ ହର୍ଷ ବର୍ଷଇ ବିମର୍ଷ — ନୋହୁ ପୁଷ୍ପଦଣ୍ଡ-ବାଳ ।୨୨।

ବିଂଶନେଣ କହେ ପିଅ ବିଷ — ବିଷମ ଜନ୍ତୁ ଏ ବଡ଼ ଖର୍ବାଶ
ନାଶ ମରଦୁଷ୍ଟ ନୋହେ ମନୁଷ — କାଶ ଜୀବଣ୍ଟାଏ ଜାଣଇ କିସ
ହସଇ ବଡ଼ ସାହସ
ଦଶ ଗୃହ ପୁରେ ନ ଥିବେ ଏପର — ଅଟଇ ଏ କି ବିଦଶ ।୨୩।

ଭ୍ରସଇ କପି ପାଇ ଏ ଅଭ୍ରସ — ଦାଶରଥିଙ୍କର ଅଟେ ମୁଁ ଦାସ
ବଶ ହେବି ନାହିଁ ହେଲେ ଅବଶ — ବସନ ଅଣ ଯା ଅଙ୍ଗ ନ ବସ
କପଣି ନ ଦଅ କପ
ଅସର୧ ଲଞ୍ଜରେ ବାନ୍ଧ ତୈଳ ଢାଳି — ଲଗାଇବେ ଅଶ୍ରୟାଶ୨ ।୨୪।

ଗରଳ ପିଅଇଲେ କ୍ଷୁ ସାଗର — ଗରବ କରୁଥିବି ତୋ ଅଗର
ମରଣ-ଭେଦ ଏ ମୋର ପାମର — ମରମ କହିଲି ମନେ ସୁମର
ସବଳୋପାୟ ନାଶର
ମୋ ବଧେ ଯେଣୁ ଶ୍ରଦ୍ଧା ବଳାଇଲୁ — ତେଣୁ ମୁଁ କଲି ଗୋଚର ।୨୫।

ଅସୁରଦେଶେ ଭ୍ରମି ସବୁ ବାସ — ଅସୁଲ୍ଲ କଲେ ଦୁତ ବସ୍ତୁ ବାସ
ଅଶୁଚି ଶୁଚି ନାହିଁ ଭେଦ ଲେଶ — ଅସୁମାର ମନ୍ତ୍ରାଧର ସଦ୍ଗୁଣ
ଅସ୍ପୃଶ୍ୟଯୁକ୍ତ ମାନସ
ଅସୁନ୍ଦର ସୁନ୍ଦରକୁ ଦେ ଗୃହଁନ୍ତି — ଗୁଡ଼ାଇ ଦେଲେ ରାକ୍ଷସ ।୨୬।

ଅମରାର ଭ୍ରଷ୍ଟେ କପିକି ଛଳ — ଅମ୍ବରମାନଙ୍କ୩ ଦଶୁଛନ୍ତି କି ଭଲ
ଅମ୍ବର୪ ଦଶେ ନ ଥିବ ଯ୍ୟା ଲଗି — ଅମ୍ବର-ଯା-ବନ୍ଧୁ୫ ନ ଥିବେ ଦେଖି
ଶମ୍ବର ସମ ନ ଗୃହଁ
ସମ୍ବନ୍ଧ ତୁଟିଲା ସଂସାରକୁ ତୋର — ଅର୍ଜିଲୁ ମୋଠାରେ ଦ୍ରୋହ ।୨୭।

---

(୧) ଅସର—ରାକ୍ଷସ, (୨) ଅଶ୍ରୟାଶ—ଅଗ୍ନି,
(୩) ଅମ୍ବରମାନ—ବସ୍ତ୍ରସମୂହ, (୪) ଅମ୍ବର—ଦଗ,
(୫) ଅମ୍ବର-ଯା-ବନ୍ଧୁ—ଦେବତା,

କୋପାବିଷ୍ଟ ହୋଇ କହେ ବାନର କ୍ଷପାଚର[1] କ୍ଷପା[2] ନାହିଁ ତୋହର
ଅପାର ବସ୍ତ୍ର କହୁଁକି କାରଣେ ଅପାରଗ ହେଲୁ ଲଞ୍ଜ ପୂରଣେ
ଅପା ତୋ କଳିର ଗୋଡ଼
ଅପାୟ କାଳ ଏଥର ପହଞ୍ଚିଲା ଉପାୟ ଚିନ୍ତରେ ମୂଢ଼ ୨୮।

ଉଶନାଶିଷ୍ୟଗଣ ଆଦେଶରେ ଉଦ୍ୟତ ହୋଇ ତରେ ଅନୁଚରେ
ଉଷର୍ବୁଧ[3] ଅଣି କଲେ ସଂଯୁକ୍ତ ଉପୁନା ଧାନ୍ୟ ପରି ହେବୁ ତୁ ତ
ତୁ ସୁମର ଇଷ୍ଟଦେବ
ଅସ୍ତୁ ମୃତ୍ୟୁ ଆସୁଅଛୁ ଯାତୁଧାନ ହାତୁ ତୋ ରକ୍ଷା ନ ହେବ ।୨୯।

ଯାତନା ହରଣାର୍ଥେ ବିଂଶେକ୍ଷଣ ଜାତବେଦ ଲଗାଇଲା ତକ୍ଷଣ
ଘୃତକୁ ଘୃତ ଢେଇଁଲା ବାନର ଯାତ ଲଗିଗଲା ଲଙ୍କାନଗର
କାତର ହେଲା ଅସୁର
ହାତର ଶୃଙ୍ଖଳ ଗାତରେ ପଶିଲା ଅପେ କରନ୍ତୁ କସୁର ।୩୦।

କପିଁ ସ୍ଥାପିଗଲା ବହ୍ନି ସଦନ କମ୍ପିତ ହେଲେ ଦର୍ପୀ ଦଇତପୁଞ୍ଜ
ପୀତବେଗୀ ମିତ ହେଲା ଦର୍ପିତ ଅପୀଡ଼ ତା କ୍ରୁପିତେ ନବାପିତ
ଜ୍ଞାତ ହୋଇ ତା ବାତଜ
ଜାତ କରି ଜାତବେଦ ଦଗ୍ଧୀଭୂତ କଲା ଲଙ୍କାର ନିକାଯ୍ୟ[4] ।୩୧।

ରଣ କରି ଲଭିଥିଲେ ମରଣେ ପଣ କରି ଅସୁର ପଣ ପଣ
ବାସବାରି-ତାତ ବୃଦ୍ଧିରେ ବାସ ନାଶ ଗଲା କେତେ ହେଲା ବିନାଶ
ପଡ଼ ଦ୍ୱାବିଂଶ ସମ୍ପଦ
ନନ୍ଦସୁତ ପଦଦ୍ୱନ୍ଦ ଭାଳି ହୃଦ ସମ୍ପାଦେ ଗୋକୁଳାନନ୍ଦ ।୩୨

---

(୧) କ୍ଷପାଚର—ରାକ୍ଷସ (୨) କ୍ଷପା—ଲଜ୍ଜା, (୩) ଉଷର୍ବୁଧ—ଅଗ୍ନି
(୪) ନିକାଯ୍ୟ—ଗୃହ,

## ୨୯ଶ ଛାନ୍ଦ

### ରାଗ—ଅଷାଢ଼ଶୁକ୍ଳ

ସର୍ବଜ୍ଞ ଶୁଣ ସ୍ଥିର କରି ଚିତ୍ତ      ସୂର୍ଯ୍ୟବଂଶୀ ରାମଚରିତ
ଶିବ ବିଂଶ ବେଣ୍ଣ ଭସ୍ମାନନ୍ତର      ସର୍ବସଂହାରକ ପାଶେ ଗଲା ବୀର
ସିତାମ୍ବୁଜାନନୀ
ସୀତା ସୁଖୀ ହେଲେ ଦେଖି ପାବନ ।୧।

ଚରଣ-ପଙ୍କଜେ କଲା ଦଣ୍ଡିନ      ଚରକୁ କହିଲେ ହେମ-କାମିନୀ
ଚରମାଚଳେ ଗଲେଣି ଅର୍ଯ୍ୟମା      ତର ଏ କାନନେ ସୁଖେ ତ୍ରିଯାମା
ଚରମରେ ଯାଅ
ଚର-ଅଚର-ପତିଙ୍କି ଜଣାଅ ।୨।

ଶରଣପଞ୍ଜର କାର୍ଯ୍ୟ ସୁଫଳ      ଶରଦିନ୍ଦୁ ପରି ମନ ପ୍ରଫୁଲ୍ଲ
ସରସିଜ-ପଦଯୁଗଳ ସ୍ମରି      ଶର ପରି ଖରେ ଗମନ କରି
ସରଳ ରେଖାରେ
ଶରମ ପାଇବେ ତାତ ଲେଖାରେ ।୩।

ବି-ଜୟ ଗଡରେ ବିଜୟୀ ବୀର      ବିଜୟ ମହେନ୍ଦ୍ରଭୂଧର ଶିର
ଅଙ୍ଗଦ ତ ଗୃହିଁଥିଲେ ଅକାଶେ      ଅଙ୍ଗ ଦଣ୍ଡ କଲେ ତାର ଅଶେଷେ
ବଦନ୍ତି ଏ ଭାଷ
ବଦନରୁ ଜଣାଯାଏ ଅଭ୍ୟସ ।୪।

ବିକର୍ତ୍ତନ-ବଂଶୀ ରାମଙ୍କ କ୍ଳେଶ      ବିକର୍ତ୍ତନ ହେବ ଠିକ ହେ କୀଶ ।
ବିକ ଏ ଦ୍ରବ୍ୟ ନିଅ ଏ ବାକ୍ ଧନ      ବିକଳ ହେଉଛୁ ଅମ୍ଭ ଜୀବନ
ବିକଳ୍ପ ମାନସ
ବିକଚ ହେବ ହୃଦୟ-ସାରସ ।୫।

ଶୂରବର କହେ ହେ ତାରସୁତ      ସୁରବର୍ତ୍ମ ପଥେ ଗଲି ମୁଁ ଦ୍ରୁତ
ସୁରମାନାମ୍ନୀ ଗନ୍ଧର୍ବୀ ମୋ ପାଶେ      ସୁର ଆଦେଶେ ମିଳିଲା ସୁବେଶେ
ଗରଭେ ପ୍ରବେଶି
ଗରବ-ପର୍ବତ ଦେଲି ମୁଁ ନାଶି ।୬।

ପ୍ରସନ୍ନ ହୋଇ ପବନସୁ ଦେଲ      ପ୍ରସବନ୍ତୀ ସମ କଲ୍ୟାଣ କଲ
ସହଜେ ଲଙ୍ଘନ କରି ସାଗରେ      ସହଳେ ମିଳି ସୁବେଳ-ନଗରେ
ସହର ଦେଖିଲ
ସହସ୍ରାଂଶୁ ଅସ୍ତ ଅପେକ୍ଷା କଲ ।୭।

ସିନ୍ଧୁରେ ମଜ୍ଜି ଗଲେ କି ତରଣି      ସିନ୍ଦୂର ଘେନେ ବାରୁଣୀ-ତରୁଣୀ
ଇନ୍ଦୁରକର ବସ୍ତ୍ରାରେ ଷିତରେ      ଇନ୍ଦୂରଭକ୍ଷଣକାରୀ(୧) ମୂର୍ତ୍ତିରେ
ଅବଦାତେ ଗଲ
ଅବନଗାସୂ ଦୈତ୍ୟଙ୍କ ଠକିଲ ।୮।

କଟକେ ଛଟକେ ଗଲ ସାକ୍ଷାତେ      ଅଟକକାରୀ କଟକ ଅଜ୍ଞାତେ
କଣ୍ଟକର ଇଷ୍ଟଦେବୀ ଜାଣିଲ      କଣ୍ଟକ ସେ ଯିବା ମାର୍ଗରେ ହେଲ
କଟକଣା କରି
କଟ କଟ ହେଲ ଗରଜି ଘୋର ।୯।

କୁଟିଳା କୁଟିଳ ପ୍ରଥମେ ମୋତେ      ଖୁଣ୍ଟୁ ମୁଁ ସ୍ୱ ଶୋଷା ରଖି ତା ଶବ୍ଦେ
ଗୋଟି ବଧ ଗୋଟିକେତେ ମୁଁ ଦେଲି ଘୋଟାଘୋଟି ଟୁଟି କରି ଘୁଣ୍ଡଲି
ଛୁଟିଥାନ୍ତା ପ୍ରାଣ
ଘୁଣ୍ଟି ପିଟି ହୋଇ ଗଲ ସେ ଜାଣ ।୧୦।

ଜଟାଜୁଟଧାରୀ ନାରୀ ସର୍ବାଣୀ      ଝଟକରି କହିଲ ଏହି ବାଣୀ
ନଷ୍ଟ ହେବ ନିଶ୍ଚେ ଲଙ୍କା ନଗର      ନାଟ କରିବେ ଭଲ୍ଲୁକ ବାନର ।
ନିଟଳ(୨) ମୋ ଗିରି
ନିଟଳ ଫାଟିଲ ଦଇତଙ୍କର ।୧୧।

ଅଟ୍ଟାଳିକା ଗୃହ ଅଗଣା ବାରି      ଅଣ୍ଟକର ଅନୁସନ୍ଧାନ କରି
ତାଟଙ୍କଶୋଭନାଙ୍କି ନ ଦେଖିଲ      ତାଟକା ହୋଇ ମନରେ ଭାଳିଲ
ଥଟ୍ଟା କଲି ଅବା
ଥଣ୍ଟଧାରୀ ବଗୁର ହେଲି କାବା ।୧୨।

---

(୧) ଇନ୍ଦୁରଭକ୍ଷଣକାରୀ—ବିଡ଼ାଳ      (୨) ନିଟଳ—ଅଟଳ, କପାଳ

ଅଟବୀକ ତହୁଁ ଗମିଲ ଖର          ଅଟଇ ଉଦ୍ୟାନ ଦଶମୁଖର
ଘଟନାକୁ ହେବ ହୀନ ନନ୍ଦନ          ଘଟଶ୍ରୁତି-ସ୍ମୃତି-ବିହାରବନ
ବିଟପୀ ବହୁତ ।
ବିଟ ଧୃଟ ଶଠ ଦୈତ୍ୟ ପାଳିତ । ୧୩ ।

ଘଟ-ଜଳଦଥ ନାହିଁ ସେ ସ୍ଥଳ          ସ୍ଫୁଟକୁ ଡର ବର୍ଷେ ଆଖଣ୍ଡଳ
ଖଟଇ ବସନ୍ତ ଅସୁର ଡରେ          ବାଟ ଗୃହଗୋଠା ଗୃହ କଡ଼ରେ ।
ଫାଟକ ଲଗିଛି
ଛଟକରେ ଇନ୍ଦୁଧନୁ ଜିଣିଛି । ୧୪ ।

ହାଟକବରଣୀ ଜନକଜେମା          ହେଠମୁଖେ ବସି ଅଛନ୍ତି ବାମା,
ହଟିବ ମୁଖକୁ ନଟନସାଇଁ          ହଟହଟା କଥା କହି ନୁହଇ ।
ଫଟା କପାଳ ତ
ଫୋଟକା ବିନା ଅନଳରେ ଜାତ । ୧୫ ।

ଗୋଠ ଦଇତୁଣୀ ଅଛନ୍ତି ଜଗି          ଓଠ କାବ ଅଛୁ ନାଭକ ଲଗି,
ଓଟ ପର ଅଟେ ତାହାର ଆସ୍ୟ          ଘୋଟକ ସଦୃଶ ତାହାର ହାସ୍ୟ ।
ମୋଟ ମୋଟ ପେଟ
ବୋଟ ବୋଲିବ ମୁଁ ଅବାରେ ଗ୍ଲୋଟ ।୧୬।

ରଟ-ମଟ କର ଗୃହିଁଲେ ଜାଣ          ଛଟପଟ ହୋଇଯିବ ପରାଣ,
ପୂଟ ଫାଟ ଭୃଟ ଭ୍ରଟ ହୁଅନ୍ତି          ଘୋଟପାଟ 'କଲି' ମଧ୍ୟ ଲଗାନ୍ତି ।
କୁଟଭାରେ ପୂର୍ଣ୍ଣ
କୁଟ ହେବ ଅପଘନକୁ ସାନ ।୧୭।

ଅଙ୍ଗଦ ହୃଦ କୁମୁଦକୁ ମୃଦ          ଛନ୍ଦଦେ ଗୃନ୍ଦବଭ ପଦବୃନ୍ଦ,
ଉପହାରସ୍ୱରୂପ ଉପବନ          ଅର୍ପଣରେ ତଳେ ନୋହି କୃପଣ ।
କପିକୁଳ ଗଲେ
ଅର୍ପିବା ଉଦ୍ୟାନୁ ଫଳ ଖାଇଲେ । ୧୮ ।

ପକ୍ଷବନ୍ତ ପର ବକ୍ଷକ ଗଲେ ସୁଗ୍ରୀବେ ଲୁହାର ଗୁହାର କଲେ,
ଦକ୍ଷିଣାଙ୍କୁ ଯାଇଥିବା ସୈନ୍ୟ ଦକ୍ଷିଣା-ସ୍ୱରୂପ ନେଲେ ଉଦ୍ୟାନ
ଦଳି ବୃକ୍ଷାବଳୀ
ଜଳି କର ତୋଳ ଫଳାଦ ଗିଳି । ୧୯ ।

ସନ୍ନିଧିକ ରତ୍ନତନୟ ସଇ ସନଧି ବଦାସ୍ୟ ତାଙ୍କ କସଇ
ଅଟଇ ଦକ୍ଷିଣ ବାଞ୍ଛା କୁଶଳ ଅଟବୀ ଭଙ୍ଗିବାରୁ ଅଟକଳ ।
ଜଗତ୍ପ୍ରାଣ-ତନୟ
ଅଗତ୍ୟ ଅଛି କହିଲେ ଏ ବିଷୟ । ୨୦ ।

ଅବନୀଜାଧବ ଭାଷିଲେ ମିନ୍ଦ ଅବଧାରଣ ତ ନୁହେ ବଚନ୍ଦ,
ଅବଳାର ଅବସ୍ଥିତ ଜାଣିବ ଅବସାଦ-ଗ୍ରାବେ ମଘବା ହେବ
ଅବହେଳା ବର୍ଜି ।
ଅବଶ୍ୟ ରିପୁଦର୍ପ ଦେବ ଗଞ୍ଜି । ୨୧ ।

ପତିତପାବନ ପାଦତଳରେ ପତିତ ପବନନନ୍ଦନ ଖରେ,
ଶିରସ୍ତ ତ ଆଶୀର୍ବାଦ ବର୍ଷଣେ ଶିର ସ୍ୱତଭୂଷା ଅଣା ଶ୍ରବଣେ ।
ବିବସ୍ତ୍ରୀ ତ ସେହୁ ।
ବରସ୍ତ୍ରୀ ବାରଦଲକ୍ଷ୍ୟଙ୍କୁ ବହୁ । ୨୨ ।

ପ୍ରଭଞ୍ଜନସୁତ କହେ ହେ ଦେବ ପ୍ରଭଞ୍ଜନ ଖେଦ-ପାଦପ ହେବ,
ଶତ ଯୋଜନ ସିନ୍ଧୁ ଡେଇଁଗଲି ଶତଦ୍ରୁଦା-ଚରଣାଙ୍କୁ ଦେଖିଲି ।
ସତ ମୁଁ କହୁଛି
ଶତମନ୍ୟୁଜତ-ତାତ ନେଇଛି । ୨୩ ।

ବନିତାମଣି ସଶୋକେ ଅଶୋକ- ବନୀ ମଣ୍ଡନ୍ତ ନଭେ କି ଶଶାଙ୍କ
ନିଶାଚରୀ ଗୃହ ପାଶୁଣେ ଘେର ନିଷାଦ ହରିଣୀ ଉପମା ଧର ।
ନିଶାପତ ନାହିଁ ।
ନିଶାଖିଆ ନାସ୍ତି ଯେହେତୁ ସେହୁ । ୨୪ ।

ପ୍ରତ୍ତପଦର୍ଶନୀ ଜାଣିବାପାଇଁ ପ୍ରତ୍ତ କଥା ଗଲ୍ ମୁହିଁରେ ଗାଇ,
ପ୍ରତାପୀ ଲଙ୍କେଶ ଦଶବଦନ ପ୍ରତାରଣା ବୋଲ୍ ଭାଳିଲେ ମନ ।
ପ୍ରତ୍ୟୟ ନ ଗଲେ ।
ପ୍ରଥମେ ମୁଦ୍ରିକା ଦେଲ୍ ମୁଁ ଭଲେ । ୨୫ ।

ତଥାପି ଥାପିଲେ ନାହିଁ ବିଶ୍ୱାସ କଥା କେଳଙ୍କମୁରବ ପ୍ରକାଶ,
ଯଥାର୍ଥମତେ ବ୍ୟଥା କଲ ଦୂର ମଥାମଣି ଅଣି ଦେଲେ ମୋ କର ।
ଶିତିକଣ୍ଠବାଣୀ ।
ଶତ ହେବା ଜର ଭଣି ସିହାଣୀ । ୨୬ ।

ପୁନାଗବର ଅଶୋକରେ ସ୍ଥିତ କମଳାକ୍ଷୀର ଅଶନ ବର୍ଜିତ,
ରସାଳସାଙ୍କ ବୃକ୍ଷ ଲତା ନାସ୍ତି ସେ ହରଗଜସି ହର ତାକନ୍ତି ।
ଶୀର ତରୁଣୀ ତ ।
କାମିନୀ ଗୁଣନ୍ତି ବଂଶଚରିତ । ୨୭ ।

କଳାହଙ୍କକେଶୀ ପାଶୁ ଅସିଲ କଳାହ୍ନାରେ ଅଶୋକକୁ ନାଶିଲ,
କଳାକାଦଳ ପ୍ରାବୃଟେ ଯେପରି କଳ-ଅବଳୀ ଧାଇଁଲେ ସେପରି ।
କଳାବଳ କରି ।
କଳାବନ୍ତ-କପଷ ନେଲ ଧରି । ୨୮ ।

ଦଣ୍ଡକଣ୍ଠ ପାଶେ ନେଲ ନିରୋଧ ଦଶନ କାମୁଡ଼ି କଲ ସେ କ୍ରୋଧ,
ଜପତ ହୋଇ ଅସତ କହିଲ ଜଣନା-ଶିଷ୍ୟ ଅବାସ ଦହିଲ ।
ଜପଟ୍ରୁଧ ଯୋଗେ
ଜପର ସଦୃଶ ସେ ଦୃଶ ଅଙ୍ଗ । ୨୯ ।

---

୨୭ । ଏ ପଦରେ ହନୁମନ୍ତ ସୀତାଙ୍କ ଅବସ୍ଥା ବୃକ୍ଷମାନଙ୍କର ନାମସଙ୍ଗ କହୁଅଛନ୍ତି । ପୁନାଗ, ବର, ଅଶୋକ, କମଳା, କ୍ଷୀର, ଅଶନ, ରସାଳ, ଶାଳ, ହରିଟଙ୍କ, ହରଟ, ଶିଂତରୁ, କାମିନୀ, ବଂଶ ଏ ଗଛମାନ ଅବସ୍ଥିତ ।

ଗୁଣୀଗଣାଗ୍ରଣୀ ଶ୍ରୀରଘୁନାଥ  ଶୁଣି ଭଣିଲେ ଜାଣିଲି ବୀରଦ୍ଧ,
ହା ରମଣୀ ବୋଲି କଲେ ବିଳାପ  ହାର ମଣି ଥିବ ଫଣୀ କଳପ ।
ପାଣି ମଧ୍ୟେ ସ୍ଥିତା ।
ପାଣି ଗଣ୍ଡେ ମଣ୍ଡିଥିବ ମୋ ସୀତା । ୩୦ ।

ରାମଚନ୍ଦ୍ର ନାମ ଯେଣୁ ମୋହର  ରାମଚନ୍ଦ୍ରଅଙ୍କେ ଅଙ୍କେ ବିହାର,
ରଘୁବଂଶେ ସୋମ ସମ ମୁଁ ଜଣେ  ମଙ୍ଗଳ କଲି ନାହିଁ ବୁଧପଣେ ।
ଗୁରୁ ଜନ ଯେତେ ।
ଅଶନି ପକାଇବେ ମୋ ଚରିତେ । ୩୧ ।

ମେଷ ବୃଷ ଇଷ ମିଥୁନେ ବାଧା  ଦେଲେ ପାଶୁଁ ଦୂର ସେ ସିଂହମଧ୍ୟା
କର୍କ-କନ୍ୟା ଶୋଭି ତୁଳାକୁ ବିଷ୍ଣୁର ଧନୁର୍ଦ୍ଧର ବୀର ମୁଁ ପଣ ତା'ର
ଥାଉ ଥାଉ ମୁହିଁ,
ମକରକେତନ କୁମ୍ଭକ ହୋଇ । ୩୨ ।

ମୋ ସୁଖ-ସାଗର ତଟରେ ଲୀନ  ଦୈନ୍ୟସ୍ରୋତେ କର୍କଟମୀନ ।
ପ୍ରୀତି-ବାଣିଜ୍ୟ ବହିତ୍ର ସ୍ଥକିତ  ଶୋଭନ ନୁହେଁ ଏହା କଦାଚିତ ।
ସୁକର୍ମୀ ମୁଁ ହେଲେ,
ସୌଭାଗ୍ୟବଳରେ ପାଇବି ଭଳେ । ୩୩ ।

ଧୃତ ଧର ନୁହେଁ ବିଚ୍ଛେଦ-ଶୂଳ  ତୁଳ ବାଧା ବୃଦ୍ଧି କରେ କେବଳ,
ଅନ୍ୟ ଗଣ୍ଡ ହାସ ବଅନ୍ତା ଧ୍ରୁବ  ହର୍ଷଣ ବ୍ୟାଘାତ ବିରହଭାବ ।
ବଜ୍ର ପର ଘନୁ
ପୀଡା ଦାନ ବିଷୟେ ହେବ ଗନୁ । ୩୪ ।

---

୩୧ ଅର୍ଥ—ରାମ (ମୃଗ) ଚନ୍ଦ୍ର, ଅଙ୍କ (ଦେହ)ରେ ଅଙ୍କ (କଳଙ୍କ) ରୂପେ ବିହାର କରେ । ସେହିପରି ମୋର ନାମ ରାମଚନ୍ଦ୍ର ହୋଇଥିବାରୁ ମୋ ଅଙ୍କରେ କଳଙ୍କ ବିହାର କଲା । ମୁଁ ରଘୁବଂଶରେ ସୋମ (ଚନ୍ଦ୍ର) ସ୍ୱରୂପ । ବୁଧ (ପଣ୍ଡିତ) ପଣରେ ବଂଶର ମଙ୍ଗଳ କଲି ନାହିଁ । ଗୁରୁ ( ଗୁରୁଜନମାନେ) ଜନମାନେ ମୋ ଚରିତରେ ଅଶନି (ବଜ୍ର) ପକାଇବେ । ଏ ପଦରେ ସାତବାର ଗଳ୍ପ ।

ଶୁଭବେଳେ ସତେ ହେବ ବାହାର ସାଧ ହେବ ଦାଶ-ବୈରୀ ମୋହର
ଇନ୍ଦ୍ରଜିତ-ତାତ ହାତରେ ସିଦ୍ଧି ଲଭିବ ସତେ ଶିବ ହେବ ବୃଦ୍ଧି ।
ଅତତାୟୀ ସେ ତ,
ଚେତାଉଛୁ କୀରତ୍ୱ ଅତପନ । ୩୫ ।

ଅନୁରୁ ସାରଥି ଯାର ତା ପୁତ୍ର ଅନୁମାନ କର କହିଲେ ମିତ୍ର,
ଅନୁଚିତ କରିବାର କନ୍ଦନ ଅନୁନୟେ କରୁଅଛୁ ବନ୍ଦନ ।
ଅନୁକମ୍ପ ଘେନ ।
ଅନୁକୂଳ କର ସୋଦର ବେନ । ୩୬ ।

ଅନୁଜ୍ଞା ପାଇ ଚଳିଲେ ବାନରେ ଅନୁକରଣ କରନ୍ତି ମାର୍ଗରେ,
ପାଦପ ପଥର ଧରି ବାହାର ପାଦ ପଥରେ ନ ପଡ଼େ କାହାର ।
ନାହିଁ ଭେଦାଭେଦ ।
ସ୍ୱଭାବବଶେ ପରସ୍ପର ବାଦ' । ୩୭ ।

ଜାମ୍ବବନ୍ତାଦି ଭଲ୍ଲୁକ-କପିରାଜ ଅମ୍ବୁନିଧି ସନ୍ନିଧିରେ ବିରାଜ,
ରାଜୀବାକ୍ଷ ଦଶରଥନନ୍ଦନ ରାଜୀବାଳୟଙ୍କୁ ଦେଖି ବିଷର୍ଣ୍ଣ ।
ଅଜୀବନ ପଦ ।
ଡାକିବ ପାତକୀ ଗୋକୁଳାନନ୍ଦ । ୩୮ ।

---

## ୩୦ଶ ଛାନ୍ଦ

### ରାଗ—କଉଶିକ

ଦୈତ୍ୟବ୍ୟୂହ-ଗହ-ଅହସ୍ପୃତ ଦଶମୁହଁଙ୍କୁ କହିଲ ଦୂତ ଯେ,
ଷିତପୁରୀ-ପତି ସରପୃତ କତ ସ୍ଥିତ ଘେନି କପିଯୂଥ ଯେ
ନକ୍ଷାସ୍ତ୍ରଜ । ତର୍କଶେ ଭାଷେ ଏ ଗିର ଯେ ।
ଜୀବନେ[୧] ଜୀବନ ତେଜି ବନଚାରୀ ବିଚ୍ଛେଦ ହେବ ଉଦ୍ଧାର ଯେ ।୧।

---

(୧) ଜୀବନ—ଜଳ

ଅନୁଜ ଭକ୍ଷିଲ ବେନି ପାଣି ଯୋଡ଼ି ଜାଣିଛୁ ବଡ଼ିମାପଣ ଯେ
ବାତସୁତ ଦୂତ ଶକ୍ତି ଅବଗତ ହୋଇଅଛ ତ ଆପଣ ଯେ
ରାମ ଚରଣେ । ସୀତା କର ସମର୍ପଣ ଯେ ।
ପର-ସ୍ତ୍ରୀ ହରଣ କାରଣେ ବରଣ ନ କର ରଣ ଅ-ପଣ୧ ଯେ ।୨।

ଅନ୍ୱେଷଣକାରୀ ଜଣକର ବଣ ଦଳନକୁ କର ସ୍ମରଣ
ଜନ୍ତୁଗଣ ପ୍ରାଣ ବାଣକେ କ୍ଷଣକେ ନେବେ ଯେ ଲଭିଲେ ମରଣ
ଲଙ୍କାପ୍ରାଙ୍ଗଣେ । ତଦ୍‌ଭଳି ବଳିଷ୍ଠଗଣ ଯେ ।
ଦୁର୍ଗ ଆବରଣ ଲଙ୍ଘି ନିଃଶଙ୍କରେ ବିହରିବେ ପଣ ପଣ ଯେ ।୩।

ଶ୍ରବଣ କର ବିଭୀଷଣ ଭାଷଣ ବିଭୀଷଣ ମୂର୍ତ୍ତି ଧାରଣ
କର ବୈଶ୍ରବଣ ବାଣୀ୨ ପର ବାକ୍ୟ ଜ୍ୱଳନ୩ କଳ୍ପ ବରଷଣ
କହ କପର । କଲ୍ୟ ତୁହି ଅବଧାରଣ ।
ବଳିଷ୍ଠ ହେଲେହେଁ କର ପାରିବ କି କରି ହରିକି ବିଦାରଣ ।୪।

ଏହି ଅହିସମ ବହିଅଛୁ ହିଂସା ରହିବା ନୋହିଲ ବିହିତ
ମହୀଜାଧବକୁ ଛେଦ ଭେଦ ଚହି କାଳେ କରିବ ଏ ଅହିତ
ସିଂହୀ ଉଦରେ । ଜନମ ଦେଇଛୁ ବିହି ତ
ବଞ୍ଚକ୪ ପସ୍ୱପ୍ନେ ବଞ୍ଚକତା ଜାଣେ ଶକ୍ତି ନାହିଁ ଏହା ତହିଁ ତ ।୫।

ଅମ୍ଭ ବଂଶେ ଅଶ୍ୱ-ଆସ୍ୟସୁତ୫ ଅବତଂଶ ହେଲ ଏ ତ ଅସାର
ଅମର ସଂସାର କୀଳାଳ-ଜକୁ୬ ଏ ଅଳକୁଛ ହେବ ତୁଷାର
ତେଜ ବଳମ୍ବ । ଶାଳରୁ୭ ଏହାକୁ ନିକାଳ ।
ଶ୍ରାଦ୍ଧଦେବ ପୁତ୍ର ଶ୍ରାଦ୍ଧଦେବ ପାଶେ ଯିବ ହେଲେ କାଲି ସକାଳ ।୬।

---

୧ । ଅପଣ (ହାଟ)
୨ । ବାଣ (ଚମ୍ପା ହାବେଲୀ ପ୍ରଭୃତି) (୩) ଜ୍ୱଳନ-ଅଗ୍ନି
(୪) ବଞ୍ଚକ—ଶୃଗାଳ (୫) ଅଶ୍ୱ ଅସ୍ୟସୁତ—ଘୋଡ଼ାମୁହାଁ ପୁଅ
(୬) କୀଳାଳଜ—ପଦ୍ମ (୭) ଶାଳ—ଗୃହ

କହି·ସାର ନାହିଁ ଏହି କଥା ମହୀରାବଣଙ୍କୁ ସେହି ଦଶାସ୍ୟ
କରକୁ ବାହାର ପକାଇ ବାହାର କଲା ସେ ନିର୍ଦ୍ଦୟ ରାକ୍ଷସ ।
ଦୁର୍ଗ ଦ୍ୱାରୀରେ । ଲଙ୍କା ପୁରଚତ୍ୱରେ ବିଗ୍ରହରେ
ସହୋଦର-ଦର-ହରଣଙ୍କୁ ଦରଧର ସାର ଏକା ସଂସାରେ ।୭।

ଅନନ୍ତାଶ୍ରୟ ଯାହାର କ୍ଷୀରବ୍ଧିରେ ଅନନ୍ତାକାପତି ରାଘବ
ସୁମରି ଅନନ୍ତେ ବାରିଧିର ପରି ବିହରି ଡାକିଲା ସୁଗ୍ରୀବ
ଦଶମୁଖର-କନିଷ୍ଠ ଭ୍ରାତା ମୁଁ ନିଷ୍ପାପ ।
ଅଭୟ ପଦ୍ମର ଛାୟା ଆଶ୍ରୟରେ ହରିବି ସନ୍ତାପ-ଅତପ ।୮।

ଅସ ଅସ ଭାଷ-ରସରେ ଭସାଇ କ୍ଷଣ-ଭ-ସାଇଁ[୧] ଦେଲେ ତୋଷେ
ଖେଦ ସରିତ ତରିବା ତରି ଧରିବାକୁ ଅବତରି ରଭସେ
ମୋହ କୁଶଳେ । ଭାସ ଯାଇଁ ଦାସବତ୍ସଳେ ।
ପଦାରବିନ୍ଦ-ମକରନ୍ଦ ପ୍ରଦାନେ ମୋଦ କରନ୍ତୁ ଏ ଭ୍ରସଳେ[୨] ।୯।

ଏ ଭାରତୀ ପ୍ରୀତି-ବୀଜ କପିପତି ମତି-ମୃତ୍ତିକାରେ ବପନ
ଅତି ତରେ ଗତି ଦାଶରଥି କତି ଅତୀତର କଥା ବର୍ଣ୍ଣନ ।
ପଦ୍ମଲୋଚନ । ମୋ ନିବେଦନେ ଅବଧାନ ।
ଦଶ-ଆସ୍ୟ ଅଶୀବିଷ ନାଶିବାକୁ ଅଛିନ୍ତି କାର୍ତ୍ତିକେୟଯାନ[୩] ।୧୦।

ବଂଶ ଲୋଚନ ଶାସନ ଅସମ୍ମାନ କଷ୍ଟ ବଚନ-ସାନୁମାନ
ତା ସାନ ଭାଇ ମାନସ-ବନଧିକି ଦୃଢ଼େ କରିବାରୁ ମନ୍ଥନ
ବୀରଶେଖର । କଥା ବାରୁ ହେଲେ ଉତ୍ପନ୍ନ ।
ଦାନବାର ମଧ୍ୟେ ପ୍ରଧାନ ପ୍ରଦାନ କରିବ ତବ ସନ୍ନିଧାନ ।୧୧।

ଜାମ୍ବବ ବିଳମ୍ବ ବରଜ ପ୍ରୟୋଗ କଲେ ଏହି ବାଣୀ-କଳମ୍ବ[୪]
ପୁଣ୍ୟଜନଶ୍ରେଣୀ ପୁଣ୍ୟଜଳ ଶୂନ୍ୟ ହେବାର ଅବଶ୍ୟ ସମ୍ଭବ ।
ଶତ୍ରୁ ଭ୍ରାତାଙ୍କୁ । ଆଶ୍ରୟ ଦେବା ଅବଧାନ ।
ଅମ୍ଭ ନିକଟକୁ କପଟେ କପଟ କରିଥିବ ନେବ ସନ୍ଧାନ ।୧୨।

---

(୧) ଭ-ସାଇଁ — ନକ୍ଷତ୍ରପତି (ଚନ୍ଦ୍ର) (୨) ଭ୍ରସଳ — ଭ୍ରମର
(୩) କାର୍ତ୍ତିକେୟଯାନ, — ମୟୂର (୪) କଳମ୍ବ — ବାଣ, ଶର

କବନ ପବନନନ୍ଦନ ବ୍ୟାଖ୍ୟାନ ନୁହଇ ତ ଏହା ଜଗତ
ଅନାଦୃତ ଦ୍ରବ୍ୟ ପଙ୍କ ତାମରସ୧ ହୁଅଇ କିଣ୍ଟସ୍ୟ ସମ୍ଭୂତ
ଘୃଣ୍ୟ କାସାରେ । ଫୁଟଇ ନାହିଁ କି କୁମୁଦ ।
ପର ମଣି ତାକୁ ଦୂର କର ନାହିଁ ତା'ର ବାଞ୍ଛା ହେବ ସୁହୃଦ ।୧୩।

ତାସ୍ତପୁତ୍ର ଖାସ୍ତ ବଚନ କହିଲା କପି । ପଛା ତହିଁ ଅଶଙ୍କା
ଏ କାରଣେ ଅମ୍ଭ କକା ପଛା ଜଣେ ବଜାଇଛନ୍ତି ଜୟଢକା
ତାଙ୍କ ଚରିତ । ସରିତର ବାରି ନିର୍ମଳ ।
ନ ତକାଇ ଲଙ୍କାପତି-ଅନୁଜଙ୍କୁ ଡକାଇବା ଏଥି ଚଞ୍ଚଳ ।୧୪।

ଶୀଳେନ୍ଦ୍ରବର ସୁନ୍ଦର ପନ୍ଦସ୍ଵସ୨ ବନ୍ଦନୀୟ ରଘୁନନ୍ଦନ
କହିଲେ ଶରଣ କନର କରୁଣ ହରଣ କରିବା ବିଧାନ
ସୁରସରିତ୩ । ବାରି ହରି ପାରେ ଦୁରିତ ।
ତୃଷିତ-ପାତକୀ ଗଲେ ତା କଟକ ହୁଏ କି କେବେ ନିବାରିତ ।୧୫।

ଈଷଣରୁ ଜାଣି ଲକ୍ଷ୍ମଣ ତତ୍‌କ୍ଷଣ କ୍ଷଣପ୍ରଭା-ଗତି ବହିଲେ
ବଦନ-ଘନରୁ ବାଣୀ-ବନ ବର୍ଷି ତା ମନ-ଗୃତକ ମୋହିଲେ
ଭକ୍ତବାନ୍ଧବ । ଭ୍ରୂମୂଠାରେ କୃପା ବହିଲେ ।
ନକ୍ତଚରେ ଶକ୍ତ ପୂଣ୍ୟବନ୍ତ ଯେଣୁ ବକ୍ତବ୍ୟ ତ୍ୟକ୍ତ ନ କହିଲେ ।୧୬।

ଏ ଭାଷା-ଅସାରେ ବିଭୀଷଣ ଅଶା-କାସାର ସଲିଳ ସଂପୂର୍ଣ୍ଣ
ଯୋଡ଼କରପଦ୍ମ ଶତପତ୍ର ନେତ୍ର ଅଗ୍ରେ ରହେ ଯଥା ସୁପର୍ଣ୍ଣ୪
ଶକ୍ତିମନ୍ତ ହେ । ମୋ ଭକ୍ତିକି ଶୁଣ କର୍ଣ୍ଣର ।
ମୀନାତପତ୍ର୫ ଚିହ୍ନ ଚରଣ ଭଜନ ଅନ୍ୟ ଗତି ନାହିଁ ପାନର ।୧୭।

---

(୧) ତାମରସ—ପଦ୍ମ, (୨) ପନ୍ଦଗସ୍ଵ—ଶିବ, (୩) ସୁରସରିତ—ଗଙ୍ଗା
(୪) ସୁପର୍ଣ୍ଣ—ଗରୁଡ଼ (୫) ମୀନାତପତ୍ର ଭଗବାନଙ୍କର ପାଦର
ଅଷ୍ଟାଦଶ ଚିହ୍ନ ମଧ୍ୟରୁ ଦୁଇଟି
"ରେଖାରବିନ୍ଦ କଳଶଧ୍ଵଜକାର୍ମୁକାର
ମୀନାତପତ୍ରମକରାଙ୍କୁଶବଜ୍ରଶଙ୍ଖୈ
ଯତ୍‌ଚହ୍ନିତଂ ପରମଯୋଗିଭିରର୍ଚ୍ଚନୀୟଂ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦଂ ।" (ଶ୍ରୀମଦ୍‌ଭାଗବତ)

ତବ ପ୍ରଭାବ ପ୍ରବଳ ଜ୍ୱରରୂପେ ରାବଣ ଗ୍ରାବାବୟବକୁ
ଗ୍ରାସିଛି ବୈଦେହୀ ନାଗର ବରଜ ବୈଦେହୀ ନାଗର ମଧୁକୁ
କମଳାକ୍ଷ ହେ ! ସେବନ କରୁଛି ସେ ବନ
ସନ୍ନିପାତେ ସନ୍ନିପାତ ହେବା ଭଳି ଉପାୟ କରୁଛି ଅର୍ଜନ ।୧୮।

ତ୍ରିଦଶ ଦ୍ୱିଷଦ ଦଶବଦନକୁ ସନ୍ଧ ସନ୍ଧ ଦର୍ଶ ସଦୃଶ
ଜାଣି ବାଣୀ ପୂର୍ଣ୍ଣଚନ୍ଦ୍ର ମୁଁ ଦେବାରୁ ସେ ବାରୁମୁଖୀ ହୋଇ ଶ୍ୱେତ
ତାହା ସେବାରୁ । ବାହାର କଲା ସେ ସଭାରୁ ।
ଭାବୀ ସଙ୍କଟକୁ ଭାବି ସେ କଷ୍ଟକୁ ଆସିଲି ମୁଁ ବ୍ୟଥା ଦେବାରୁ ।୧୯।

ମଧୁର ସ୍ୱରୂପ ହେବ ସେ ମଧୁପ ମଧୁପ କେତକୀ ପ୍ରକାର
ବନ୍ଧୂକଅଧରା ବଧୂ ପ୍ରାଣବନ୍ଧୁ ବଧୁଁ ପାଇବ କି ନିସ୍ତାର
ବ୍ୟାଳ-ବାଳକ । ପାଳକ ହୋଇଛି ରାବଣ ।
ଯାତୁଧାନଙ୍କର ମୃତ୍ୟୁ ହେତୁ-ବନ୍ଧ ବଣେ କରିବ ବିତରଣ ।୨୦।

ଅଜ ଆଜାନୁଲମ୍ବିତ ଭୁଜଦ୍ୱୟ ପ୍ରମାଣେ ଉଚ୍ଚାର ଅସ ହେ
ଦଶ ଅସ୍ୟ ଯେତେ ସୈନ୍ୟ ଦାସ ଦାସୀ ରଖିଛି ତା ପାଶ ଭାଷ ହେ ।
ଦେଶ ଶାସନ । କପଟ କରେ ପ୍ରକାଶ ହେ,
ଯୋଷାଗ୍ରେର ଦୋଷାଚରର ସଡବ ହୋଇଥାନ୍ତି କି ବଶ ହେ ।୨୧।

---

୧୮ । ଗ୍ରାବ (ପର୍ବତ), ଅବୟବ (ଦେହ), ରାବଣର ପର୍ବତପ୍ରମାଣ ଦେହକୁ ତବ ପ୍ରଭାବ ପ୍ରବଳ ଜ୍ୱର ପରି ଗ୍ରାସ କରିଛି । ବୈଦେହୀ ନାଗର (ରାମ), ବୈଦେହୀ (ପିପ୍ପଳୀ), ନାଗର (ଶୁଣ୍ଠୀ), ମଧୁ (ମହୁ), ଶୁଣ୍ଠୀ, ପିପ୍ପଳୀ, ମହୁକୁ ଛାଡ଼ି ସେ ବନ (ଜଳ) ସେବନ କରୁଛି । ତାହାହେଲେ ସନ୍ନିପାତ ହୋଇ ସନ୍ନିପାତ (ସମ୍ପୂର୍ଣ୍ଣ ନିପାତ) ହେବା କଥା ଅର୍ଜନ କରୁଛି ।

୧୯ । ଦ୍ୱିଷଦ (ଶତ୍ରୁ), ସନ୍ଧ (ସନ୍ନିପାତ), ସନ୍ଧ (ମିଳିତ), ବାରୁ (ଘୋଡା), ଭାବୀ (ଭବିଷ୍ୟତ), ତ୍ରିଦଶଶତ୍ରୁ ରାବଣକୁ ସନ୍ନିପାତ ଅଉ ରାମଙ୍କ ସଙ୍ଗେ ସନ୍ଧି ସ୍ଥାପନ ଦର୍ଶ (ଅମାବାସ୍ୟା) ପରି ହେଲା । ଅମାବାସ୍ୟାର ଅନ୍ଧାର ଦୂର କରିବାକୁ ପୂର୍ଣ୍ଣଚନ୍ଦ୍ର, ସନ୍ନିପାତ ଦୂର କରିବାକୁ ପୂର୍ଣ୍ଣଚନ୍ଦ୍ର (ଔଷଧ ବିଶେଷ) ଆବଶ୍ୟକ । ମୁଁ କୃପା ରୂପ (ପୂର୍ଣ୍ଣଚନ୍ଦ୍ର) ଦେବାରୁ ସେ ଘୋଡାମୁହାଁ ଶ୍ୱେତ ହୋଇ ତାହା ସେବାରୁ (ସେବା କାର୍ଯ୍ୟରୁ) ସଭାରୁ (ଘରୁ) ବାହାର କରି ଦେଲା ।

୨୦ । ମଧୁ (ଦୈତ୍ୟ) ମଧୁପ (ମହୁଆ), ମଧୁପ (ଭ୍ରମର) ।

ଦାଶରଥିଙ୍କର ହାସ ଭାଷ ରସେ ଭାସି ଭାଷିଲ ବିଭୀଷଣ
ଶୁଣ ହେ ଦୂଷଣକୁଳର ଭୂଷଣ ଗୀର୍ବାଣ-ପରପନ୍ଥୀଗୁଣ
ମନ୍ଦାଚରଣ । ବଖାଣିଲେ ହେବ ପୁରାଣ
କାମନା-କଳ୍ପପାଦପ ମୋ ଜଳ୍ପନା କଳ୍ପନା କରନ୍ତୁ ଅର୍ପଣ ।୨୨।

ଦେବଙ୍କ ସେବକପଣେ ଖଟାଇଛନ୍ତି ପାବକ ରନ୍ଧନେ ବନ୍ଧନ
କୃତାନ୍ତ ସନ୍ତାପ-ବୃତ୍ତାନ୍ତ କିତାପ ପଠନେ କେ କନ ଭଞ୍ଜନ
ଶୁଣ ପ୍ରଭୁ ହେ । ଅସରନ୍ତ ଅଟେ ବାସର,
ଅଶ୍ୱଙ୍କ ଗ୍ରାସ ସକାଶ ଘାସ ଦେବା ଖାସ ବ୍ୟବସାୟ ତାଙ୍କର ।୨୩।

ଜମ୍ଭାରାତି ତ୍ୱଷ୍ଟାମ୍ବଭ ଦୌବାରିକ ଭଳି ସ୍ତମ୍ଭିତ ରହନ୍ତି
ପବନ ଭବନ ମାର୍ଜନ କାର୍ଯ୍ୟରେ ତର୍ଜନ ଗର୍ଜନ ସହନ୍ତି
ବ୍ରହ୍ମାନନ୍ଦନ । ପ୍ରତ୍ୟହ ସ୍ୱପର୍ଣ୍ଣ ବଟାନ୍ତି ।
ଖଣ୍ଡପରଶୁ ଦଶମୁଣ୍ଡ ଅଗ୍ରତେ ତାଣ୍ଡବ ନର୍ତ୍ତନ କରନ୍ତି ।୨୪।

ଶଶାଙ୍କଙ୍କ ଦଶା ଲୁପାରେ କେ କହୁ ବାସ ଧୌତ କାମ ତାଙ୍କର
ଅରୁଣ ଉଦୟ ପୂର୍ବରୁ ବରୁଣ ଯୋଗାନ୍ତି ନୀର ନିରନ୍ତର
ବନ୍ଦୀ ପରାୟେ । ବନ୍ଦବାରେ ଧାତା ନିଯୁକ୍ତ
ନବଗ୍ରହଙ୍କୁ ଅବଶେଷ ପୂର୍ବଦେବ ସ୍ତବ କରନ୍ତି ଅବିରତ ।୨୫।

ମୁଁ କନିଷ୍ଠ ଜ୍ୟେଷ୍ଠ ରାବଣ ମଧ୍ୟମ ସହୋଦର ଘଟଶ୍ରବଣ
ଗାଦ ଗୋଦବତ ପ୍ରତୀତ ହୁଅଇ ରଣବିଦ୍ୟାରେ ସେ ପ୍ରବୀଣ
ସଦା ଶୟନ । କରେ ସେ ନ ଡରେ କାହାକୁ
ନିଃଶ୍ୱାସର ବାତଘାତେ ଯାତାୟାତ କରେ ସ୍ଥିତ ନିମ୍ନ ଊର୍ଦ୍ଧ୍ୱକୁ ।୨୬।

ଜନନୀ ଜଠରୁ ଜନମ ସମୟେ ରାବଣର ଜ୍ୟେଷ୍ଠ କୁମର
ଘଡ଼ଘଡ଼ି ପର ରଡ଼ି ଛାଡ଼ିବାରୁ ମେଘନାଦ ନାମ ପ୍ରଚାର
ଜିଣି ଶକ୍ରଙ୍କୁ । ଇନ୍ଦ୍ରଜିତ ନାମ ପାଇଛନ୍ତି ।
ସୁରାସୁର ନର ଗନ୍ଧର୍ବ କିନ୍ନର ତାଙ୍କୁ କେ ନ ଡର ରହନ୍ତି ।୨୭।

ମସ୍ତ ମସ୍ତ ବୀର ବାସ୍ତବ୍ୟ ତୁମର ଛେଦଣତ ନାଶ ଅବର
ବ୍ୟସ୍ତ ହେବେ ନ୍ୟସ୍ତ ପୁସ୍ତକ କରରେ ଶୀଘ୍ରତ ସମସ୍ତ ଖବର
ଲଙ୍କା ନଗରେ । ଅଠର ଅକ୍ଷୌହିଣୀ ବାଦ୍ୟକାର ।
ତୁରଙ୍ଗ ମାତଙ୍ଗ ସ୍ୟନ୍ଦନ ପ୍ରସଙ୍ଗ ବର୍ଣ୍ଣିବାକୁ ଶକ୍ତ କାହାର ।୨୮।

କୁଳ କଳଙ୍କ ତା ପ୍ରବଳ ହୋଇଛୁ ମାଧବେ[୧] ଯେସନ ସଜୀବ
ତବ ଶରବାର ଶୀହାର ବିହାର କଲେ ସେ ସଂହାର ଭଜିବ
ଶୁଣି ସ୍ୱଧବ । ବୋଇଲେ ଅବଶ୍ୟ ସମ୍ଭବ ।
ଅଜଠାରୁ ଲଙ୍କା ହାଟକ-କଟକେ ତୁମ୍ଭେ ହେଲ ଦୈତ୍ୟବାନ୍ଧବ ।୨୯।

ବାନର ସାଗରୁ ପଶୀର ଅଣିଲେ ହେଲା ଅଭିଷେକ ବିଧିରେ
ଦୂତ ଏ ବଦନ୍ତ ତୁରନ୍ତ ସ୍ୱବଣ ଅଗ୍ରତେ କହିଲା ସଧୀରେ
ଦଶବଦନ । ଡକାଇ ଶୁକ ସାରଣଙ୍କୁ ।
ପେଷିଲ ସଂବୋଧି ଘେନି ଅସ ଯାଇ କପିପତି ବିଭୀଷଣଙ୍କୁ ।୩୦।

ଭୟ ହୃଦୟରେ ପତଙ୍ଗୀକାୟରେ ମନ୍ତ୍ରୀଦ୍ୱୟ କଲେ ଗତକ୍ତ
ନିତାନ୍ତ ବ୍ୟସ୍ତରେ ମନ୍ଦୋଦରୀକାନ୍ତ ପେଷିଛନ୍ତି ତୁମ୍ଭ କତକ୍ତ
ଅହେ ସୁଗ୍ରୀବ । ତୁମ୍ଭେ ଭ୍ରାତୃମିତ୍ର ତାଙ୍କର
ଦନୁଜପତି-ଅନୁଜ ବିଭୀଷଣ ମନୁଜ ସଂଗ ତ୍ୟାଗ କର ।୩୧।

ଶାଣିତ କୃପାଣେ ହାଣି ଦେଲା ପର ମଣି ବଂଶପାଣି ବାର୍ଣାକୁ
ଅବିଳମ୍ବେ ଅବ ପର ବାନ୍ଧ ନେଲେ ସେହୁ ଅବବେକ ବେନିକୁ
କୃପାସାଗର । ଝପାଟରେ ଦେଲେ ବିଦାୟ ।
ଭଣଇ ଗୋକୁଳାନନ୍ଦ ରାମନାମ ଧାମ କରୁ ମୋର ହୃଦୟ ।୩୨।

—:—

[୧] । ମାଧବ—ବୈଶାଖ

### ୩୧ଶ ଛାନ୍ଦ

### ରାଗ — କୁମ୍ଭକାମୋଦୀ

ବସନ୍ତାଧିରେ ସନ୍ନିଧିରେ ଅଧୀରେ ଭାଳନ୍ତି ଶ୍ରୀରାମ
କିନା ତଥିରେ ତରି ବସନାଧିର ଉଦ୍ଧାର ବିଷମ
ପଲ୍ଲଙ୍କେ ପଲକ ମାତ୍ରକ ପଲକ ନ ପଡ଼େ ଯାହାର
ଅଳ୍ପ ପରିମିତ କୁଶ-ତଳ୍ପ ହେଲା କଳ୍ପନା ବାହାର ।୧।
ମରକତ ପୁତ୍ତଳିକା ଆଦରଣ ବାଢ଼େ କି ସ୍ଥାପିତ
ସୁରଦୀର୍ଘିକା ଜବନ ପରେ ଅବା କୌମୁଦୀ ଦୀପିତ,
ଚିତ୍ତ କଶଳସ୍ୟ ପରେ କୁଟଶଣସ୍ୟ ସ୍ଥାପନ ପ୍ରକାର
ହେଲା ଉପାଧାନ୨ ଗୃମୀକର ଦାନ କରଇ ଯେ କର ।୨।
ଶାନ୍ତଚେତାଙ୍କ ଉପାସନାରେ ଚେତା ନ ହେଲେ ପ୍ରଚେତା
କିନାଶନ ଆସନ ତେଜି ଭାବିଲେ କିନାଶନ କଥା,
ଶର ପ୍ରୟୋଗରେ ସରଳ ହୋଇ ଏ ଶରଣ ପଶିବ
ବୈଦେହୀଶ କହି କହିଲେ କୋଦଣ୍ଡ ମହୀ କି ନସିବ ।୩।
ଅପ ପତ ବପତ୍ରି ପଢ଼ିବ ବିଗୃହ କରନ୍ତି ଅପତ୍ରି
ପାଶରେ ହାଜର ଅଛୁ ପାଶଧର ନ ଜାଣ ଶ୍ରୀପତି,
ଅଚଳ ଜଳରେ ଫିଙ୍ଗ ସ୍ପର୍ଶ ନଳ ଅନଳନନ୍ଦନ
ବନ୍ଧ ବନ୍ଧନ କର ଦଶକନ୍ଧଙ୍କୁ ବଧନ୍ତୁ ବହନ ।୪।
ଭାଷିଥିଲେ ଋଷି ଭାଷିବ ଯା ସ୍ପର୍ଶି ଫିଙ୍ଗିବ ପୟୋରେ୩
ଶାପ ବରରୂପେ ପ୍ରାପ୍ତ ଅପଣଙ୍କ ବାଯ ପରକାରେ,
ଗୁଣିତଳକ ଏ ବାଣୀ ଶୁଣି ମଣି ପ୍ରାପ୍ତ ପାୟି ମଣି
ଭଣିଲେ ପାଣିରେ ଫିଙ୍ଗ ଶୈଳ ଆଣି ଯାଅ କପିଶ୍ରେଣୀ ।୫।
କହିବା ମାତ୍ରେ ନ ରହି ମହୀଧର ବହିଲେ ବାନର
ପିପିଲିକାପଂକ୍ତି ଶଙ୍କୁ୪ ଧରି ଗତ କରିବା ପ୍ରକାର,
ଅଚଳ ହେଲେହେଁ ନଳ ହାନବଳ ପରଶି ଅଚଳ
ତତତରେ ବେନା କରେ ପ୍ଲବଣରେ ତଥାପି ହେଲ ।୬।

---

(୧) ବସନାଧି—ସମୁଦ୍ର, (୨) ଉପାଧାନ—ତକିଆ, (୩) ପୟୋର—ଜଳ
(୪) ଶଙ୍କୁ—ଛିଞ୍ଚ,

ବାମ ହାତେ ସ୍ପର୍ଶ କରନ୍ତେ ପର୍ବତ ବାଉଳ କହଇ
ସବ୍ୟେ ତରଙ୍ଗରେ ମୋ ଦ୍ରବ୍ୟ ଛୁଇଁଲ ଭବ୍ୟ ଏ ନୁହଇ,
ଏ ହେତୁ ସେତୁରେ ପୋତିବ ନିଷ୍ଟପ୍ର ମୂର୍ତ୍ତିକୁ ଲଭିବ
ବଳିମୁଖ ଭଳି ଭଳି ଭଳି  ଭଳି ଦଳିଲେ ରାଘବ ।୭।
ଅଗଣନ ନଗ ସାଗରେ ପ୍ଲବଗବର୍ଗ ପକାଇଲେ
ବନ୍ଧୁ ବନ୍ଧୁରେ ତା ଦୂଷିକରଣାର୍ଥ ବାଲି ପକାଇଲେ
ଜଣ୍ଡିଲେ ଶ୍ରୀରାମ ଗୁଣ୍ଡୁଚୀ ମୂଷ ଟି କାର୍ଯ୍ୟରେ ତତ୍ପର
ଜଳରେ ବୁଡ଼ି ବାଲିରେ ଗଡ଼ି ଝାଡ଼ି ହୁଅଇ ସେତୁର ।୮।
ବନ୍ଧୁ ବନ୍ଧୁ ଉନ୍ଦୁରୁକୁ(୨) ଅଣ୍ଡି ଦେଲେ ଶ୍ରୀରାମ ଅଙ୍ଗୁଷ୍ଠ
ବଧ କରିବ ତୋତେ ଯେଉଁ ନବୋଧ ସେ ହେବ ମୋ ଦ୍ୱେଷୀ,
ମୋ ଦର୍ଶନ ଫଳ ଲଭିବ ତୋତେ ଯେ କରିବ ଦର୍ଶନ,
ସେହୁ ଦିନଠାରୁ ତା ପୃଷ୍ଠରେ ଚିହ୍ନ ଦିଶୁଛି ପ୍ରସନ୍ନ ।୯।
ସବଳ ସେ ବଳବନ୍ତକୁଳ ଦନ୍ତାବଳ ଭଳି ହେନି,
ପ୍ରବଳ ବେଗରେ ସୁବେଳ ପ୍ରବେଶ ନ ହେଉ ଯାମିନୀ ।
ଲକ୍ଷ ଲକ୍ଷ ଋକ୍ଷ ବାନରଙ୍କୁ ତାର୍କ୍ଷ୍ୟ ବନ୍ଧରେ ଲକ୍ଷ୍ମଣ,
ରକ୍ଷଣ କଲେ ତୋଷ ପର୍ଯ୍ୟବେକ୍ଷଣେ କମଳ-ଈକ୍ଷଣ ।୧୦।
ମର୍କଟକୋଟିଙ୍କ କଟ କଟ ସ୍ୱନ କଟକେ ପ୍ରକଟ,
ବିକଟାସ୍ୟ ଦୈତ୍ୟନାଥ ଭାବେ ହେଲା ସଂକଟ ନିକଟ ।
ବିପଦଭଞ୍ଜନ ଶ୍ରୀରାମ-ଶ୍ରୀପଦ କରିଣ ସ୍ମରଣ,
ସଂପଦହୀନ ଗୋକୁଳାନନ୍ଦ ପଦ କରୁଛି ପୂରଣ ।୧୧।

---

## ୩୬ଶ ଛାନ୍ଦ

(ରାଗ-ଚିନ୍ତାଦେଶାକ୍ଷ)

ଚର ଦୈତ୍ୟଠାରୁ ଶୁଣି ରାବଣ    ମୂକ ହୋଇ କର ଦେଲା ଶ୍ରବଣ
ଅଚଲ ହଜାଇ ବାରତା ପାଇ    ସଚଳ ଦୈତ୍ୟଙ୍କ ଜାଣିବାପାଇଁ
ନକଳ, କର କହୁଲା ଗାର; କି କରିବେ ନର ବାନର ମୋର ।

---

(୧) ଚଉ(ବାଳକ),ଚଉ (କଳନା କର),ଚଉ(ଫୁଲଟଢ଼ି) (୨) ଉନ୍ଦୁରୁ—ମୂଷା

ପୂର୍ଣ୍ଣଗ୍ରୀବାକ୍ଷଙ୍କ ସୁଦରଶନ ଶୁଣ୍ଡ କରିଅଛୁ ମୋ ଯହନନ
ତୁଣ୍ଡରେ ପଡ଼ି ବିଚୂର୍ଣ୍ଣ କୁଳିଶ ମୁଣ୍ଡରେ ଟେକିଥିଲି ମୁଁ କୈଳାସ
ଶୁଣ୍ଡକୁ, ଜିଣି ଦଶେ ମୋ କର; ରୁଣ୍ଡ ହେଲେ କି କରିବେ ଏଥର ॥

ଅଲ୍ପଅ ଦେଖିଲେ ଭଲ୍ଲୁ ବାପୁଡ଼ା ବୋଲ୍ପଅ ଧରିଲେ ମାଙ୍କଡ଼ଗୁଡ଼ା
ଡାଲ୍ପଅ ଡାଲ୍ପଅ ଯିବେ ପଳାଇ ଗାଲ୍ପ କରୁଛନ୍ତି ଏଠାରେ ରହି
ଔଲ୍ପଅ, କିଣ ସାନ୍ଥକୁ ସିନା; ଔଲ୍ପ କରେ ପରିବାରେ ଗଣନା ॥

ଗୀର୍ବାଣଗଣଙ୍କୁ କହେ ଅସର ତୁମ୍ଭଙ୍କୁ ଦିଅଗଲି ଅବସର
ଶତ୍ରୁ ନ ହେବା ପର୍ଯ୍ୟନ୍ତ ସଂହାର ନିଶ୍ଚିନ୍ତ ସ୍ୱର୍ଗରେ କର ବିହାର
ଯେସନ, ଛୁଟି ପାଇଲେ ଗୃହ; ତେସନ ଦେବତାମାନେ ଯିବାହ ॥

ସେନାପତିଗଣେ ଦେଲି ଆଦେଶ ଭଲରୂପେ ରକ୍ଷା କର ମୋ ଦେଶ
ବନ୍ଦ କର ଗୃହଦ୍ୱାର କବାଟ ପିମ୍ପୁଡ଼ି ଯିବାକୁ ନ ରଖ ବାଟ
ଦେଖିବା, କେଉଁପରି ବୀର ସେ; ଅବ ପାଖୁଁ ଫେରିଯିବ ବିରସେ ॥

ପୁନଶ୍ଚ ହୁକୁମ ହେଲି ରଜାର ଛନ୍ଦ ଗୃମରିପୁ ଅଣ ହଜାର
ଦେଖିବ ସ୍ୱୟମ ମୋ ଶୋଭିବଙ୍କାର ଭୂତ ଦେଖି ପଳାଇବ ଲଙ୍କାର
ଦମ୍ଭ ଟା, ଥାଏ ସିନା ମଙ୍କାର; ବାଘ ନ ଦେଖିବାଯାଏଁ ଅଜାର ॥

ଖ-ମାନେ ଯଥା ଉଡ଼ନ୍ତି ଆକାଶେ ଖମାନେ ବାଂଶାକ୍ଷ ତଥା ବିକାଶେ
ପତିତ ହେବାରୁ ଘସ୍ର୍ୟା କ୍ୟା-ପରେ ପତିତପାବନ ଗୃହିଁ ଉପରେ
ବାରିଦ, ବିନା ନିର୍ମଳ ଖ-ରେ; ବାହିଲେ କିସ ଏ ଚିତ୍ରଶିଖରେ ॥

ଶୁଣି ବିଭୀଷଣ କହେ କାନରେ ଦଶାନନ ବିକେ ଦେବ ଯାନରେ
ଦେଖାଇବାପାଇଁ ସେ ବଡ଼ପଣ ଛନ୍ଦାଦ ଅଣିଅଛୁ ପଣ ପଣ
ତା ଦେଖି, ଭୟଙ୍କର ଅପଣ; ସ୍ଥାନ ବରଜିବେ ତେକି ସ୍ୱ-ପଣ ॥

ଶୁଣିହିଁ କ୍ରୋଧ ଜାତ ବଂଶବାହାର ଗଦାକୁ ସ୍ୟନ୍ଦନୁ କଲା ବାହାର
ବିଭୀଷଣକୁ କଲେ ପ୍ରହାର ହନୁମନ୍ତ କରୁଥିଲା ବିହାର
ପୂଷଣି-, କରେ ଯଥା ନୀହାର; ତଥା ବାତସୁତ କରେ ତା ହାର ॥

ଲଙ୍କପତିର ଅତପତ୍ର ସକଳେ ବିକଣ୍ଡିନ-ବଂଶୀ କଣ୍ଡିନ କଲେ
ପ୍ରାବୃଟେ ଯେସନ ପଡ଼େ କରକା କିବା ନୈଶାକାଶୁ ଖସେ ତାରକା
ତେସନେ, ଭୂତଳରେ ପତିତ; ଦେଖି ନୈକଷେୟ ଅତି ଶଙ୍କିତ ॥

ବାହୁଡ଼ି ପ୍ରବେଶ କଲା ପ୍ରାସାଦେ ବଡ଼ୁ ଏକ୍ଟି ହଳକୁ ଡାକିଲା ବିଷାଦେ
ରାମଶର ନିର୍ମଣିବା ଅଣା ଦେ କୃପକୃତ ହେବ ତୋର ପ୍ରସାଦେ
ପ୍ରସ୍ତୁତ, କର କାଣ୍ଡ କୋଦଣ୍ଡ; ସୀତାକୁ କପଟେ ଦେବ ମୁଁ ଦଣ୍ଡ ।
କରକବଦନୀ ଜାନକୀ ପାଶେ କରବାଂଶ ଯାଇ ବିନୟୀ ଭାଷେ
ଧର ବନ୍ଧନ ମୋଚେ ବାହୁପାଶେ କରଗ୍ରାବରେ ଗ୍ରୀ ବିଷାଦେ ଭାସେ
କରୁଣା, ବହ ଅରୁଣାଧାରା; କରୁନାହୁଁ ଦୟା ସେବକୁ ଧର ।
ଦେବତା ଯାହାର ଅଟନ୍ତି ଦାସ ଦେବ ତାଙ୍କୁ କଏ ବ୍ରହ୍ମାଣ୍ଡେ ତ୍ରାସ
ନିଦରେ ଧବ ଦେବର ସୁବେଳେ ନିଦରେ ଶୋଇଥିଲେ କପିମେଳେ
ବିନାଶ, କଲି ମୁଁ ବେଳି ଜନ; ବିନା ଶ୍ରମେ କାର୍ଯ୍ୟ ହେଲା ସାଧନ ।
ଏହି କାଳେ ବିଦ୍ୟୁଜ୍ଜିହ୍ୱ ଦୋର୍ଦଣ୍ଡ ଦେଲା ରାମ ଶିର କାଣ୍ଡ କୋଦଣ୍ଡ
ଅବିକଳ ରୂପ ନାହିଁ ପ୍ରଭେଦ ସୀତା ଜାଣି ନ ପାରିଲେ ଏ ଭେଦ
ବିଶେଷେ, ମାୟାବୀ ନିଶାଚର; ତ୍ରିଦଶମାନଙ୍କ ଯା ଅଗୋଚର ।
ଗୃହି ନିର୍ଜୀବ ପତିଙ୍କ ବଦନ ବଇଦେହୀ କରେ କଲେ କ୍ରନ୍ଦନ
ହେ ନାଥ ! ମିହିରକୁଳନନ୍ଦନ ଅତପ ତାପିତ ହୃଦ-ଚନ୍ଦନ
ଦୁଷ୍ଟଙ୍କ, ନ କର ନିସ୍ୱନ୍ଦନ, ଘୋର କରେ ଗଲ ଯମସଦନ ।।
ସର୍ବ ବନ୍ଦ୍ୟ ସର୍ବ ଗୁଣନିଧାନ ଧନୁର୍ଦ୍ଧରମାନଙ୍କରେ ପ୍ରଧାନ
ଅବି ପାଶେ ହେଲି ଅସାବଧାନ, କପଟେ ନାଶିଲା ଏ ଯାତୁଧାନ ।
କପରି, କଲା ଅନୁସନ୍ଧାନ; ଏହି କି ବିଧିର ଅଟେ ବିଧାନ ।।
ତେଜି ରାଜ ସିଂହାସନ ଭବନ, ନିଷ୍କଣ୍ଟକ କରିବାକୁ ଭୁବନ ।
ପିତା ସତ୍ୟ ପାଳି ଅସିଲ ବନ, ନିଶାଚର କରେ ଦେଲ ଜୀବନ
ନିଶ୍ଚୟ, ବୁଡ଼ି ମରିବି ବନ; ସ୍ମରି ତୁମ୍ଭଙ୍କ ପତିତପାବନ ।।
ଏହି କାଳେ ଦୂତ ଦେଲା ସନ୍ଦେଶ,ପ୍ରହସ୍ତ ଦେଇଛନ୍ତି ଏ ଆଦେଶ ।
ସତ୍ତ୍ୱ ନ ସତ୍ତ୍ୱ ତାହାର ବଚନ ମନ୍ଥୁଦ୍‌ବେଗେ ଗଲା ବିଂଶଲୋଚନ
କପଟ, ଉତ୍ତମାଙ୍ଗ କୋଦଣ୍ଡ; ଅନ୍ତର୍ହିତ ହେଲା ତହୁଁ ତଦ୍ଧଣ୍ଡ ।
ପାଶରେ ପ୍ରବିଷ୍ଟ ହେଲା ସୁରମା ଭଣିଲା କିମ୍ପା କାନ୍ଦୁଛ ମୋର ମା
ଦାନବାରିଙ୍କର ତୁ ମନୋରମା ଜାନକୀ ନାମେ ଜନମିଛୁ ରମା
ନୋହୁ ତ, ତୁହି ହାନକରମା; ସାଧ୍ୱୀ ପତିବ୍ରତା ମଧ୍ୟେ ପରମା ।

ଧନୁର୍ଦ୍ଧର ସୌମିତ୍ରି ଯା କିଂକର    ରକ୍ଷ କପି ବଶ ଯଥା ଗୃଧ୍ରବର
ସହାୟ ସଦା ଯେ ତ୍ରିଦଶଙ୍କର    ତାଙ୍କୁ କି କରିବ ଦ୍ୱିଦଶ-କର
ବନ୍ଦାରୁ, ଯା ଚରଣେ ଶଙ୍କର; ଦୈତ୍ୟମାୟାରେ ତୁ ଶୋକ ନ କର ।

ବୈଦେହୀ ପ୍ରତ୍ୟାବର୍ତ୍ତନ ସନ୍ଦେଶ    ଅଙ୍ଗଦ ଘେନି ରାମଙ୍କ ଆଦେଶ
ପ୍ରବେଶ ହୁଅନ୍ତେ ଲଙ୍କା ଗଡ଼ରେ    ଦସ୍ୟୁଣୀମାନେ କହିଲେ ଦରେ
ଆସିଲା, ଘରପୋଡ଼ା ବାନର; ପୁନଶ୍ଚ ପେଷିଲେଣି ବେନି ନର ।

ବିନା ଘଟନେ ହୁଏ ଅଶନିପାତ    ଦେଖିଲାକ୍ଷଣି ଘୋଟେ ସନ୍ନିପାତ
ଏଥର କରିବ ବଂଶ ନିପାତ    ଅଛନ୍ତି ଇନ୍ଦ୍ରଜିତ ବାପ ତ
ଆମ୍ଭଙ୍କୁ, ହେଲା ଦଶା ପ୍ରାପତ; ସ୍ଥାନ ନାହିଁ ହେବାପାଇଁ ଗୁପତ ।

ଅଙ୍ଗଦ ହୋଇ ବିଶେଷ ପ୍ରସନ୍ନ    ବିଚାରିଲେ ଧନ୍ୟ ତୁହି ପବନ-
ସୁତ ତୋର ଦର୍ପ ସର୍ପଦଂଶନ    ଅଘାତ ପାଇ ଅଛନ୍ତି ଏସନ
ରକ୍ଷଙ୍କୁ, କରି ଏହି ଦର୍ଶନ; ବ୍ୟାଳ ବୋଲି ହେଉଛନ୍ତି ବିଷର୍ଣ୍ଣ ॥

ବାଳୀସୁତ ବିଂଶାକ୍ଷ ସମ୍ମୁଖରେ    ପ୍ରବେଶି ଭାଷିଲା ଦଶମୁଖରେ
ସୁବୁଦ୍ଧି ମନ୍ତ୍ରୀ ନାହିଁ ତୋ ପାଖରେ    ବୈର କରି ପଡ଼ିଲୁ ତୁ ଦୁଃଖରେ
ଶ୍ରୀରାମ, ବିଜେ ଗିରିଶିଖରେ; ବିନଷ୍ଟ ହେବୁ ତାଙ୍କ ବିଶିଖରେ ।

ରକ୍ଷା ନାହିଁ ତୋର ବିନା ଶରଣେ    ଅକାରଣେ ହେବୁ ବିନାଶ ରଣେ
ବଇଦେହୀଙ୍କି ଦେଇ ଧ ଚରଣେ    ବଂଶ ନ ମରାଅ କୁ-ଆଚରଣେ
ବରଣ, ନ କର ତୁ ମରଣେ; କୁଳ ବୁଡ଼ିଯିବ ଶ୍ରୀରାମ ବଣେ ॥

ନାରିଚୋର ବୋଲି ହେଲା ପ୍ରଚାର    ସତ୍ୟ କି ମିଥ୍ୟା ବିଜ୍ଞଙ୍କୁ ପଚାର
ସଂପ୍ରତି ତୋ ପ୍ରତି ବ୍ୟାଧି ସଂଚାର    ଏତିକିବେଳେ କର ଉପଚାର
ଦେଉଛି, ତୋତେ ଭଲ ବିଚାର; ନ ଘେନିଲେ ତହିଁକି ମୁଁ ନାଚାର ॥

ସଂଖ୍ୟା କରିବାକୁ ଭଲ୍ଲୁକ କପି    ସଂଖ୍ୟାବାନ ନ ପାରିବେ କଦାପି
ବିଖ୍ୟାତ ସମସ୍ତେ ବୀରପଣରେ    ବ୍ୟାଖ୍ୟା କି କରିବି ମୁଁ ତା ମୁଖରେ
ଜଣକୁ, ସମ ନୁହ ଦଇତେ; ବଣଜନ୍ତୁ ବୋଲି ନ ଭାବ ଚିତ୍ତେ ।

ଶୁଣି ଦଶାନନ କହେ କ୍ରୋଧରେ    କ୍ଷେପ୍ତ ହୋଇ ନିନ୍ଦା କରୁ ବୁଧରେ
ଯା ପୂର୍ବ ଜିଣିଛି ତ୍ରିଦଶାଧିପରେ(୧)    ତାକୁ କେ ଜିଣିବ ବିଶ୍ୱ ମଧ୍ୟରେ
ବଚନ, କହୁ ବଡ଼ ସଧରେ; ମୋ ପାଶେ ପ୍ରକାଶ ହାସ ଅଧରେ ॥

(୧) ତ୍ରିଦଶାଧିପ—ଇନ୍ଦ୍ର ।

କି ନାମ ତୋହର କାହା ତନୟ    ମୋ ସମ୍ମୁଖରେ କରୁ ଅଭିନୟ
ନ ଯିବୁ ଯେବେ ତୁ ଯମନିଳୟ୧    ଅଣ୍ଡ ତେଜି ଖଣ୍ଡ ହୁଅ ବିନୟ
ତୁ ପୁଣି, ଦେଉଛୁ ଉପଦେଶ; ବଳାତ୍କାରେ ପଶି ଲଙ୍କା ପ୍ରଦେଶ ॥

ଭୁଜଙ୍ଗମ ସମ୍ମୁଖେ ଦରଦୁର    ଠାଣି କରେ କି କରି ଦର ଦୁର
ମେଦୁର ହେବ କି ନାଲି ସିନ୍ଦୂର    ଛୁଞ୍ଚି ଗୃହେ ହେବାପାଇଁ ଉନ୍ଦୁର
ଦକ୍ଷତା, ଦେଖାଉଛୁ ପାମର; ଭକ୍ଷ ଭକ୍ଷକର କାହିଁ ସମର ॥

ବାଳିଶ୨ ପରାୟ ନୁହରେ ମନ୍ଦ    ବାଳୀଶଗ୍ରୈବ ଅଟେ ଦଶକନ୍ଧ
ବାଳି-ସନ୍ତାନ ମୋ ନାମ ଅଙ୍ଗଦ    ବଳୀ ସଂସାରେ ନ କରେ ପସନ୍ଦ
ବଳୀର, ରଘୁପତିଙ୍କ ଦୂତ; ବଳି ବଳି କଥା କହୁଛୁ ତୁ ତ ॥

ଉପହାସେ ଭ୍ରଷେ ଦ୍ୱିବିଂଶକର    ଅଙ୍ଗଦ ବାଞ୍ଛୁ ବନ୍ଧ ନାରୀଙ୍କର
କେଉଁ ଅଙ୍ଗଦ ତୁ ପ୍ରକାଶ କର    ତୋ ଅକୃତ ବିକୃତର ଥକର
ପିତାର, ପରପତ୍ନୀ୩ ଗୃହକର; ବଂଶ-ବିଷପ୍ରସୂନକୁ ବାକର ॥

ଅଙ୍ଗଦ କହେ ବିଶେଷ ରାଗରେ    ବଚନ କହୁ ବଡ଼ ସରାଗରେ
ଯୁଦ୍ଧ କରିଗଲୁ ପିତା ସଙ୍ଗରେ    ରଖିଲେ ତୋତେ ସେ କକ୍ଷଭାଗରେ
ଫେରିଲେ, ଯେତେବେଳେ ନଗରେ; ସାର ତରପଣ ଗୃହ ସାଗରେ ॥

ଖସି ପଡ଼ିଲୁ ତୁ ପିତାକାଖରୁ    ଖସି ପଡ଼େ ଯଥା ତାରକା ଖ-ରୁ
ଶୋଣିତ ବହିଲା ତୋର ମୁଖରୁ    ଜଳୁଥା ହେବ ଝରଣା ପ୍ରଖରୁ
ବାନ୍ଧିଲି, ତୋତେ ମୁଁ ଦାଉଡ଼ରେ; କ୍ରୀଡ଼ା କଲି ଘରଉ ଲଉଡ଼ରେ ॥

ମୋ ପ୍ରତି ତୋହର ବହୁ ବିନୟ    ବୈକୁଣ୍ଠ ଅଗ୍ରତେ ଯଥା ବି-ଲୟ୪
ମୁହୂର୍ତ୍ତିକେ ଭଜିଥାନ୍ତୁ ବାଲୟ    ଛାଡ଼ି ଦେଲି ଅସିଲୁ ତୁ ନିଳୟ
ସଂକେତ, ଏବେ ଥିବ ବେକରେ; ପାସୋରି ଦେଲୁ କି ଅବିବେକରେ ॥

ଏକ ରାବଣ କୈଳାସଶିଖରୀ    ଠେକୁ ଠେକୁ ହୋଇଗଲା ପୋଖରୀ
ମୁଖବାଟେ କଲା ବକତ ବାନ୍ତି    ଶୃଗାଳଦଳ ଯେପରି ରାବନ୍ତି
ସେପରି, ବଡ଼ ଛାଡ଼ି ଗୃହକୁ; ଫେରିଲା ଶୁଖାଇ ଦେଇ ମୁହଁକୁ ॥

---

(୧) ନିଳୟ—ଗୃହ, ଅଳୟ । (୨) ବାଳିଶ—ପାଗଳ, ନିର୍ବୋଧ
(୩) ପରପତ୍ନୀ—ଶତ୍ରୁ, ବିରୋଧୀ (୪) ବିଲୟ—ଗରୁଡ ।

କାର୍ତ୍ତବୀର୍ଯ୍ୟ ରାବଣକୁ ଡାକିଲା    ଅର୍ତ୍ତିରେ ମଲି ମଲି ସେ ଡାକିଲା
ଚୂଟିଧରି ତା'ର ଯହୁଁ କୁଟିଲା    ଛୁଟିଯିବ ପ୍ରାଣ ବୋଲି ରଟିଲା
ପିଟିଲା, ଅସି ଘରେ କୁଟିଲା; ହଟିଗଲା ତା କପାଳ ଫାଟିଲା ।।

କପଟରୂପରେ ପ୍ରବେଶି ବଣେ    ନାସ୍ତି ଗୈରିକଲା ପୁଣି ରାବଣେ
ବିପକ୍ଷ ହେଲେଣି ତା'ର ଗୀର୍ବାଣେ    ନିଶ୍ଚୟ ମରିବ ସେ ରାମବାଣେ
ନେବ ତା' ରାଣୀଙ୍କ ବିଭୀଷଣ,    ହେବ ଲଙ୍କାରେ ରଣ ବିଭୀଷଣ ।।

ସାପରୂପ ବେଦମତୀର ଶାପ    ତ ପ ଦେବ ଦେଖାଇ ପରତାପ
ଦଂଶନ କରିବ ସେ ମୁଖ-ଦଶ    ନାଶ ଯିବୁ ଦଣ୍ଡ ଦେବ ବିନାଶ
ବସନ୍ତେ, ବଂଶ ସମ ତୋ ବଂଶ, ବସ ସୁଖେ ହୋଇ ଶ୍ରୀରାମବଶ ।

ବିରସେ ଅଛନ୍ତି ସେ ରଘୁବୀର    ବୀର ସେ ସୁବେଳେ ସ୍ଥାପି ଶିବିର
ଚଳ ଶରଣାର୍ଥୀ ହୋଇ ଅଚଳ    କଲହ କଥାଟା ବଡ଼ ଅକଳ
କନ୍ଦର-ବାସୀ ଶ୍ରୀ ଅଦକନ୍ଦ; ନନ୍ଦସୁତ ଭଜେ ଗୋକୁଳାନନ୍ଦ ।



## ୬୩ଶ ଛାନ୍ଦ

ରାଗ-ରାମକେରୀ

ପ୍ରବୀଣ ମାନବ ଶ୍ରବଣ କର ହୃଦୟ ଡାଳି
ରାମକଥା-ତାମରସକୁ ହୁଅ ମଧୁପ ଭଳି ।୧।
କଳି କଳି ବାଳୀନନ୍ଦନ କହିଗଲା କହୁତ
କ୍ରୋଧରେ କମ୍ପାଇ ଅଧର କହେ ବିଶ୍ରବାସୁତ ।୨।
ରାମଙ୍କ କହ ଯା ଆମକୁ ଜିଣି ପାରିବ ନାହିଁ
ଗ୍ରାମକୁ ଯାଉ ସଂଗ୍ରାମକୁ ଡରିବ କାହିଁ ପାଇଁ ।୩।
ମାଗିଲେ ନ ଦେବି ରାଗିଲେ କି କରିବ ସେ ଯୋଗୀ
ଗରୁଡ଼ର ଗନ୍ଧ ଡର କି ହୁଏ ଦେଖିଲେ ଭୋଗୀ ।୪।
ସୁନାସୀରକୁ ତ ବିନାଶି ଥାନ୍ତା ଜ୍ୟେଷ୍ଠକୁମର
ପୀୟୂଷପାନରୁ ଅପୂଷ ଥିଲା ହେଲା ଅମର ।୫।
କଳସଶ୍ରବଣ ଅଳସ ଭାଙ୍ଗି ଯେବେ ଉଠିବ
ଭଲ୍ଲୁକ ପ୍ଲବଗପଲ୍ଲକୁ ଅନାୟାସେ ଭକ୍ଷିବ ।୬।

ଯଣେ କପି ଜଣେ ଦାନବ କରମାରେ ଅହାର
ଧମକ ଦେଖାଇ ସ୍ୱମ କି କରି ପାରିବ ମୋର ।୭।

ବଚନ କିଂଶଳେଚନର ଶୁଣି ଫେରି ଦ୍ୱରତ
ରାଘବଙ୍କ ଆଗେ ମଘବା-ପୀନ କଲ୍ଲ ବ୍ୟକତ ।୮।

ବ୍ୟଥିତେ କଥିତ ମୈଥିଲୀପତି ଅହେ ସୁଗ୍ରୀବ
ଆମରଣି ନ ହେବାଯାଏ ଆମ ରଣ ନ ଦେବ ।୯।

ଋକ୍ଷ କପି ବୃକ୍ଷ ପର୍ବତ ଧରି ହେଲେ ବାହାର
ଅକ୍ଷମ ନୁହନ୍ତି ଦକ୍ଷତା କେ କହିବ କାହାର ।୧୦।

ବକ୍ଷରେ ପଡ଼ି ଲକ୍ଷ ଲକ୍ଷ ଶର ହୋଇବ ଚୂନା
ଭୀଷଣ କଲେ ସେ ଈକ୍ଷଣେ ଶତ୍ରୁ ହଟିବେ ସିନା ।୧୧

ପ୍ରାଚୀର ଉପରେ ଅଟ୍ଟରେ ଉଠି କଲେ ସେ ରଡ଼ି
କର୍ବୁରପୁରକୁ କର୍ବୁର ଆସିଲେ ଧାଡ଼ି ଧାଡ଼ି ।୧୨।

ବେନି ଭାଇ ଘେନି ବାନର ଗଲେ ପୂର୍ବ ଦୁଆରେ
ପ୍ରହସ୍ତ ସହିତ ମହତ ରଣ ହେଲା ସେଠାରେ ।୧୩।

ମହୋଦର ମହାପାର୍ଶ୍ୱ ସହୋଦର ଏ ଦୁଇ
ଦକ୍ଷିଣ ଦ୍ୱାରକୁ ରକ୍ଷଣ କଲେ ସୈନ୍ୟ ସଜାଇ ।୧୪।

ସୁଷେଣ ସହିତ ପୂଷଣପୁତ୍ର ସେଠାକୁ ଗଲେ
ବାନା ଶରେ ଦୈତ୍ୟ ବିନାଶ ତହିଁ ବହୁତ କଲେ ।୧୫

ପ୍ରତୀଚୀ ଦୁଆରେ ମାଡ଼ିଲେ ରଣେ ବଳୀ ପାବନି
ଦ୍ୱିଜାମାଇ ସହ ଗୋଜାଦ ଭଲ୍ଲ ବାନର ଘେନି ।୧୬।

ନଳ ନୀଳ ଶାଳ ରସାଳ ଶିଳା ଶୈଳକୁ ଧରି
ଉତ୍ତର ସମରକ୍ଷେତ୍ରରୁ ନାଶିଲେ ବହୁ ଅରି ।୧୭।

ମଧ୍ୟଦେଶେ ସାଧ୍ୟାନୁସାରେ କରି ମହାଯୁଦ୍ଧକୁ
ଅଙ୍ଗଦ ଦୈତ୍ୟ ଅଙ୍ଗ ଦଣ୍ଡି କଲା ଶିବା ଗୃଧ୍ରଙ୍କୁ ।୧୮।

ଅସୁର ଲଭିଲେ କସୁର ରଣାଙ୍ଗନେ ସେ ଦିନ
ଭୁଷୁଣ୍ଡି ବୋଲାଇ ଦୂରରୁଠାରୁ ନିତାନ୍ତ ଘ୍ଲାନ ।୧୯।

ଶରଙ୍କର ସର୍ବ ମୋଟକୁ ମୁହିଁ ହେବ ଅଶକ୍ତ
ଲେଖଗୁରୁ[୧] ଲେଖା ଗୁରୁତ୍ୱେ ନିଶ୍ଚେ ହେବେ ବିରକ୍ତ ।୨୦।
ନୈହୃତ୍ୟ ସଦୃଶ ବହିଲା ତହିଁ ଶୋଣିତଧାର
ମହୀ ମହିଳାଙ୍କ ବହିଲ ଭାଲେ ସିନ୍ଦୂରଗାର ।୨୧।
ଯଥର ପାଦପ ପଥରେ ପଡ଼ିଗଲା ବହୁତ
ଏଥର ସମରେ ରଥର ଭଗ୍ନ କେତୁ କହୁ ତ ।୨୨।
ଅନେକ ପର୍ବତପତନେ ଅନେକପ[୨] ନିପାତ
ବାଜି ବଧା ବାଜୀ ଭଞ୍ଜିଲେ ମୃତ୍ୟୁ ନୁହେ ଗଣିତ ।୨୩।
ମୁଣ୍ଡ ଗଣ୍ଡି କାର ଦ୍ୱିଖଣ୍ଡ ପିଣ୍ଡ ଲୋଟୁଛନ୍ତି ମହୀ
କଟୀଠାରୁ କଟି ଯାଇଛନ୍ତି କଟି ଯୁଦ୍ଧରେ କେହି ।୨୪।
ଫାଟିଛି କା ତାଙ୍କୁ ଫିଟିଛି ତହିଁ ରୁଧିର-ଝର
ମିଠି ମିଠି କର ଗୃହିଁଛି କେତି ଧରଣୀ ପର ।୨୫।
ପତ୍ରିଜ[୩] ମହୀଙ୍କାଂ[୪] ଗୈରବ ଅଗେ ଯେ କରୁଥିଲେ
ସେ ମୂର୍ଖ, ବାନରସମ୍ପୂର୍ଣ ଗରଣେ ମୃତ୍ୟୁ ଲଭିଲେ ।୨୬।
ଅର୍ଯ୍ୟମା ବୁଡ଼ିବା ପର୍ଯ୍ୟନ୍ତ ସମର ଘନଘଟା
ଏ କାର୍ଯ୍ୟେ କାହାର ନିକାଯ୍ୟ[୫] ଦୁଅରେ କଣ୍ଠା ଛଟା ।୨୭।
ସବଳେ ପ୍ରବେଶ ପୁରେ ବେଳେ ରାମ ଲକ୍ଷ୍ମଣ ବେନି
ସ୍ନାନ ଭୋଜନାଦ ସାରିଲେ ହେଲା ବହୁ ଯାମିନୀ ।୨୮।
ବିଭାବସୁ-ସୁତ କହିଲେ ବିଭାବରୀରେ ଯିବା
ଅଭାବରେ ଥିବେ ରାକ୍ଷସ ବିଭବ ଅଗୌରବା ।୨୯।
ଉଚିତ ପ୍ରସ୍ତାବ ସୂଚିତ ହେଲା ଯହୁଁ ମାନସେ
ସମର ନିମନ୍ତେ କମର କଷି ଗଲେ ରଭସେ ।୩୦।
ଘେନି କରେ ଝଲୁବାର ନେ ମତ୍ତ ହେଲେ ସକଳେ
ଶାଣିତ ଦନ୍ତିରେ ବହୁତ ଅବମର୍ଦ୍ଦ[୬] ସେ ଦେଲେ ।୩୧।
ରାଳକରେ ରଇ[୭] ଜଳିଲା ନାହିଁ ଯେତେକ ମଲେ
ଶିବାଦ ହୋଇଣ ବିବାଦୀ ଶବ ଭକ୍ଷଣ କଲେ ।୩୨।

---

(୧) ଲେଖଗୁରୁ—ବୃହସ୍ପତି, (୨) ଅନେକପ—ହସ୍ତୀ, (୩) ପତ୍ରିଜ—ଗନ୍ଧପବାଣ, (୪) ମହୀଙ୍କାଶ୍ୱେର—ରାବଣ, (୫) ନିକାଯ୍ୟ—ଗୃହ, (୬) ଅବମର୍ଦ୍ଦ—ଯୁଦ୍ଧପୀଡ଼ା, (୭) ରଇ—ଚିତାଗ୍ନି ।

ପହିଲ ସମର କହିଲ ଯାହା ପାଇଲ ଗ୍ରନ୍ଥେ
ଥୋଇଲ ପଦକୁ ବୋଇଲ ଛାନ୍ଦ ବୁଝିବ ସନ୍ତେ ।୩୩।
ବାରଣ-ଦୁଃଖନିବାରଣ ଶଙ୍ଖଚକ୍ରଧାରଣ
ଚରଣ କରଣା ଗୋକୁଳାନନ୍ଦ କରେ ସ୍ମରଣ ।୩୪ ।

— —

## ୩୪ଶ ଛାନ୍ଦ

ରାଗ—ବଙ୍ଗଳା ଶ୍ରୀ

କରେ ଭଦ୍ର-ଖରେ ରାବଣ ଅଗରେ ଘରେ ଏ କଥା ଗୋଚର,
ଅଜ ଅଜରେ ଭଜିଲେ ଦୈତ୍ୟରାଜ ଜିତଲେ ପାଜ ବାନର ।୧।
କଟକରେ ପଶି ସମ୍ବଳ-ପୁରରୁ ନାଶ କଲେ ଯାହା କପି,
ପୁରୀ ପୂରିଗଲା ହା-ହା-କାର ରବେ ଶମି ନାହିଁ ସେ ଅଦ୍ୟାପି ।୨।
ରମ୍ଭା ଗଞ୍ଜା ବାଲେଶ୍ୱର ଯୋଗ ହେଲା ଅମ୍ବୁ ଦୁଃଖ ବର୍ଦ୍ଧମାନ,
ଅ-ଦ୍ୱବରେ ଅନୁ-ଗୋଳ କରୁଛନ୍ତି ଅସୁର-ଅସୁରୀମାନ ।୩।
ବାରଣଶିର ଭୂଧରେ ଗୁଣ୍ଡ ହେଲା କା-ଶିରେ ବର୍ଷିଲା ଶୀଳା,
ବେଙ୍କ୍ଟବେଳ ଦୁଃଖ ଭାରତରେ ଦୈତ୍ୟ କଟମାଳ ପୀଡ଼ା ଦେଲା ।୪।

---

୧ । ଭଦ୍ର (ଦୁତ ବିଶେଷ), ଖରେ (ଚଞ୍ଚଳ), ରାବଣ ଅଗରେ ଏ କଥା ଗୋଚର କରେ (ଜଣାଏ), ଅଜ (ଅଦ୍ୟ) ଅଜ (ଯୁଦ୍ଧ)ରେ ଦୈତ୍ୟମାନେ ହାରିଲେ । ବାନରମାନେ ଜିଣିଲେ ।

୨ । କଟକରେ (ରାଜଧାନୀରେ) ପଶି ପୁରରୁ ସମ୍ବଳ (ସଞ୍ଚୟ) କପି ନାଶ କଲେ ପୁରୀ (ଘର) ହା ହା-କାର ରବେ ପୂରିଗଲା । ବର୍ତ୍ତମାନ ସୁଦ୍ଧା ସେ ଶମ (ଶାନ୍ତ) ହେଇ ନାହିଁ ।

୩ । ରମା, ଗଞ୍ଜା (ରମ୍ଭାକୁ ଯେ ରୂପରେ ଗଞ୍ଜିପାରେ) ବାଲେଶ୍ୱର (ବାଳା ଈଶ୍ୱର) ଅର୍ଥାତ୍ ସୀତାଯୋଗେ ଅମ୍ବୁ ଦୁଃଖ ବର୍ଦ୍ଧମାନ ହେଲା (ବଢ଼ିଲା) । ଅ—ଦ୍ୱବରେ (ଅ ଅ ଶବ୍ଦରେ) ଅସୁର ଅସୁରୀମାନେ ଅନୁ (ପଛରେ) ଗୋଳ କରୁଅଛନ୍ତି ।

୪ । ବାରଣ (ହସ୍ତୀ) ଶିର ଭୂଧରେ ଗୁଣ୍ଡ ହେଲା । କା (କାହାର), ଶିରରେ ଶୀଳା ବର୍ଷିଲା । ବେଙ୍କ୍ଟବେଳ ଦୁଃଖ-ରୂପ ଭାରତରେ (ଚଞ୍ଚଳ) ଦୈତ୍ୟକଟମାଳକୁ ପୀଡ଼ା ଦେଲା ।

ଦବ-ଭଙ୍ଗା ଚରପାଦ ହୋଇ କେତେ ଠୁଳ ଅଛନ୍ତି କପାଳ,
ନେ-ପାଳ ବୋଲି ସେ କହି ନ ପାରନ୍ତି ଅଶକତେ ହେ ଭୂପାଳ ।୫।
ଖୁରଧାର ପର ଶସ୍ତ୍ର ନ କାଟିଲା ବାଣ-ପୁର ହେଲା ଛୁଚ୍ଛା,
ମରବା ହାରବା ଦୂରେ ଥାଉ ସୁଦ୍ଧା ନ ଲଭିଲେ କପି ମୂର୍ଚ୍ଛା ।୬।
ଯା-ପାନରେ ସୁର ହୋଇଲେ ଅମର କୀଶ ଛନ୍ତି କି ତା ପିଇ,
ସିନ୍ଧୁ ଲଙ୍ଘି ଏଠି ବିହାର କରନ୍ତି ମଲେ ଜୀଉଛନ୍ତି ଜୀଇ ।୭।
ନାହିଁ ତ ମେଦନୀ-ପୁର ଯାହାଙ୍କର ଗ୍ରାମ ଋଷି ଅଦେଶରେ,
ବଙ୍ଗର ଅଙ୍ଗର ମତ୍ତା ହୋଇଲେଣି କହୁଳ କହି ନ ସରେ ।୮।
ସୁଗ୍ରୀବ ମୂନବର ବାଣୀରେ ଏଥି କଲେ କପିଚକ୍ର-କେଳି,
ଅଣାବସ୍ଥା ଥିଲା ବିଜୟ-ସୁଧାକୁ ବସୁଧାରେ ଗଲା ଢଳି ।୯।
ଶଙ୍କରାଭରଣ ବି-ପତି ଉପରେ ବିପତ୍ତି କରି ପ୍ରଦାନ
ଅଷାଢ଼-ଶୁକ୍ଳ ଦଶମୀ ଉତ୍ସବକୁ ସ୍ମରିଲେ କଲେ ବହନ ।୧୦।

---

୫ । କେତେ କର ପାଦ ଦଦ୍ଭଙ୍ଗା (ଅଧାଭଙ୍ଗା) ହୋଇ କପାଳ ଠୁଳ ଛନ୍ତି । ଅଶକ୍ତ ହେବାରୁ ନେ (ନଅ) ପାଳ (ପାଳନ କର) ବୋଲି ସେ କହିପାରୁ ନାହାନ୍ତି ।

୬ । ଖୁରଧାର (ଖୁରପର ଧାର ଯାହାର) ଏପର ଶସ୍ତ୍ରମାନ କାଟିଲା ନାହିଁ । ବାଣପୁର (ବାଣର ପୁର) ଭରଣୀ ଅର୍ଥାତ୍ ଶରମୁଣା ଛୁଚ୍ଛା ହେଲା ।

୭ । ଯା (ଯାହା) ପାନରେ (ପିଇକରି) ଅର୍ଥାତ୍ ଅମୃତ ପିଇକରି ଦେବତାମାନେ ଅମର ହେଲେ । କୀଶ କପି ତାହା କ'ଣ ପିଇ ଅଛନ୍ତି କି ?

୮ । ମେଦନୀପୁର, ଯାହାଙ୍କର ମେଦନୀ (ପୃଥିବୀରେ) ପୁର (ଘର) ନାହିଁ ଅର୍ଥାତ ବଣରେ ରହନ୍ତି, ସେମାନେ ଋଷିରୂପୀ ରାମଙ୍କ ଅଦେଶରେ ଏହା କଲେ ।

୯ । କପିଚକ୍ର (କପିସମୂହ), ସୁଗ୍ରୀବ, ମୂନବ (ମୂଦଇ)ର କଥାରେ ଏଠାରେ କେଳି କଲେ । ବିଜୟ-ସୁଧା (ଜୟରୂପ ଅମୃତ)କୁ ଆମ୍ଭମାନଙ୍କର ଅଣା ବଟଥିଲା । (ଚରଣ କରିଥିଲା ତାହା ବସୁଧାରେ ଢଳିଗଲା ।

୧୦ । ଶଙ୍କରାଭରଣ (ଶଙ୍କରଙ୍କର ଅଭରଣ ଅର୍ଥାତ୍ ସର୍ପ) ବି (ପକ୍ଷୀ) ପତି (ସ୍ୱାମୀ) ବି ପତି ଅର୍ଥାତ୍ ଗରୁଡ଼ ଉପରେ ବିପଦ ପ୍ରଦାନକରି ଅଷାଢ଼ ଶୁକ୍ଳ ଦଶମୀ ଉତ୍ସବ (ବାହୁଡ଼ା ଯାତ୍ରା) ସ୍ମରିବଲ ପଟ୍ଟତକୁ କଲେ ।

ଭୈରବ ଶବଦ ଶୁଭୁଛି କେବଳ ବ୍ୟସ୍ତ ମନୁର ମାନସ,
ଦେଶାକ୍ଷ କହିବା ଅବଶ୍ୟକ ନାହିଁ ବହୁଛି ବହୁ ଆଦର୍ଶ ।୧୧।
ଖୋସା ଦଶା ହେଲା ବୋଲି ଦଶାନନ ବିଷାଦେ ହେଲା ଏ ଭୂପ,
ହକାରି ଅକ୍ଷିଲ ଶଙ୍କାରି ସହିତ ପୁନ ସେନାପତି ପାଶ ।୧୨।
କାଲି ସମିତିରେ କେମିତି ଜିତିବା ସମିତି କରେ ବିଗ୍ରହ,
ମୁଠା ଅକ୍ଷି ଘେନି ହଠାତ ପ୍ରବେଶ ସେଠାରେ ବାତକୁମର ।୧୩।
ପାରିଷଦବର୍ଗ କହିଲେ ଅଗାର ପ୍ରଥମ ବର୍ଣ୍ଣେ ଷୁଦ୍ରଂ,
ଯୋଗ କରିଥିବା ପ୍ଲବଗ ଅଗତ କମ୍ପା ତ୍ୟାଗ କରି ଗୋଠ ।୧୪।
କହେ ବାତପୁତ୍ର ଥରେ ବଂଶନେତ୍ର ନାଅ ଏହି ଅଞ୍ଜପତ୍ର,
ଜାନକୀ ପ୍ରଦାନ ନ କଲେ ଜୀବନ ନେବ ଏହି କଙ୍କପତ୍ର ।୧୫।
ମାର୍ଗଣ ଦେଖାଇ ମାଗିବାର କେହି ଏ ଜଗତେ ଦେଖା ନାହିଁ,
ସ୍ତୁତି କରି ଯତ ନେବା କଷ୍ଟ ଅତି ପର୍ବିକା ପଢ଼ ଶୁଭାଇ ।୧୬।
ଦଶମଥା କଥା ଶୁଣି ହନୁ ଯଥା ଯୋଗ୍ୟ ଆସନ ନ ପାଇ,
ଯଥାର୍ଥ ରଥାଙ୍ଗ ପରି ପୁଚ୍ଛ କରି ପତ୍ର ପଢ଼େ ତତ୍ପାରେହି ।୧୭।
ରାଘବରୂପରେ ଦର ନାଶି ବନୁ ଚୋରି ଦ୍ରବ୍ୟ ଉଦ୍ଧାରଣ,
ଗୋତ୍ରା-ଜା-ହାରି-ବପୁରେ ବିଦ୍ୟମାନ ତାକୁ ସାମାନ୍ୟ ନ ମଣ ।୧୮।

---

୧୧ । ଭୈରବ (ଭୟଙ୍କର), ଦେଶାକ୍ଷ (ସାକ୍ଷ ଦାସ)

୧୩ । ସମିତ (ଯୁଦ୍ଧ), ସମିତଃ(ସଭା) ।

୧୪ । ପାରିଷଦ୍ ବର୍ଗ (ସଭାସଦମାନେ) କହିଲେ ଅଗାର (ଗୃହ) ପ୍ରଥମ ବର୍ଣ୍ଣେ ଅର୍ଥାତ୍ 'ଅ'ରେ ଷୁଦ୍ରଂ ଅର୍ଥାତ୍ ଅନୁସ୍ୱାର ଯୋଗ କଲେ 'ଅଂଗାର' ହେଲା । ଅଗାରକୁ ଯେ ଅଙ୍ଗାର କରିଥିଲା ସେ ପ୍ଲବଗ (ମର୍କଟ) ଗୋଠ ଛାଡ଼ି କାହିଁକି ଆସିଲା ।

୧୮ । ରାଘବ (ମତ୍ସ୍ୟ ବିଶେଷ) ଅର୍ଥାତ୍ ମତ୍ସ୍ୟରୂପରେ ଦର (ଶଙ୍ଖ) ଅର୍ଥାତ୍ ଶଙ୍ଖାସୁରକୁ ନାଶି ବନୁ (ଜଳରୁ) ଶ୍ରେଷ୍ଠ ଦ୍ରବ୍ୟ ବେଦ ଉଦ୍ଧାରଣ କରିଥିଲେ, ରାଘବ (ରାମଚନ୍ଦ୍ର) ରୂପରେ ଦର (ଭୟ) ନାଶି ବନୁ (ବଣରୁ) ଶ୍ରେଷ୍ଠ ଦ୍ରବ୍ୟ ସୀତା ଉଦ୍ଧାରଣ କରିବୁ । ଯାହାର ବପୁରେ ଅର୍ଥାତ୍ ଦେହରେ ଗୋତ୍ର (ପର୍ବତ) ବିଦ୍ୟମାନ (ରହିଥିଲା), ତାକୁ ସାମାନ୍ୟ ମଣ ନାହିଁ । ଅର୍ଥାତ୍ କମଠ ରୂପରେ ଯେ ପର୍ବତ ବହିଥିଲେ । ଗୋତ୍ରା (ପୃଥିବୀ) ଗୋତ୍ରାଜା (ସୀତା) ବପୁରେ (ଦେହରେ) ହାରିରୂପେ ବିଦ୍ୟମାନ । ତାକୁ ସାମାନ୍ୟ ମଣ ନାହିଁ ।

ବସୁଦ୍ଧବର ବିନ୍ୟାସ ବିନାଶ ତ ହ୍ରାସ ନିବିବେଶ-ବାସ,
ହିରଣ୍ୟପୁରେ ବିଧ୍ୱଂସନପ୍ରୟାସୀ ପ୍ରକାଶ ନର ପଞ୍ଚାସ୍ୟ ।୧୯।
ବଳ ଦୈତ୍ୟ ଦଳିବାରେ ଶକ୍ତିଶାଳୀ ଅମ୍ଭ ଭଳି ନାହିଁ ଆନ,
ରାଜ ରାଜତେଜ ହରଣରେ ଓଜଶୀଳ ଯେ ସେ ଶକ୍ତିହୀନ ।୨୦।
ଛଅ ଅବତାରେ ସପ୍ତମାବତାର ସଂଯୋଗ ଯଦି ବିଯୋଗ,
କରିବୁ ବରିବୁ ନାହିଁ ମରିବାକୁ ଜାଣିବୁ ଏହା ସୁଯୋଗ ।୨୧।
ବିଗ୍ରହ ବିଗ୍ରହେ ପାଞ୍ଚ ସେନାପତି ପାଞ୍ଚ ମନ ପାଞ୍ଚ ଦୈତ୍ୟ,
ପଞ୍ଚଶ ପ୍ରକୃତି ସ୍ୱରୂପ ପଚିଶ ସେନାପତି ତହିଁ ସ୍ଥିତି ।୨୨।

---

୧୯ । ଅମ୍ଭେ ବସୁଦ୍ଧବର (ଶ୍ରେଷ୍ଠ ବସୁନ୍ଧ) ରୂପରେ ପୃଥିବୀକୁ ବିନ୍ୟାସ (ଧାରଣ) କରିଥିଲୁ । ତଦ୍ୱାରା ନିବିବେଶ (ଦେବତା) ବାସ ହ୍ରାସ ଏବଂ ବିନାଶ ହୋଇଥିଲା । ବର୍ତ୍ତମାନ ରାମାବତାରରେ ବର+ଅଦ୍ଧବାର=ବସୁଦ୍ଧବର ବର ଶ୍ରେଷ୍ଠ ଅଦ୍ଧବ (ଯୁଦ୍ଧ)ରେ ତୋର ବିନାଶ ବି କି ବିଶେଷ ଭାବରେ ନ୍ୟାସ କରିବୁଁ । ଦେବତାମାନଙ୍କର ଭୟ ଯିବ । ହିରଣ୍ୟ (ଦୈତ୍ୟବିଶେଷ) ନର ପଞ୍ଚାସ୍ୟ (ନରସିଂହ) ଅମ୍ଭେ ନୃସିଂହରୂପରେ ପ୍ରକାଶ ପାଇ ପୁରର (ଘର-ଭିତରେ) ହିରଣ୍ୟନାମକ ଦୈତ୍ୟକୁ ବିଧ୍ୱଂସନ କରିବାରେ ପ୍ରୟାସୀ ହୋଇଥିଲୁଁ । ବର୍ତ୍ତମାନ ରାମାବତାରରେ ହିରଣ୍ୟ (ସୁବର୍ଣ୍ଣ)ପୁରକୁ ଅର୍ଥାତ୍ ଲଙ୍କାପୁରକୁ ବିଧ୍ୱଂସନ କରିବାକୁ ପ୍ରୟାସୀ । ଯେହେତୁ ଅମ୍ଭେ ନରମାନଙ୍କ ମଧ୍ୟରେ ସିଂହସ୍ୱରୂପ ଅଟୁଁ ।

୨୦ । ବଳ (ଦୈତ୍ୟବିଶେଷ) ବାମନାବତାରରେ ବଳକୁ ଦଳିଥିଲୁ । ଏ ଅବତାରରେ ବଳୀ (ବଳୁଆ) ଦୈତ୍ୟ ଦଳିବୁଁ । ଅମ୍ଭ ଭଳି ଶକ୍ତିଶାଳୀ ଅନ୍ୟ ନାହିଁ । ରାଜରାଜ (କ୍ଷତ୍ରିୟ) ତେଜ ହରଣରେ ଯେ ଓଜଃଶୀଳ ଅର୍ଥାତ୍ ପରଶୁରାମ ସେ ଅମ୍ଭଠାରୁ ଶକ୍ତିହୀନ । ରାଜ-ରାଜ (କୁବେର) ତେଜ ହରଣରେ ଯେ ଓଜଃଶୀଳ ଅର୍ଥାତ୍ ତୁ ଅମ୍ଭଠାରୁ ଶକ୍ତିହୀନ ।

୨୧।୨୨ । ବିଗ୍ରହ (ଯୁଦ୍ଧ) ରୂପ ବିଗ୍ରହ ବା ଦେହରେ ପାଞ୍ଚ ସେନାପତି (ପଞ୍ଚ-ମନ) ରେ ଦୈତ୍ୟ ତୁ ଏ କଥାକୁ ପାଞ୍ଚ କି ବିଚାର କର । ପଚିଶ ସେନାପତି ପଚିଶ ପ୍ରକୃତି ପରି । ଅମ୍ଭେ ଦୁଇଭାଇ ତହିଁରେ ଜୀବ ଓ ପରମ ରୂପରେ ପ୍ରକାଶ । ଏମାନେ ଅବିନାଶର ଅର୍ଥାତ୍ ମରିବେ ନାହିଁ । ତୁ ମରିବୁ । ବିନାଶର ଅଣ୍ଟା ତେଜ ବିଶେଷ କି ବଶୀଭୂତ ହେବାପାଇଁ ଅଛି ।

ଅମ୍ଭେ ତୁଲ୍ୟ ସହୋଦର ତହିଁ ଜୀବ ପରମରୂପେ ପ୍ରକାଶ,'
ଅବିନଶ୍ୱର ଏମାନେ ବିନାଶର ଅଣା ଦେଇକ ବଶେ ଅସ ।୨୩।
କୁଟିଳପ୍ରକୃତ କହନ୍ତ ଜଟିଳ ଜଟିଳ କରନ୍ତୁ ଅତ,
ପଳା ତୁ ଚଳାନା ବଳାଗ୍ରତଦାଳା ଯିବ ପରପନ୍ଥୀ ମନ୍ତ୍ରି ।୨୪।
ସୈନ୍ୟ ସଂଗ୍ରହରେ ଅଗ୍ରହ ନ କଲ୍ ନିଗ୍ରହ କଲ ପ୍ରଦାନ,
ସେହ୍ନହେତୁ ତବ ଅହାବ ବଢ଼ିଛୁ ସମ୍ଭବ ଜଭେବ ମନ ।୨୫।
ମନ୍ଦମତଠାରୁ ଛନ୍ଦ କଥା ଶୁଣିକର ଅମନ୍ଦ ଗମନ,
ସୁନ୍ଦରବୃନ୍ଦ-ପୁରନ୍ଦରଙ୍କ ଅଗେ କହନ୍ତ ବାତନନ୍ଦନ ।୨୬।
ବିତୁଙ୍ଗାଚରଣ ଦଶମୂର୍ଦ୍ଧାଠାରୁ ଶୁଣି ବସୁଧାଜା-ଧବ,
ସଜ୍ଜଇଲେ ସୈନ୍ୟ ବଜାଇ ବାଜାକୁ ବାହାର ହେଲେ ଦାନବ ।୨୭।
ଲଭସ୍ତ୍ର ପକ୍ଷର ଭଟ୍ଟ ଶ୍ରେଷ୍ଠ ହେଲେ ଅଚ୍ଛନ୍ନ୧ ଅସ୍ୱାଦ ଧର,
କନ୍ଦନ ବୃଂହତ ହେ୍ଷା ଅଡ଼ମ୍ବର ବିସ୍ତାରରେ ସ୍ଥଳ ପୂର ।୨୮।
ହାବେଳୀ ଦଦ୍ଭୁଣ ସାବେଳୀ ଅସିଲ୍ ତା ବଳମୁଖ ଦଳଲେ,
ଶୂରଙ୍କର ଶରକାରବାରେ ସୂର ଅକାଶରେ ନ ଦଶିଲେ ।୨୯।
ଲକ୍ଷକପି ବୃକ୍ଷ ଶିଖରରେ ସବ ବଣି ଖ କରନ୍ତି ରୋଧ,
ପ୍ରାଣପଣ କଣ ରଚନ୍ତି ଅୟୁବଗଣ ଯୁଦ୍ଧ ଉପରୋଧ ।୩୦।
ବିକ୍ରମ ଦେଖାଇ ଶକ୍ରପର ନିବିକ୍ରମ ପରେ ଯେତେ ବାଣ,
ବରଷିଲ୍ ବାରବର ଅନାୟାସେ କଲେ ତାହା ନିବାରଣ ।୩୧।
ଦସ୍ୟୁ ନିଧ୍ୱ ସହ ସାମ୍ୟଯୁଦ୍ଧ କଲ୍ କାୟାକୁ କର ଚୋପନ,
ରହୁ ଗଗନରେ ଅଦୃଶରେ ଦୁଇ ଭାଇଙ୍କି କଲ୍ ବନ୍ଧନ ।୩୨।
ଅଷ୍ଟାପଦ୨ ଲତା ବେଷ୍ଟନରେ ଯଥା ହେବ ତମାଳ ପାଦପ,
ରାମ ଲକ୍ଷ୍ମଣଙ୍କ ଶ୍ୟାମଳ ବପୁରେ ତଦ୍ରୂପ ସେ ସର୍ପ ଗ୍ରେପ ।୩୩।
ଧର୩ ଝରେ ଝରେ ପ୍ରାତଃ ରବିକରେ ପଡନେ ଯଥା ଯତନ,
ଧୂମଯୋନି୪ କୋଳେ ଶତମନ୍ୟୁଧନୁ୫ ଅନୁସାରେ ସୁପ୍ରସନ୍ନ ।୩୪।
ପ୍ରଦୀପର ଉଦ୍ଦୀପନ ଅନୁଦତ ହୁଏ କୌମୁଦୀରେ ଯଥା,
ସୁମିତ୍ରା-ପୁତ୍ରଙ୍କ ଗାତ୍ରେ ଉରଗଣର ହୀନପ୍ରଭ ତଥା ।୩୫।

---

(୧) ଅଚ୍ଛନ—ତଲ, (୨) ଅଷ୍ଟାପଦ—ବୁଡ଼ୀଅଣୀ, (୩) ଧର—ପର୍ବତ, (୦) ଧୂମଯୋନି—ଅଗ୍ନି, (୫) ଶତମନ୍ୟୁଧନୁ—ଇନ୍ଦ୍ରଧନୁ,

ଏ ଦଶା ବିଷାଦ-ବିଷ ବ୍ୟାପି କ୍ଷୀଣ ବଂଶକୁ କଲା ଅବଶ,
ମାତ୍ର ବିଭୀଷଣ ମାନସେ ବର୍ଷଣ କେବଳ ହର୍ଷ ବିମର୍ଷ ।୩୬।

ଦଶାନନ-ସୁତକୃତ ଦଶା ହେଲା ମୋ ଭାଗ୍ୟର ପରୀକ୍ଷକ,
ମିତ୍ର କି ଅମିତ୍ର ଜାଣିବି ହେବି କି ନ ହେବି ଲଙ୍କାରକ୍ଷକ ।୩୭।

ଭାଳି ଏହି ଭଳି ସନ୍ଦେହ ଦୋଳରେ ଖେଳି ବଦେ ରାମ ଶୁଣ,
ପନ୍ନଗବନ୍ଧନେ ବିପନ୍ନ ଅପଣ ସୁପର୍ଣ୍ଣ(୧) କର ସ୍ମରଣ ।୩୮।

ରାଘବ ନିଜର ଲାଘବ ଦେଖାଇ କହିଲେ ହେ ଲଙ୍କାପତି,
ଦ୍ୱି-ରାଜ ବିରାଜମାନ କରିବେ କି ଦୟା କହି ମୋହ ପ୍ରତି ।୩୯।

ପୁଣ୍ଡରୀକାକ୍ଷଙ୍କ ବାହନ ସେ ତାର୍କ୍ଷ୍ୟ କ୍ଷମା ହେବେ ମୋହ ପକ୍ଷ,
ବାରମ୍ବାର ଅନୁରୋଧରେ ମନନ(୨) କଲେ ତହୁଁ ନଳିନାକ୍ଷ ।୪୦।

ରାମଙ୍କ ସ୍ମରଣ ରମ୍ୟକଦ୍ୱୀପରେ ଜାଣି ଜାଣି ବିଜେ ବିଷ୍ଣୁରଥ(୩)
ଅବିଳମ୍ବେ ବ୍ୟାଳ ବିଳକୁ ଚଳିଲେ କାକୁସ୍ଥ(୪) ଲଭିଲେ ସ୍ୱାସ୍ଥ ।୪୧।

ବିନୀତବଦନ ବିନତାନନ୍ଦନ କହିଗଲେ ନିଜାଳୟ
କହଇ ଗୋକୁଳାନନ୍ଦ ନନ୍ଦାତ୍ମଜ ପଦଦ୍ୱନ୍ଦେ ରହୁ ଲୟ ।୪୨।

---

## ୩୬ଶ ଛାନ୍ଦ

### ରାଗ—କାମୋଦୀ

ପାପ-କ୍ଷୁଧାକୁ ସୁଧା ସମ ଏହି ବସୁଧା-
ସୁତା ବନ୍ଦୀ ବିଷୟୀ ଚୟ ।
ଦଣ୍ଡକେ ଦଣ୍ଡଧର ଦଣ୍ଡ ଖଣ୍ଡନ କର
ମଣ୍ଡିବ ପଣ୍ଡିତହୃଦୟ ।
ହେ ମେଘନାଦ ।
ଦଂଦଶୂକ-ପାଶେ ବନ୍ଧନ । ସର୍ଜି ଅର୍ଜି ବିଜୟ-ଧନ
ବାପ ପାଶେ ଅର୍ପଣ କଲ କୋହି କୃପଣ
ଭାଷି ଆପଣା ଦର୍ପମାନ ।୧।

---

(୧) ସୁପର୍ଣ୍ଣ—ଗରୁଡ଼, (୨) ମନନ—ପୁନଃ ପୁନଃ ସ୍ମରଣ ।
(୩) ବିଷ୍ଣୁରଥ—ଗରୁଡ଼ (୪) କାକୁସ୍ଥ—ସୂର୍ଯ୍ୟବଂଶୀୟ ରାଜା ରାମଚନ୍ଦ୍ର ।

ନାସ୍ତିଗୀର ରାକ୍ଷସ ପୌରଜନଙ୍କ ପାଶ
ସ୍ୱସୁତ-ଗୌରବ ପୌରୁଷ,
ରାକ୍ଷର ଅଣୀ-ବଷ- ପାଶରେ ବୈଶ୍ୱ ନାଶ
କର ଫେରନ୍ତୁ ନିଜ ବାସ ।
ହେ ଦୈତ୍ୟବଂଶ
ତ୍ରିଦଶବୃନ୍ଦ ଯା'ର ଦାସ । ତାହାକୁ ଏ କାଣ ମନୁଷ୍ୟ ।
କ୍ଳେଶ ଦେବାକୁ ବଣ ବେଶ ବନ୍ଧୁ ମୋ ଦେଶ:
ପାଶରେ ହେଲେ ପରବେଶ ।୨।
ଝଟିତି କର ଗୃର କଟକରେ ପ୍ରଗୃର
ଭଟ କରନ୍ତୁ କଏ ବାର ।
ବାଟରେ ପାଟ ପାର ବାଣ୍ଡ ବଢ଼ ଅପାର
ହାଟ ପାଟଣା ହେଜ ଜୂର ।
ସେ ଘଟେ ଶୀର ।
ପୂର୍ଣ୍ଣ କର ରଖନ୍ତୁ ଦ୍ୱାର । ହାଟକ ଅଧ ଦାନ କର ।
ଓଟ ଘୋଟକ ଦନ୍ତୀ ବୃନ୍ଦଅ ପନ୍ତ ପନ୍ତ
ଅଟକ ନୋହୁ କଛୁ ମୋର ।୩।
ବୋଲନ୍ତେ ମୌଳିମାଳି ଚଳିଲେ ଦୈତ୍ୟାବଳୀ
କରି କିଳିକିଳା ବୋବାଳି ।
କାଳୀ ଘୁମୁରେ ଛେଳି ମହିଷ ମେଷାବଳି
ଦେଲେ ଯା ବଳୀ କେତ୍କ କଳି ।
ସେ ଶୃଙ୍ଗୀଅଳୀ ।
ପାଶେ ଖେଳିଲେ ମାର ଢାଳି । ବଜାଇଲେ ଘଣ୍ଟ କାହାଳୀ ।
ମଦରେ ମାଂସ ଦଳି ଗିଳିଲେ ଥାଳି ଥାଳି
ନିଶାଭୋଳରେ କଲେ କଳି ।୪।
କାଲିଲେ ଧ୍ୱଜାବଳୀ ପ୍ରାସାଦେ ଭଳି ଭଳି
ତେଜ ଦଶିଲ ଅଂଶୁମାଳୀ ।
ଦେହଳୀ ପାଶେ ମିଳି ବାଳୀଏ ହୁଳହୁଳୀ
ଦେଲେ ବାଦ୍ୟଧ୍ୱନିରବେ ବଳି ।
ସେ ଇନ୍ଦ୍ରଜିତ ।

ନାୟିକ କହେ ଏହପର । ଅବକ ଅସିଲ୍ ମୁଁ ମାର ।
ବାରିଜାକ୍ଷୀଏ ବାର          କହୁଲେ ମଘବା'ର
ନ ହାର ଫେରିଲେ ଫଗର ।୫।
ନବେ ରଥ ଭଙ୍ଗାଇ          ବଡ଼ାଇକ ଛଡ଼ାଇ
ଦେଲ ନାଗପାଶେ ଗୁଡ଼ାଇ ।
ଗୃପେ ଶର ଚଢ଼ାଇ          ଶେଷ କଲ ଲଢ଼ାଇ
ଋକ୍ଷ ବାନର ଘଉଡ଼ାଇ ।
ସେ ବୀରବଂଶ-
ଶଶଧର ଏ ଋକ୍ଷ କୀଶ—ଋକ୍ଷ ସନ୍ତୁଷ ହେଲେ ଦୃଶ୍ୟ
ବନୁ ଅଣାଡା ସୀତା          ଦଶଗ୍ରୀବ-ବନିତା
ହେବ ସନ୍ଦେହ ନାହିଁ ଲେଶ ।୬।
ଦୈତ୍ୟଙ୍କ ମଧ୍ୟୁ କେହୁ          କହୁଲେ କାହିଁ ଅହୁ
ମନ୍ତ୍ରକେ ଦଣ୍ଡେ ଥାଇ ନାହିଁ ।
ମହୀଶ ପାଶେ ଏହୁ          ପହୁଜ ଚରେ ରହୁ
କମ୍ପା ଉଶ୍ୱାସ କର ତହିଁ ।
ସେ କୁଳ ଲୁଳ
ରାତ ନ ପାହୁଥିବ ଧାଇଁ । ଅସିବେ ଡେଇଁ ଗଡ଼ଖାଇ
ପଶିବେ ସାହୁ ସାହୁ-          ବହୁବ ରକ୍ତ ନଈ
ନାଶିବେ ପର୍ବତ ପକାଇ ।୭।
ହନୁମାନକୁ ବନୁ          ଅଙ୍ଗଦକୁ ଅନୁ-
ମାନ କରନ୍ତୁ ଶେଷ ଫଳ ।
ଯା ତନୁ ସାନୁମାନ-          ଠାରୁ ନୁହଇ ସାନ
ମାନ ପୂରଲ୍ଲ କଡା କାଳ ।
ସେ କପିବୀର ।
ଚିଳବ ବାଳ ଭାନୁ          ଚଳିଲ ମାତା ସନ୍ନିଧାନୁ
ଲଗାଇ ବୃହଭାନୁ          ଉଡ଼ାଇ ଦେଲ ସ୍ଥାନୁ
ମନୁ ନ ଯାଏ ସେହୁଦିନୁ ।୮।
ଏ କାଳେ କପିବଳ          ସୁବେଳରେ ଘହଳି
ଗୋଳ କଲେ ଅତ ବହଳ ।

ଅଚଳ ଥଳ ଥଳ     ଧରି ଘଲେ ସଥଳ
ଶୁଣି ଦୈତ୍ୟେକୁଳ ଅକୁଳ ।
ସେ ମାର ମାର ।
ଧର ଧର ଏ ବାରମ୍ବାର     କାରବାର ସ୍ବ ତ ଗୋଚର-
ହେବାରୁ ବାରତାର ପାଶେ ଇଣାଏ ଗୃର
ଯା ପରଗୃର ପୁରନ୍ଦର ।୯।

ଦେଖ କର କମ୍ପନ     କହଇ ପ୍ରଭଞ୍ଜନ
ଧୈର୍ଯ୍ୟ ଧର ଦଣ୍ଡଇପନ ।
ଅସ୍ତ୍ର ନୋହୁ ତପନ     ସମର ସମାପନ
କରିବା କରୁଛୁ ଜ୍ଞାପନ
ସେ କଣ୍ଠକବେ ।
ଶାନ୍ତି କରିବ ସଂସ୍ଥାପନ । ସୁଖେ କର କାଳ ଯାପନ
ରକ୍ଷ କପି ଗୋପାନ     ଦେଖିବାକୁ ସ୍ବପନ
ହେବେ ସେ ବୃନ୍ଦନ୍ତୁ ଅପଣ ।୧୦।

କହିଲ ସ୍ଥୂଳଜଙ୍ଘ     ଲୋଡ଼ା ନାହିଁ ଶତାଙ୍ଗ(୧)
ମାତଙ୍ଗ ତୁରଙ୍ଗ ଖଡ଼ଗ ।
କେହି ନ ଯିବେ ସଙ୍ଗ     ଭାଙ୍ଗିବ କପିସଂଘ
ରଙ୍ଗ ତରଙ୍ଗ ହେବ ଭଙ୍ଗ ।
ହେ ମୋର ଅଙ୍ଗ ।
ନଗକୁ ମଣଇ ପତଙ୍ଗ । ନାଗ ଅଗବେ ବାନ୍ଧୁ ବେଙ୍ଗ
ଜଙ୍ଗଲ ଜୀବ ଅମ-     ଙ୍ଗଳ କରନ୍ତି ଯୋଗ
ଦୈତ୍ୟଙ୍କ ଦଅନ୍ତି ଅତଙ୍କ ।୧୧।

ନୃପେ କରି ଦର୍ଶନ     ବୋଲେ ବଜ୍ରଦଶନ
ମୋତେ ଡରେ ପାକଶାସନ ।
ଶ୍ବସନ ଯା ଅଶନ     ତା ଭୂଷଣ ଈଶାନ
ବଳେ ମୋଠାରୁ ହେବେ ସାନ ।
ସେ ସୁଦର୍ଶନ- ।

---

(୧) ଶତାଙ୍ଗ—ରଥ ।

ଧର ସରସୀ-ରୁହାସନ		କର ପାରେ ମୁଁ ବିନାଶନ
ଋକ୍ଷ କପି ନିଧନ		ନ କଲେ, ଶତ୍ରସନ
ଧରିବି ନାହିଁ କଦାଚନ ।୧୨।
ଜଣକୁ ଜଣ ରଣ-		ପ୍ରବୀଣତା ସ୍ୱବଣ
ସମ୍ମୁଖରେ କର ବଖାଣ ।
ପ୍ରାଣକୁ ରଖି ପଣ		ଟାଣରେ ଧର ବାଣ
ସମରପ୍ରାଙ୍ଗଣେ ପ୍ରୟାଣ ।
ସେ ବୀରଗଣ ।
ଗଣନାରେ ଲକ୍ଷେ ପ୍ରମାଣ । ଭୀତ ହେଲେ ସ୍ୱର୍ଗେ ଗୀର୍ବାଣ
ରଘୁଗଣ ଲକ୍ଷ୍ମଣଃ		ସୁଷେଣ ବିଭୀଷଣ
ସମସ୍ତେ କଲେ **ଅକ୍ରମଣ** ।୧୩।
ବହୁ ସଂଖ୍ୟକ ଋକ୍ଷ		ବାନର ଲକ୍ଷ ଲକ୍ଷ
ଯାତୁରକ୍ଷ ସଂଖ୍ୟରେ ମତ୍ତ ।
ବିପକ୍ଷେ କର ଲକ୍ଷ୍ୟ		ବାଣ ଭୂଧର ବୃକ୍ଷ
ମାରନ୍ତି ଦକ୍ଷତା ସହିତ ।
ସେ ନଳନାକ୍ଷ ।
ତୀକ୍ଷ୍ଣ ବିଶିଖେ ଦୈତ୍ୟ ବକ୍ଷ । ଫୁଟାନ୍ତି ହୋଇ ନିରପେକ୍ଷ
ଅକ୍ଷରେ ମାଜ ନାମ		ନେବାକୁ ଯେ ଅକ୍ଷମ
ଲଭିଲେ ମୋକ୍ଷ ସେ ପ୍ରତ୍ୟକ୍ଷ ।୧୪।
ପ୍ରଭଞ୍ଜନ ପ୍ରହସ୍ତ		ପ୍ରଜଙ୍ଘ ବଜ୍ରଦନ୍ତ
ହତ ହେବାର ଦେଖି ଦୂତ ।
ତ୍ରିରଗକୁ ତ୍ରିକନ୍ତ		ଗଢ କର ଉଦନ୍ତ
ଦେଲେ ଶୁଣି ବିଶ୍ରବାସୁତ ।
ସେ ନ୍ୟସ୍ତବ୍ୟସ୍ତ-
ଚହେ ମସ୍ତକେ ଦେଇ ହସ୍ତ । ବୋଲେ ଶେଷ ହେଲା ସମସ୍ତ
ବିଭଯାକ ପର୍ଯ୍ୟସ୍ତ-		ପୁସ୍ତକ କଲା ପାଠ
ଚିନ୍ତା-ବ୍ୟାଧିରେ ହୋଇ ଗ୍ରସ୍ତ ।୧୫।
ହେଲା ଯହୁଁ ସକାଳ		ଡାକି ଦୈତ୍ୟ ସକଳ
ବ୍ୟାକୁଳେ କହେ ମୋର କୁଳ ।

ବୁଡ଼ିବା ହେଲା ମୂଳ ଶୂଳ-ଦାନବକୁଳ
ଭସାଇଲେ ବିକଳ-ଜଳ ।
ସେ ମଲେ ମଲ୍ଲ
ପଲ ପଲ ଦୈତ୍ୟଙ୍କ ବଳ । ଭଲ୍ଲ୧ ସେଲ ହେଲା ବିଫଳ
ଭଲେ ଜାଣିଲେ ଭଲ୍ଲ୨ ତୁମ୍ଭେ ତ କଲବଲ
ହୋଇ ଗୃହିଁଲ ବଲବଲ ।୧୬।
ଘଟଶ୍ରବଣ ବଣ- ପ୍ରାଣୀଗଣଙ୍କ ପ୍ରାଣ
ଗ୍ରହଣେ ବିଷୟେ ପ୍ରବୀଣ ।
ତା ଭଳ ଅନ୍ୟ ଦୈନ୍ୟ ହରଣକୁ ଭାଜନ
ନୁହେ ବହନ ତାକୁ ଅଣ ।
ସେ ଆଚରଣ
ରଣରେ କଲେ ତା ଚରଣ । କର ପ୍ରହାରଣରେ ଜାଣ
ବଧି ରୁଧିର ପିଇ ଶବ ଶିବାଙ୍କୁ ଦେଇ
କରିବ କ୍ଷୁଧା ନିବାରଣ ।୧୭।
ଦୋଷାଚର-ଶଶାଙ୍କ ଦୋଷାରୋପେ ସଶଙ୍କ
ହୃଦୟେ କୌଣପ ବହୁତ ।
ପ୍ରଭାବଶାଳୀ ବୀର- ବରର ଗର୍ଭାଗାର
ଦ୍ୱାର ସମ୍ମୁଖେ ଉପସ୍ଥିତ ।
ସେ ପ୍ରବେଶରୁ
ଦୁରନ୍ତର ପୂଟାରୁ ହୀରୁ । ତରୁଣ ଗଲେ ତଦୁଦରୁ ।
ପ୍ରଶ୍ୱାସ ମରୁତରେ ନିଯାମା ତର ତରେ
ପଡ଼ିଲେ ଯେ ଥିଲେ ଅଗରୁ ।୧୮।
ତା ନିଶ୍ୱାସରୁ ହ୍ରାସ ହେବ ନିଷ୍ଟେ ବତାସ
ହ୍ୱାସ ଦଏ ପାର୍ଶ୍ୱସ୍ଥ ଜୀବେ
ଘୂର୍ଣ୍ଣି ବାୟୁରେ ଶୁଷ୍କ ଘାସ ସଦୃଶ ବାସ-
ସ୍ଥିତ ଉପକରଣ ସବେ ।
ସେ ଉତ୍ତମାଙ୍ଗ ।
ଯୋଗ କଲେ ଅଙ୍ଗ ପ୍ରତ୍ୟଙ୍ଗ । ଯେପରି ଦେଖାଯିବ ନଗ
ତଦ୍ରୂପ ଅବୟବ ନୁହଇ ଅସମ୍ଭବ
ତେବେ ସେ ଏକମାତ୍ର ଜୀବ ।୧୯।

---

(୧) ଭଲ୍ଲ—ଏକ ବାଣ (୨) ଭଲ୍ଲ—ଭାଲୁ ।

ବୀର ଭରଲେ କାନେ        ଭେରତୁରୀ ବି-ତାନେ
ବଜାଇଲେ ଦାନବମାନେ ।
ମତ୍ତ ମାତଙ୍ଗ ଦନ୍ତ        ଘାତ ଲଭିନ୍ତେ ଦୈତ୍ୟ
ଉଠି ବସିଲ ନିଜ ସ୍ଥାନେ ।
ସେ ମନ୍ତୁସମ ।
ବହୁତ ଲହୁ କଲ ପାନ        କେହୁ କହୁ ତା ପରମାଣ
ଗ୍ରାସ କର କାସର(୧) ଅସଂଖ୍ୟ ସେ ଅସର
ବାସନ୍ତ ଅସଇ ବହନ ।୨୦।
ଅରୁଣ ବାରୁଣ        ଐରାବଣ ଗୀର୍ବାଣ
ରାବଣ ନୂଟିଜ ଦେଖି ଭୀତ ।
ଯା ଚରଣ ପାଷାଣ        କରି ଶାପ ହରଣ
କଲ୍ପ ସେ ପୁଚ୍ଛିଲେ ଭ୍ରାତ ।
ହେ ବିଭୀଷଣ ।
କ ଜୀବ ଉତ୍ପାତ ଲଙ୍କାର        ପ୍ରାକାରୁ ବଳନ୍ତୁ ଅକାର
ଶବ୍ଦେ ହୁଏ ପ୍ରତୀତ        ମନଃଶୀଳ ଭୂତତ
ଗମନ ଦମନ ପ୍ରକାର ।୨୧।
କହେ ରାବଣାନୁଜ        ନୁହଇ ଏ ଅହାର୍ଯ୍ୟ
ଦନୁଜ ରାଜ୍ୟରେ ଏ ବର୍ଯ୍ୟ ।
ପୂର୍ବରୁ ଥିଲ କହୁ        ଅମ୍ଭ ମଧ୍ୟମ ଭାଇ
ଉଠିଲେ ଅଜଙ୍କ ଏ ଅଙ୍କ ।
ହେ ରଘୁରାଜ ।
ଆସିବ ବାନରସମାଜ        ସମରେ ପ୍ରାପ୍ତ ହେବେ ଲାଜ
ଅଟେ ବୀରବର ସେ        ପୂର୍ବ ନାହିଁ ବରଷେ
ଉଠିଛୁ ମରିବା ତା ଧାର୍ଯ୍ୟ ।୨୨।
ଦେଶ-ଧ୍ୱଂସ ସନ୍ଦେଶ        ଶୁଣି ବିଶେଷ ତ୍ରାସ
ଲଭି ଦଶବଦନ ପାଶ ।
ପ୍ରବେଶନ୍ତେ ଲଙ୍କେଶ        ଶୋକେ କଲ ପ୍ରକାଶ
ବଂଶ ସଦୃଶ ମୋର ବଶ ।
ହେ ବୀରଈଶ ।

(୧) କାସର—ମହିଷ ।

ବସନ୍ତ ଶ୍ରମ ଯୋଗେ ନାଶ     ଶ୍ୱସନ୍ତୁ ଶ୍ୱସମ ମୋ ପ୍ରାଣ
ପୁଷ୍ପଦଣ୍ଡକ ବେଶ     ଭସ୍ମ କର ଯେ କ୍ଳେଶ
ତ୍ରାସ ଦେଉଛନ୍ତି ତା ଅଶେଷ ।୨୩।
କଳସ-କର୍ଣ୍ଣ କର୍ଣ୍ଣ-     ଧାର ସ୍ୱରୂପ ତୂର୍ଣ୍ଣ
ଶୋକାର୍ଣ୍ଣବରୁ କର ପାର ।
ଶୀର୍ଣ୍ଣ ମୋ କଳେବର     ପୂର୍ଣ୍ଣ ହୋଇ ବାନର
ସ୍ୱର୍ଣ୍ଣପୁରକୁ ଘେରଣାର ।
ହେ ବୀରବର ।
ବର୍ଣ୍ଣନାତୀତ ଦୁଃଖ ମୋର     ରଣକୁ ଜବ ଗଣ୍ଡ କର
ଊର୍ଣ୍ଣନାଭ ସୂତ୍ରରେ     ବନ୍ଧ ମାତଙ୍ଗ କରେ
କପିଙ୍କି ଭଷି ଜୀର୍ଣ୍ଣ କର ।୨୪।
କହେ ଘଟଶ୍ରବଣ     କ୍ଷପର ଦୁଇଜଣ
ବଣଜନ୍ତୁଙ୍କ ଅହରଣ ।
କଲେ ପୁଣି ଅପଣ     ଶତ୍ରୁ ତା ଅଚରଣ
କଲେ ସେ ସଙ୍ଗେ କି କାରଣ ।
ସେ ଲଙ୍କାରଣ ।
ହସେ ଶୁଣି ମୋହର ପ୍ରାଣ-     ପ୍ରଥମ ସ୍ୱୀଇ ବିବରଣ
ସୂର୍ପଣଖା ଶ୍ରବଣ     ନାସା ଶ୍ରମ ଲକ୍ଷ୍ମଣ
ଛେଦ କଲେ ଦ୍ୱନ୍ଦ୍ୱ ବରଣ ।୨୫।
ମାରୀଚକୁ ହାଟକ-     ହରଣ କର ତାଙ୍କ
ନାରୀକି ଅଣିଲି ମୁଁ ହର ।
ମାରି ଫେର ହରଣୀ-     ନେଇବାର ଗୁଣ ଗୁଣି
ମିଳିଲେ ଋଷ୍ୟମୂକ ଗିରି ।
ହେ ସୁଗ୍ରୀବର ।
ମିତ୍ର ହୋଇ ସେ ରଘୁବୀର । ଭ୍ରାତାକୁ ମାଇଲେ ତାହାର ।
ବହୁତ ହର ଧର     ଅବ୍ଧିରେ ଗିରି ପାରି
ତର ରହିଲେ ସୁବେଳର ।୨୬।
ଅଦ୍ୟ ପ୍ରାନ୍ତ ସକଳ     ବିପକ୍ଷ ଦୈତ୍ୟକୁଳ-
ପଣ୍ଡ କଷ୍ଟ ହେଲେ ବିକଳ ।

ଶ୍ମଶ୍ରୁରେ ଅଶ୍ରୁଜଳ ପଡ଼ି ବରଷାକାଳ
ଗୃହ ତଳ ଉପମା ମେଳ ।
ସେ ତା ବ୍ୟାକୁଳ
ଦର୍ଶନେ ଦୈତ୍ୟ-ଦନ୍ତାବଳ । ବୋଇଲେ ଭୁଞ୍ଜି କର୍ମଫଳ ।
ଯେହ୍ନେ ବାଳର କାଳ ପୂର୍ଣ୍ଣଇଛି ତା ବଳ
ଅଳ୍ପ ବୋଲି କ ଭ୍ରମେ ଭୁଲ ।୨୭।

ବୀରଶେଖର ଖର- ପର ଶକ୍ତ ମୁଖର
ଦଶମୁଖଙ୍କୁ କହି ଖେଦେ ।
ବାହୁର ବିବାଦରେ ବିନା ଦରେ ନାଦରେ
ଶିଶୁ ନ ବହିଲେ ଉଦରେ ।
ସେ ଶବଦରେ ।
ବନ୍ଧୁବୃନ୍ଦ ବିଦରେ । ସ୍ତ୍ରୀବର୍ଗେ ଲୋଟିଲେ ବିବରେ ।
ସେ ସ୍ଥଳରେ ଗନ୍ଧର୍ବ ଦମ୍ଭକୁ ହର ପରି-
ରମ୍ଭ(୧) କଲେ ବରଷିବରେ ।୨୮।

ବହିବା ଅଶା ଶଚୀ ହୃଦମ୍ବୁଜ ବମୁଚି
ବକ୍ଷାଙ୍କେ(୨) ପଶିଲେ ଶଙ୍କାରେ ।
ଅନମାନଙ୍କ ଜ୍ଞାନ ଶୂନ୍ୟ ହେବା ବଚନ
ଶେଷ ହେବ ନାହିଁ ଲେଖାରେ ।
ସେ ହୀନବଳ ।
ବାନର ଗୃପତ ବନରେ । ଅଶା ନ ରଖି ଜୀବନରେ ।
ଉଡ଼ି ପଡ଼ିଲେ ବାହିଁ କେ କେତେ ପାରେ କହି
ଜବନ ଘନ ପବନରେ ।୨୯।

ହନୁମାନ ଅଙ୍ଗଦ ପଥରେ ଅବରୋଧ
କଲେ ବହି ବିଶେଷ କୋଧ ।
ଦେଖି ତ ଉଦ୍ଧତତା ଭୂଧର ଦୃଢ଼ ଗୋଟା
ପିଟିଲେ ନେଇ ତା'ର ହୃଦ ।
ସେ ବୀରବନ୍ଦ୍ୟ ।
ମଣେ କି ପତନ କୁମୁଦ । ଖେଦ ବଦଳେ ଜାତ ମୋଦ

(୧) ପରିରମ୍ଭ—ଆଲିଙ୍ଗନ (୨) ବକ୍ଷାଙ୍କେ—ଇନ୍ଦ୍ରଙ୍କ କୋଳରେ

ବିଧା ବେନି ଯୋଦ୍ଧାଙ୍କ   ପ୍ରହାରନ୍ତେ ମସ୍ତକ
ଝଧା ପ୍ରାଣେ ସେ ଗଲେ ନିଦ ।୩୦।
ଢୋଳି ଭଳି ସେ ଗିଳି   ଦେଉଛନ୍ତି ପାଦ ଗୃଳି
ବଳିମୁଖାବଳୀ ସେ ବଳୀ ।
ନାକ କାନରେ ଗଳି   ଅସନ୍ତି କେ ନିକଳି
ପୁଣି ମିଳନ୍ତି ଖେଳି ଖେଳି ।
ସେ ପାଦେ ଦଳି ।
ଜାହାକୁ କରୁଅଛି ଧୂଳି । କାହାକୁ ଫିଙ୍ଗେ ଊର୍ଦ୍ଧ୍ୱେ ଡୋଳି ।
ମହିଳବେଳେ ତାଳି   ଶିମୁଳି ତୂଳା ଭଳି
କେ ଯାଏ କେତେ ଦୂର ଚଳି ।୩୧।
କଟକଙ୍କ ସଙ୍କଟ   ଦେଖି ତା'ର ନିକଟ
ଭେଟ ହେଲେ ମର୍କଟରାଟ ।
ତାଙ୍କ ଘଟକୁ ଘଟ-   ଶ୍ରବଣ ଶୂଳ ଅଣ୍ଟ
କରି ପିଟନ୍ତେ ଛଟପଟ ।
ହେସ ଚେତାହତ ।
ହେବାର ଦେଖି ଦ୍ୱିତୀସୁତ   ନେବାର ବେଶ୍ୱର ଉଦ୍ୟତ
ସ୍ଥଳରେ ରଖି ଅତ   ତରେ କରନ୍ତେ ଗତ
ବର୍ତ୍ତିଲେ ଯେ ଥିଲେ ମୂର୍ଚ୍ଛିତ ।୩୨।
ଗତେ ଅଳ୍ପ ସମୟ   ପରେ ସୂର୍ଯ୍ୟ ତନୟ
ସଞ୍ଜ୍ଞା ଲଭିଲେ ଅର୍ଦ୍ଧ ପଥେ ।
ବିଗ୍ରହ କଲେ ମନେ   ନାଗ୍ରହ ବୋଲି ଜନେ
ପ୍ରଗ୍ରହ କରିବେ ଜଗତେ ।
ଏ ନିଜ ବାସେ ।
ନେବାକୁ ଭାବନ୍ତି ମାନସେ   ହତ୍ୟା କରିବ ଭ୍ରାତାଦେଶେ
ଦଶ ନଖେ ଦଶନେ   ଖରେ ନାସା-ଶ୍ରବଣେ
ଛିଣ୍ଡାଇ ଉଡ଼ିଲେ ଆକାଶେ ।୩୩।
ସ୍ୱସା(୧) ଦଶାକୁ ପାଇ   ଦଶାନନର ଭାଇ
ରୋଷାନଳେ ଜଳି ଅସହି ।

(୧) ସ୍ୱସା—ଭଗିନୀ (ସୂର୍ପଣଖା)

ଗଙ୍ଗା ଘର୍ଘର ସ୍ୱନ          ମିଳିତ ହେବା ସ୍ଥାନ
ସମାନ ଅନନ ଦିଶଇ ।
ସେ ଅବା ବେଢ଼ ।
ଉଦ୍ଧବେ ତ୍ରିପଥଗା ହୋଇ । ସୁଗ୍ରୀବ-ଅଭ୍ରମୁର-ସାଇଁ ।
ଦନ୍ତ ଭେଦନେ ଦ୍ରୁମ-          ବନ୍ତରୁ ଅସେ ସ୍ୱମ-
ଢମା-ର୍ଣ୍ଣବେ ଯିବ ମିଳାଇ ।୩୪।
ବାଢେ କାର୍ପାସ ସମ          ଷପାଚର ବୃଷମ
ପ୍ରାସ ଲଭି ଅସେ ବାହାର ।
ଟେଖପାକ ଗଲେ ମପା          ହେବ୍ର ସେ ସଫା ଜପା
ନପାରେ ପାଅ ମିବ ହାର ।
ସେ ସୁରଦ୍ୱିଷ ।
ହିଂସା ଦ୍ୱେଷର ହୋଇ ବଶ          ଗ୍ରାସ କରଇ କୀଶବଂଶ
ଗଳ ନଳୀରୁ ବଳି          ନ ଯାନ୍ତି ଗର୍ଭେ ଚଳି
ତ୍ରିପଥେ ଫେରନ୍ତି ବଭସ ।୩୫।
ପ୍ରଫୁଲ୍ଲ ରକ୍ତ ଶତ-          ପତ୍ର କାସାର ମତ
ଦିଶଇ ସେ କ୍ଷେତ୍ର ସର୍ବତ୍ର ।
ନିଜ ଦଣ୍ଡକ ୨ ଦଣ୍ଡ          ଦେଖି କାଣ୍ଡ କୋଦଣ୍ଡ
ଧରି ବାହାରି ରଘୁପୁତ୍ର ।
ସେ ଚଣ୍ଡକର-
କୁମର ବଭୀଷଣ ରୁଣ୍ଡ । ଧଣ୍ଡ ସଦୃଶ ଲଣ୍ଡଭଣ୍ଡ ।
ବିନ୍ଧିଲେ ଯେତେ କାଣ୍ଡ          ପଣ୍ଡ ହେଲା ଦୁର୍ଦ୍ଦଣ୍ଡ
ତ୍ରୁଣ୍ଡ ମୁଣ୍ଡରେ କଲା ଗୁଣ୍ଡ ।୩୬।
ଅବିଲମ୍ବେ ରାଘବ          ପେଷି ଐନ୍ଦ୍ର କଳମ୍ବ
ଛେଦିଲେ ତା କର ଚରଣ ।
ସ୍ଥୂଳ ଦ୍ରୁମ ପତନେ          ଗୁଳ୍ମ ସମ ସେ ସ୍ଥାନେ
ବାନରେ ଲଭିଲେ ମରଣ ।
ସେ ପୂର୍ବଦେବଙ୍କ ।
ଧ୍ରୁବ୪ ଅବସ୍ଥା ପ୍ରାପ୍ତ ଜବ । ପ୍ରବଳ ରକ୍ତ ଅସମ୍ଭବ ।
ବିଭୁ ତ୍ରିଭୁବନର          ଶ୍ରେଷ ଜପରୁ ଧର
ବହୁଛ ଅବଶେଷେ ହେବ ।୩୭।

---

(୧) ଅଭ୍ରମୁର ସାଇଁ—ଐରାବତ          (୨) ଦଣ୍ଡ—ସୈନ୍ୟ
(୩) ପୂର୍ବଦେବ—ରାକ୍ଷସ          (୪) ଧ୍ରୁବ—ସ୍ଥାଣୁ (ଖୁଣ୍ଟା)

ଘଡ଼କ୍କ ଘଡ଼ ଘଡ଼- ଘଡ଼ ପର୍ଯ୍ୟେ ରଡ଼
ଘୁଡ଼ିଲ ଭୂତଳରେ ପଡ଼ି ।
ଗାଡ଼ି ସମାନ ଗଡ଼ ଗଡ଼ ଯାଉଛନ୍ତି ମାଡ଼ି
କପି ଭଲ୍ଲୁକ ଧାଡ଼ ଧାଡ଼ି ।
ସେ ଯେତେକ ଗୋଡ଼ି ।
ଧୂଳି ପର୍ଯ୍ୟେ ଯାଏ ଉଡ଼ି । ସେନାଏ ଲୁଚନ୍ତି ଦଉଡ଼ି ।
ପିନ୍ଧଏ ବଢ଼ି ପୋଡ଼ି ଦେଲାପର ରଗଡ଼ି
ବାନର ଗିଳେ କୋଡ଼ି କୋଡ଼ି ।୩୮।
ଭୁଦାର(୧)ରୂପ ପୂର୍ବା- ବତାରେ ଭୁଧାରଣ
କରିବାରେ ଯେ ପାରଙ୍ଗମ ।
ବହୁ ବଳ ମୂର୍ଦ୍ଧାର ହେବା ଦେଖି ଅଧୀର
ସେ ଉଦାରହୃଦୟ ସ୍ୱମ ।
ସେ ମହାରୋଷେ ।
ପେଷିଲେ ଅର୍ଦ୍ଧ ଚନ୍ଦ୍ରାଶୁଗ । କାଟିଲେ ଦୈତ୍ୟଗ୍ରୀବା ବେଗ ।
ବେଙ୍ଗ ସଦୃଶ ଗଢ କରି ସେ ଉତ୍ତମାଙ୍ଗ
ଗ୍ରାସ କଲା ପ୍ଲବଗବର୍ଗ ।୩୯।
ଲୋକପାଳ କପାଳ- ଠାରୁ ପୁଣି ଦ୍ୱିଫାଳ
କଲେ ପେଷିଣ ସେ ଅଶୁଗ ।
ଶୀଘ୍ର ବାୟୁବ୍ୟ ଖଗ ଯୋଗେ ଖଗରୁ ବେଗ
ଉଡ଼ିଗଲା ଗଗନ ମାର୍ଗ ।
ସେ ତହୁଁ ଅର୍ଦ୍ଧ ।
ପଡ଼ି ପ୍ରାଚୀର ମେଘନାଦ । ହେବାର ରହୁଛି ପ୍ରବାଦ ।
ଅପରାର୍ଦ୍ଧ ଭୂମଧ୍ୟ ଭେଦ କରନ୍ତେ ହ୍ରଦ
ଉତ୍ପତ୍ତି ସ୍ୱନାମ ପ୍ରସିଦ୍ଧ ।୪୦।
କୁମ୍ଭକର୍ଣ୍ଣ ନିର୍ବାଣ ଦେଖି ତୋଷ ଗୀର୍ବାଣ
ଗୃହଠାରୁ ଶୁଣି ରାବଣ ।
କହେ ଘଟଶ୍ରବଣ ତୁ ପର ଶୀର୍ଯ୍ୟବଣ-
ଦଶନ କରିଥିଲୁ ଚୂର୍ଣ୍ଣ ।
ସେ ଯଉ ବାଣ ।

(୧) ଭୂଦାର—ବରାହ

କପଟେ ଦେଖିଲ ତୋ ପ୍ରାଣ । ତୋ ହୃଦୟୁଁ ଦୁହୁଁ ଠାଣ ।
ଶୟନ ନିରନ୍ତର    କରୁ ଥରେ ମାତର
ଜଠୁ ତା ଅଜ ଗଲ ଜାଣ ।୪୧।
କୁଟି ମାଇଲା ମୋର    କୁଟିଲ ଯେତେ ବୀର
ଯୁଟିଲେ କୁଟିଳ ଜଟିଳ ।
ଖଟି କଲେ ସୁବେଳେ    ଖଟିଲି ପାଦତଳେ
ସୋଦର ଫାଟିଲା କପାଳ ।
ମୋ ବ୍ୟସ୍ତ-ନ୍ୟସ୍ତ ।
ପୁସ୍ତକ କେବେ ହେବ ଅସ୍ତ । ବୀର ତ ମଲେଣି ସମସ୍ତ ।
ଏ ବୟାଳିଶ ପଦ    ସ୍କନ୍ଦ ଗୋକୁଳାନନ୍ଦ
ରଚିଲ ଶନ୍ତ ପଦ୍ମହସ୍ତ ।୪୨।

---

## ତୀରଶ ଛାନ୍ଦ

### ରାଗ—କଳଶୀକ

ସବଣି ବିଳାପ ଅମୁବ-କଳାପ ଶ୍ରବଣେ ପ୍ରଳାପ ଅନଳ୍ପ
ବୋଲେ ମହୋଦର ମଲେ ସହୋଦର ଭାବନା ହୃଦର ନ କଳ୍ପ
ବିନା ଅଭ୍ୟାସେ । ବିଷ, ବିଦ୍ୟା, ହୁଏ ବିଷମ
ଶୟନ ସତତ ଏ କଥା ସତତ ସେ ହେବେ ନିଷତ[1] ସଂଗ୍ରାମ ।୧।
ମହାପାର୍ଶ୍ୱ କୁହା ଅଛେ ବଂଶବାହା ସେ କହିଲେ ଯାହା ସମ୍ଭବ
ନିଶ୍ଚେଁ ରଘୁନାହା ହେବାକି ଜୀର୍ଣ୍ଣ-ନାହା କାଳ ରଣ-ମହାଅର୍ଣ୍ଣବ
ଗୁହା-ବିହାର । ଜୀବ ସେ ଅମ୍ଭର ଅହାର
ଦେବେ ହେବେ ଗୁହା କାହା ସାହାଗୃହା[2] ନାହିଁ ସତ୍ୟ ଏହା ମୋହର ।୨।
ଷଡ଼ରଥୀ ବଡ ଝାଣ କର ଗଡ଼ମଧ୍ୟୁଁ ଧଡଫଡ଼ ବାହାର
ଗଗନ-ପଥରେ ଗମନ ରଥରେ ଶମନର ଥରେ ଶରୀର
ପାଦ ଘାତର । ନାଦ ଶୁଣେ ବାଦ୍ୟ ପ୍ରକାର
ପଦାତିକ ଗଦା ଘାତେ ଗଦା ଗଦା ହେଲେ ସେ ପଦାରେ ମୂର୍ଚ୍ଛାର ।୩।

---

(୧) ନିଷତ — ଶକ୍ତିହୀନ (୨) ସାହାଃ ଗୃହା — ସାହାଯ୍ୟ ଅପେକ୍ଷା

ମରୁତ-ସୁତଙ୍କ ରଣେ ସୁଗ୍ରୀବ ବହନ ଅନ୍ତକ ଅଭଥି
ବାଳିର ନନ୍ଦନ ପନସ ଚନ୍ଦନ ଦୈତ୍ୟ ନିମୂଦନ କରନ୍ତି
ମହାପାରଣ୍ଡ । ପାରଣ୍ଡରେ କପିନାୟକ
ଧରଣି ଶାୟକ ଭୟପ୍ରଦାୟକ କେ କହୁ ରଣି ଜଭୟଙ୍କ ।୪।
ତାହା କରେ ଶାଳ କେ ଧରେ ରସାଳ ଦ୍ରୁମ କେ ବିଶାଳ ପଥରେ
ଚୂଟଲ୍ ଡଗ ଡଗ ଦଶୁଛୁ ବେଢ଼ଙ୍ଗ ଧର କେ ଖଡ଼ଗ ହାତରେ
କଲେ ସମର । ସ୍ୱର୍ଗରେ ଦେଖନ୍ତି ଅମର
ହନୁମନ୍ତ ବଧାଘାତରେ ବିବୃଧାନ୍ତକ ମୂର୍ଦ୍ଧା ରେଣୁ ପ୍ରକାର ।୫।
ବୀର ସମୂଦାୟ୧ କର ସମୁଦାୟ ହୁଅନ୍ତେ ବିଦାୟ ମହୀରୁ
ଅତକାୟ ଶର ଧର ଅଗ୍ରସର ବାହାର ରେଷର ଶିବରୁ
ପର ଅହବେ । ଦରକୁ ବରଜ ଅହବେ
କରନ୍ତେ ଦୂର୍ବଳ କପିଙ୍କ କେବଳ ଅସୁରେ କବଳ ସଗର୍ବେ ।୬।
ଅତକାୟ ରଣ ବାଣ ଅବରଣ ରବିର କିରଣ କରନ୍ତେ
ଯୁଦ୍ଧବିଚକ୍ଷଣ ଲକ୍ଷ୍ମଣ ତକ୍ଷଣ ଶର କ୍ଷଣ କ୍ଷଣ ମାରନ୍ତେ
ବେନି ଜଣଙ୍କ । ଅନୀକ୨ ଦେଖନ୍ତି ସୈନିକ
ଦୈତ୍ୟ ଦୁସ୍ତର କରଇ ପ୍ରହାର ଏହ ସମାହାରଗୁଣ୍ଡିକ ।୭।
ତୁ ତ ପିଲା ଅଟୁ ରାମ ପାଦେ ଗଟୁ ନିତାନ୍ତ ଅପଟୁ ରଣରେ
ନିତ ଘୃଟୁ ରହୁ ତା ଅଇଁଠା ଘୃଟୁ ସଦା କାଳ କାଟୁ ବଣରେ
ମୋହ ନିକଟୁ । ମୁକ୍ତି ନ ପାଇବୁ ସଙ୍କଟୁ
ଠୋକା ଅଣ୍ଟ ତଟୁ ବିଶ୍ୱରେ ଏ ପେଟୁ ପଳା ପରମାୟୁ ନ ଛୁଟୁ ।୮।
ତୋ ଭାଇ ରାଘବ ସେ ହେବ ଲାଘବ ମୁଁ ଅଟେ ରାଘବ ସେ ମୀନ
ଗୁହାରେ ରହ ଯା ତାହାକୁ କହ ଯା ଥିବୁ ସେ ମହୀଜା-ଜୀବନ
ତୋହ ବିନାଶ । ଯଶରେ ନ ରସେ ମାନସ
କ୍ଷମା ଅକୀର୍ତ୍ତିକ ଜନଙ୍କ ଶ୍ରୁତିକି ଦେବି ମୁଁ ଏଥିକି ବିରସ ।୯।
ସୁମିତ୍ରା-କୁମର କହନ୍ତି ପାମର ଦେବି ତୋ ଗୁମର ଛଡ଼ାଇ
କେ ପାଣି କେ ପଣା ଅଜି ଯିବ ଜଣା ନ କର ଆପଣା ବଡ଼ାଇ
ଅଜି ଅଭଥି । ହେବୁ ତୁ ବୈବସ୍ୱତବାସ
ହୁଅ ପଛେ ବୃଦ୍ଧ ଧର ତୁ ଅଯୁଧ ହେବ ତୋ ଆୟୁ-ଧନ ଶେଷ ।୧୦।

---

(୧) ସମୂଦାୟ—ଯୁଦ୍ଧ (୨) ଅନୀକ—ଯୁଦ୍ଧ

ଜର ଖର ରଣ ଗରବ ନ ଭଣ ଘର ସଦା ବଣ ଅମ୍ବର
ନରଚର ଘୂର ଜରଠ[1] ପ୍ରକାର ଙ୍ଗରଇ ତ ଗିର-ପଣୀର
ଡର ନ ରଙ୍ଗି । ତୋର କଥା କଲ୍ଲ ପ୍ରକାଶ
ଅରେ ଘର୍ଣ୍ଣି ଚର ଡରକ ନ ଧର ଥରକେ କରବ ବିନାଶ ।୧।
ଦାରଧର ନରକର ପର[2]ଙ୍କର ପରଖି ଫରକ କେତେକ
ବଦଣି ଜଣ୍ଟିଳୁ ଭରସାରେ ମରଣକୁ ତୁ ଭେଟିବୁ ଅନ୍ତକ
ଯା'ର ସରସ । ଶର ଙ୍ଗସାରରେ ସାର ଯେ
ହରଣ କରନ୍ତ ହରଣବ୍ୟହାର କରାଇ ନାସ୍ତି ତା'ର ଯେ ।୨।
ଶରେ ପ୍ରଭଶର ହେବାରେ ବାସର ଅବସ୍ଥା ଶେଷର ପ୍ରାପତ
ଲତର ଦାଇତ ପ୍ରକାର ଏଇ ତ ନ ହେଲ ଶାସ୍ତ୍ରିତ ପ୍ରାଣାନ୍ତ
କର୍ଣ୍ଣେ ମରୁତ । କହୁଟଲି ଏ ଗିର ତୁରନ୍ତ
ବେଦବର ବର ପାଇ ଏ ଜବର ମାର ବ୍ରହ୍ମଶର ମରୁ ତ ।୩।
ପବନ ଜ୍ଞାପନ କରନ୍ତେ ତପନ-ବଂଶୀ ଉଦ୍ଦୀପନ ମନରେ
ଅସୁର ନିର୍ବାଣ କଲେ ସେ ଗୀର୍ବାଣ ସନ୍ତୋଷ ଦ୍ୱଣ କଣରେ
ଦୁତ ଉଦନ୍ତ । ଦେଲ ଶୃରକୁଳ-ଦ୍ୱିଦନ୍ତ
ସୁରବର-ପର ବରତଳେ ବର ପାଇବାକୁ ପୂଜେ ଅପିତ୍ର[3] ।୪।
ରଥ ଶସ୍ତ୍ର ଜାତ ହେବା ପରେ ଜାତବେଦୁଁ ଇନ୍ଦ୍ରଜିତ ସ୍ୱଗରେ[4]
ସେ ଅନ୍ତରୀକ୍ଷରେ ରହି ପରୋକ୍ଷରେ ଏକାନ୍ତ ଲକ୍ଷ୍ୟରେ ସ୍ୱଗରେ
ଛୁଞ୍ଚ କପିଙ୍କ । ବନ୍ଧ ବିଦାରି ବିଶିଖରେ
ପୁନଶ୍ଚ ଶେଷରେ ପେଷି ବ୍ରହ୍ମଶରେ ମୋହ କଲା ବୀରଶେଖରେ ।୫।
ଦଶମୁଖ-ଜ୍ୟେଷ୍ଠ ସୁତ ବୀରଶ୍ରେଷ୍ଠ ନବେ ହେଲା ଜ୍ୟେଷ୍ଠ ସମାନ
ପ୍ରଖରତର କଳମ୍ବ-ଦାବ[5] ଯୋଗେ ନାଶିଲା ବାନର-କାନନ
ହତ ଜାଳମ୍ବ । କେଶରୀ ଗନ୍ଧମାଦନ ।
ଗବୟ ଶାର୍ଦ୍ଦୂଳ, ଜାମ୍ବବାନ ନୀଳ ନଳାଦି ପନସ ଚନ୍ଦନ ।୬।
ବିଜୟ ରତନ ଲଭି ନିକେତନ ବିଜୟକେତନ ଉଡ଼ାଇ
ଦେଖି ବିଭୀଷଣ ଘଟଣା ଭୀଷଣ କହିଲେ ସୁଷେଣଙ୍କୁ ଯାଇଁ
ବୈଦ୍ୟ ବଦତ । ବଞ୍ଚିଅଛନ୍ତି କି ମାରୁତ ।
ଦର୍ଶାଇ ବିନୟ ପବନତନୟ ବନ୍ଦି ପାଦଦ୍ୱୟ କହନ୍ତ ।୭।

---

(୧) ଜରଠ—ବୃଦ୍ଧା (୨) ନରଙ୍କର ଘର—ବସ୍ତ୍ର
(୩) ଅପିତ୍ର—ଅଗ୍ନି (୪) ସ୍ୱଗରେ—ସ୍ୱଚ୍ଛନ୍ଦରେ (୫) ଦାବ—ବନାଗ୍ନି

କପି ସମୁଦ୍ରାୟ ବନ୍ଧିବା ଉପାୟ କହ ମହୋଦୟ ଚଞ୍ଚଳ
ଗମି ତାତପ୍ରିୟ ଭ୍ରମି ପୁରନ୍ଦୟ ଅର୍ଣ୍ଣବ ନିଶ୍ଚୟ ସକଳ
ଶୁଣି ସୁଷେଣ । ଉତ୍ତର ପ୍ରଦାନ ଉତ୍ତରେ
ଶ୍ରେଷ୍ଠ ଶୀଳୋଚ୍ଚୟ ନାମ ହିମାଳୟ ସ୍ଫଟିକ ପରାୟ ତହିଁରେ ।୧୮।
ଅଛି ଶୀଳ ଚୟ ପୂର୍ବରୁ ସଞ୍ଚୟ ସେହି ଏ ବିଷୟ ନିମନ୍ତେ
ସନ୍ଧିତା ଉଦୟ ନୋହୁ ସୁହୃଦୟ ଅଣ ଯା ନିଶ୍ଚୟ ସମସ୍ତେ
ବନ୍ଧି ଉଠିବେ । ନିଦ୍ରାରୁ ଯେପରି ମାନବ ।
ପାଦେ ନମି ଗମି କପି ପବନଗାମୀ ଅଣେ ଭ୍ରମି ଭ୍ରମି ସେ ଦ୍ରବ୍ୟ ।୧୯।
ଅଉଷଧ ଗନ୍ଧ ବାଜିବାରୁ ଯୁଦ୍ଧ-ଭୂମି ମଧ୍ୟେ ବଧ ଯେ ଥିଲେ
ନ ହେବା ହନନ ପରି ସଂହନନ ସକଳ ବହନ ଧରିଲେ
ଗମି ସୁବେଳେ । ତମୀ୧ ମଧ୍ୟେ କଲେ ବିଶ୍ରାମ
ଗୋକୁଳାନନ୍ଦର ହର କାଳ-ଦର ହେ ଶ୍ୟାମସୁନ୍ଦର ଶ୍ରୀରାମ ।୨୦।

---

## ୩୭ଶ ଛାନ୍ଦ

### ରାଗ-ରାମକେରୀ

ବାସରେ ଦଶାସ୍ୟ ପାଶରେ ଭାଷଇ ଇନ୍ଦ୍ରଜିତ
ଯେଣି ବ୍ରହ୍ମଶର ନାଶିଛି ପରପନ୍ଥୀ ଅଜ୍ଞ ତ ।୧।
ଫିଙ୍ଗଇ ଚୁମ୍ବିତେ ଗଡ଼ଇ ଯଥା ଗଙ୍ଗଶିଳ
ଛପି ଖରେ କପିପକ୍ଷଙ୍କ କାଟିଲି ମୁଁ ମହଳ ।୨।
ନନ୍ଦନକୁ ଦଶବଦନ ବହୁତର ପ୍ରଶଂସି
ପ୍ରଧାନ ତୁ ଗୁଣନିଧାନ ଅସୁରବଂଶ-ଶଶୀ ।୩।
ମଦନକୁ କୋପେ ମର୍ଦ୍ଦନ କଲେ ଯେପରି ହର
କଦନ୨-ପାଦପ ଛେଦନ କଲୁ ତଥା ମୋହର ।୪।
ପ୍ରଧନେ୩ କଲୁ ତୁ ନିଧନ ଅଭିଘାତକ୪ ଯହୁଁ
ହୃଦୟରେ ଶାନ୍ତି ଉଦୟ ମୋର ହେଲା ଅତହୁଁ ।୫।

---

(୧) ତମୀ—ରାତ୍ରି (୨) କଦନ—ଦୁଃଖ (୩) ପ୍ରଧନେ—ଯୁଦ୍ଧରେ
(୪) ଅଭିଘାତି—ଶତ୍ରୁ

ଏ କାଳେ ମୁକେଳେ ସକଳେ ବସି କଲେ ବିଗ୍ଣର
ଶୟନରେ ଥିବେ ନୟନ ବୁଜି ରଜନୀଚର ।୬।
ଶ୍ରୀରାମ କହିଲେ ଅରାମ ନେଉଥିବେ ନିଶ୍ଚୟ
ପାମରଙ୍କ ସଙ୍ଗେ ସମର କର ବାନରଚୟ ।୭।
ବିଭାବସୁ-ବଂଶୀ ଅଦେଶେ ବିଭାବସୁକୁ ନେଇ
ବିଭାବ ବର ବିଭାବରୀ ମଧ୍ୟେ ଦେଲେ ଲଗାଇ ।୮।
ଜଳନ୍ତା ଜ୍ୱଳନ ଜଳରେ ଦୈତ୍ୟବଳ ନିବାରି
କାତରେ ଶସ୍ତ୍ରାଦି ହାତରେ ତରେ ଧରି ବାହାରି ।୯।
ମାତଲେ ରଣରେ ଜାତଲେ ଯହୁଁ ବାନରମାନେ
ଲଙ୍କେଶ ଦେଖିଣ ଏ କ୍ଳେଶ ବହୁ ଦୁଃଖିତ ମନେ ।୧୦।
ନିକୁମ୍ଭ କହଇ ମୁଁ କୁମ୍ଭସୁତ ବାନର ବାର୍ଦ୍ଧି
ସାଧିବି ବଇରି ବଧିବି ଯିବ ବିପଦ-ବ୍ୟାଧି ।୧୧।
ମକରାକ୍ଷ କହେ ମୋ କରମତ ବୁଝିବ ଅଜି
ମକର ପାଖରେ କଂକର ସିନା ଶଫରୀରାଜି ।୧୨।
କୃପାକ୍ଷ କହଇ ମୋପକ୍ଷ ହେବା ନୁହଇ ଲୋଡ଼ା!
କୃପା ନ କରି ମୁଁ କୃପାଣେ ହାଣିବି ଯେତେ ଯୋଡ଼ା ।୧୩।
ହଜାର ପ୍ରକାର ରାଜାର ଅଗେ ଏପରି କହି
ତଥିର ହେଲେ ହତଥିର ଧରି ଯୁଦ୍ଧକୁ ସେହି ।୧୪।
ସଂହାର ଲଭଇ ନୀହାର ଯଥା ରବିକିରଣେ
ଖ୍ୟାତ ସାତରଥୀ ସେପରି ହେଲେ କପିଙ୍କ ରଣେ ।୧୫।
ଭରଣୀସେନକୁ ଧରଣୀସୁତା-ଗୋର ହକାରି
ହଟିଲ ତୁ ଥାଉଁ ଭାସିଲା ଶୋକେ ଲଙ୍କା ନଗରୀ ।୧୬।
କାତରତା ଦେଲେ ଖାତର ନ କରି କପିକୁଳ
ଘାତପଣାଙ୍କର ଘାତରେ ମତ ଅତ ଅକୁଳ ।୧୭।
ନାତରେ ମରନ୍ତେ ଗୃତର ତାଙ୍କ କହି ନୁହଇ
ଘାତରେ ଉଠନ୍ତି ଯାତରେ ତାଙ୍କ କେଳା ନଗ୍ରଇ ।୧୮।

---

୮ ପଦ । ବିଭାବସୁ (ସୂର୍ଯ୍ୟ) ବିଭାବସୁ (ଅଗ୍ନି) ଭିଭାବ (ଅଶ୍ରଦ୍ଧା)
ବରି (ବରଣ କରି) ବିଭାବରୀ (ରାତ୍ରି)
୧୧ ପଦ । କୁମ୍ଭସୁତ (ଅଗସ୍ତି) ବାର୍ଦ୍ଧି (ସମୁଦ୍ର)

ଅନ୍ତୁର ତାହାର ପୁ ଭୃଗୁ-ଶତ୍ରୁଙ୍କୁ ବେଗେ ମାର
ତାତରେ କହୁଛୁ ଯାହା ତୁ ତା ତରେ ପରହର ।୧୯।
ପତର ଅହାର ମ ତର ଭାତର ନାହିଁ ଦେଖା
ଜାତରେ ବାନର ଷିତରେ ହେଲେ ଖାରରେ ଲେଖା ।୨୦।
ପାତରେ ପବଂତ ବାତର ସୁତ ମଣାଇ ଧୂଳି
ସାତବଥୀ ନିଜ ହାତରେ ବଳୀ ଦେଇଛୁ ଦଳି ।୨୧।

ରାତରେ ଅସି ଅବ୍ରତ ରେ ଦେଉଛନ୍ତି କଷଣ
ଯା ତରେ ଧର ତୁ ହାତରେ ଅସ୍ତ୍ର ଶସ୍ତ୍ର ମାର୍ଗଣ ।୨୨।
ଶତ୍ରୁ ବ୍ୟସ୍ତ୍ର ବାଣୀ ପିତୃବ୍ୟଠାରୁ ଶୁଣି ତରଣୀ
ଯିବାକୁ ଯୁଦ୍ଧକୁ ନେବାକୁ ମାତାଠାରୁ ମେଲାଣି ।୨୩।
ବୋଇଲା ଜନନୀ ହୋଇଲା ରାଜାଙ୍କର ଆଦେଶ

ଜଗତରେ ଶୁଦ୍ଧ ଗତରେ ମୋତେ କର ଅଶିଷ ।୨୪।
ମଣିଲେ କୁମରମଣିର ବାଣୀ ଶୁଣି ଶ୍ରୁତରେ

ଗୃଳ ଶଚୀପତ କୁଳଶ ସତେ ବର୍ଷିଲେ ଶିରେ ।୨୫।
ବୋଇଲେ ନଇଲେ ଯେତେକ ଗଲେ ସମରଭୂଇଁ
ଜାଣୁ ଜାଣୁ ହାଣମୁହଁକୁ ବାବୁ ଯିବୁ କି ତୁହି ? ।୨୬।
ଅପଣା ପାଶରୁ ବାପକୁ ଡାକ ଦେଇ ତା ପରେ

ଛଡ଼ାଇ ତୋତେ ମୋ କୋଳରୁ ପଠାଇବେ ତାପରେ ।୨୭।
ଭବନକୁ ତେଜ ବନକୁ ଗଲ ଯିବା ଅଦ୍ୟାପି
ନିଧନ ସ୍ଥାନକୁ ମୋ ଧନ ନ ଯା ନ ଯା କଦାପି ।୨୮।
ଅଶ୍ରୁ କୁଢ଼ୀ ହୋଇ ଅଶ୍ରୁକୁ ଲୋଚମାନେ ଲଗାଇ
ଚିନ୍ତା-ଚିତାରେ ମୁଁ ଜଳିବି ତୋହ ଗୁଣକୁ ଗାଇ ।୨୯।
କୁମର କହଇ ଅମର ହୋଇ ନାହିଁ କେ ମର୍ତ୍ତ୍ୟେ

ହାଟ ସାରି ଯେସ୍ନେ ବାଟରେ ଗଲ ଯିବେ ସମସ୍ତେ ।୩୦।
ରାଜାଦେଶକୁ ନ ପାଳିଲେ ରଜା ଦେଶ ବାହାର
ସମସ୍ତଙ୍କ ଆଗେ ମସ୍ତକ ଅବା ଛେଦିବ ମୋର ।୩୧।

ନୋହିବ ତା କିଏ କହିବ ମୃତ୍ୟୁ ମୋର ତୁ ଅଜ
କୋହ ତେଜ ମୋହ-ମାୟାରେ ମା ତୁ ନ ପଡ଼ ଅଜ ।୩୨।

ସ୍ରୋତରେ ଯାଆନ୍ତି ଏକତ୍ର ଭାସି ଗୁଣ୍ଡିଏ କାଠି
ସଂହତ ଖସିଲେ ବହନ୍ତି କି ? ଅଜ ଏକାଠି । ୩୩ ।
ଖଣ୍ଡ ଖଣ୍ଡ ହୋଇ ଦଣ୍ଡକେ କିଏ କେଉଣେ ଯାଆନ୍ତି
ସେହିପରି ଏହି ମହୀରେ ଦେହୀମାନେ ହୁଅନ୍ତି । ୩୪ ।
ବାରଣ ନ କର ବାରଣ ବଦନେ ଯେଉଁ ଚରଣ
ମରଣ କଷ୍ଟକୁ ହରଣ କଲ କର ସ୍ମରଣ । ୩୫ ।
ସନକାଦି ମୁନିମାନଙ୍କ ବନ୍ଦ୍ୟ ଯେ ପାଦଦ୍ୱୟ
ଜନକପୁରରୁ ଜନକ ଯାଇ ନେଲେ ଆଶ୍ରୟ । ୩୬ ।
ଦାସର ପୁଅକୁ ନାଶ କି କରିବେ ଦାଶରଥି
ଶଙ୍କାରେ ନ ପଡ଼ ଅଶଙ୍କା ମୋହ ମରଣ ପ୍ରତି । ୩୭ ।
ତରଣୀ ତଟରେ ଧରଣୀ ପାଶେ ପ୍ରବେଶ ଯାଇ
କହିଲ ମହିଳାରତନ ଶୁଣି ମନକୁ ଦେଇ । ୩୮ ।
ଅଙ୍ଗରେ ଯାଉଛୁ ବାଜୀରେ ଅଜ ରାଜୀବମୁହାଁ
ହରଷେ ବାରେ ରହିଥିବୁ ହରସେବାରେ ତୁହି । ୩୯ ।
କରି ବିଦାରଣ କୁଞ୍ଜରେ କରେ ଯେପରି ହରି
କର ବିଦା ରଣକୁଞ୍ଜରେ ହେବେ ସେପରି ହରି । ୪୦ ।
ରତନବେଣୀ ସଯତନେ ବେଣୀ କାନ୍ତେ କଥନ
ବରତମାନ ମୋ କଥାକୁ ବୁଝି କର ତ ମାନ । ୪୧ ।
ସ୍ୱ-ଶୂରତାବଳେ ଶ୍ୱଶୁର ପର-ଯୁବତୀ ହରି
ଅସୁର ନାଶିଲେ କସୁର କଥା ପଢ଼ିଲେ କରି । ୪୨ ।
ବାସବର ଜୀବନରେ ଯେ ଦେଲା ଆତଙ୍କ ଭରି
ବାସ ବରଜି ବନରେ ଯେ ସ୍ଥିତ ତାହାଙ୍କ ହାରି । ୪୩ ।

---

୪୦ । କୁଞ୍ଜରେ (ହସ୍ତୀକୁ) ହରି (ସିଂହ) ବିଦାରଣ କରି ଯେପରି କରେ । ମୋତେ ବିଦା (ବିଦାୟ) କର । ରଣ-କୁଞ୍ଜରେ (ଲତା ମଣ୍ଡପରେ) ହରି (ମାଙ୍କଡ଼ ସେପରି ହେବେ) ।

୪୧ । ରତନବେଣୀ (ଯେ ରତ୍ନଦ୍ୱାରା ବେଣୀ ହୋଇଛି) ବରତମାନ (ବର୍ତ୍ତିମାନ) ବର (ସ୍ୱାମୀ) ମାନ

୪୩ । ବାସବର (ଇନ୍ଦ୍ରର) ଜୀବନରେ (ପ୍ରାଣରେ) ବାସ (ଘର) ବରଜି ଛାଡ଼ି)

ତା'ପରି ଘୀର ପରାଜିତ ହୋଇ ବାରକୁ ବାର
ଝାପରି କରୁଛ ସ୍ୱ-ପରାକ୍ରମ କହି ନିଜର । ୪୪ ।
ଘଟଶ୍ରବଣଙ୍କ ଘଟଣା ଅଟଇ ତ ବିଷମ
ଘଟ ତାଙ୍କ କୁଠ କୁଠାର ସମ ହେଲେ ଶ୍ରୀରାମ । ୪୫ ।
ଅନୁଭବ କଥା ସୁମରି ମନୁ ଭୟ ନ ଯାଏ
ଅନୁମେ ଦାନ ନ କରିବ ଜୀବନ ଥିବାଯାଏ । ୪୬ ।
ସୁ-ରମଣୀଙ୍କ ଶୃଙ୍ଗମଣି ଭଣି ଅମିୟ ବାଣୀ
ଶସ୍ୟ ସମ ଶଂସ୍ୟ ବିନାଦ୍ୟ ମନୁଷ୍ୟ ଅନ୍ୟ ପ୍ରାଣୀ । ୪୭ ।
କାଳ ମାପେ କାଳ-ଗଡ଼ଣୀ ଧରି ଅନବରତ
ମାଣକ ପୂରିଲେ ଜଣକ ଯାଏ ଦେଖ ଜଗତ । ୪୮ ।
ଉପେକ୍ଷା ବ୍ୟତୀତ ଅପେକ୍ଷା ନାହିଁ ଏହି ମହୀରେ
ପରିବାର ତ ଜାଇ ପରି ବାର ପ୍ରିୟ ସହୀରେ । ୪୯ ।
ବନ୍ଧନ ଛୁଡ଼ିଲେ ସ୍ୱଧନ ଦେଖ ଯିବେଟି ଗୃହ
ଶୋଚନା ଦେଖ ସୁଲୋଚନା ନେବ ମୁଣ୍ଡ ନା ଲହ । ୫୦ ।
ଭକତ ବ୍ୟତୀତ ମୁକତ ପ୍ରାପ୍ତି ରାମଙ୍କ ହାତ
ତୋ କତରୁ ନେଲି ବିଦାୟ ଏହି ଶେଷ ସାକ୍ଷାତ । ୫୧ ।
ବାଳୀକ ବୃନ୍ଦାର ମାଳିକ ବାନ୍ଧ ନାମାବଳୀକ—
ପକାଇ ଦୈତ୍ୟଙ୍କୁ ଉଡ଼ାଇ ବାହାବଳ କଳଙ୍କ । ୫୨ ।
ବାଳି ଅଂଶୁମାଳି ପବନନନ୍ଦନ ଅଚେତନ
ଲକ୍ଷ୍ମଣଙ୍କୁ କଲ ତକ୍ଷଣ ବାଣକେ ହତଜ୍ଞାନ । ୫୩ ।
ସମ୍ବାଦକୁ ପାଇ ବାଦକୁ ରାମ କଲେ ବିଜୟ
ରଥରେ ସେ ରଘୁନାଥରେ ସ୍ତବ କଲ ଦୈତେୟ । ୫୪ ।

---

୪୫ । ଘଟଶ୍ରବଣ (କୁମ୍ଭକର୍ଣ୍ଣ) କୁଠ (ଶାଳଗଛ) ଘଟ (ଦେହ)
୪୭ । ବିନାଦ୍ୟ ମନୁଷ୍ୟ ଏବଂ ଅନ୍ୟ ପ୍ରାଣୀ ଶସ୍ୟ ପରି ଶଂସ୍ୟ (ପ୍ରଶଂସ୍ୟ) ଯେପରି ଶସ୍ୟକୁ ମାଣ ବା ଗଡ଼ଣୀରେ ମାପନ୍ତି ମାଣ ଗଡ଼ଣୀ ପୂରିଗଲେ ଅଡ଼ା ଦେଇ ପୁଣି ମାପନ୍ତି । ସେହିପରି କାଳ (ଯମ) କାଳ-(ସମୟ) ରୂପ ଗୌଣୀ ଧରି ପ୍ରାଣୀମାନଙ୍କୁ ମାପୁଛି, ମାଣକ ପୂରିଲେ ନେଇ ଯାଉଛନ୍ତି ।

ଶ୍ରୁତି ସ୍ଥିତି ଯତି ମର୍ତ୍ତ୍ୟଙ୍କ ଉଦ୍ଧାରିବା କାରଣ
ବୈକୁଣ୍ଠ ବରଜି ବୈକୁଣ୍ଠ ନରଦେହ ଧାରଣ । ୫୫ ।
ଜନକ-ଜାମାତା ଜନକ-ସତ୍ୟ କଲ ପାଳନ
ଜନଙ୍କ ହିତରେ କନକପୁର କର ଦଳନ । ୫୬ ।
ଅନନ୍ତ ଲୋଚନ ଚରଣ ସଙ୍ଗେ ଲଗ୍ନ କମଳ
କୋମଳ ଶରୀର ଶ୍ୟାମଳମୂର୍ତ୍ତି ଅତି ବିରଳ । ୫୭ ।
ଜପି କଳ୍ପ କଳ୍ପ ତପୀଏ ନ ପାନ୍ତି ଯା ଦର୍ଶନ
ଯାପିଲେ ଜୀବନ କପିଏ ହେଲ ତାଙ୍କୁ ପ୍ରସନ୍ନ । ୫୮ ।
ସ୍ତବ ଶୁଣି ଭୁଜା-ବାନ୍ଧବ କହିଲେ ରେ କୁମର
ଭକତ ମଧ୍ୟେ ତୁ ଶକତ ଦର ପ୍ରାର୍ଥନା କର । ୫୯ ।
ତରୁଣୀ ଭୂପତି ତରଣି-ବଂଶୀ ମୁହିଁ ପାପୀ ତ
ଛେଦିବ ମୋ ଶିର ନିଧିବ ମୋତେ ହେବ ପ୍ରାପତ । ୬୦ ।
ଅତଙ୍କନାଶନ ପାତକମାନ ମୋର ଦଳିବ
ପରଭବେ ପର ଲୋକରେ ମୋତେ ସୁଖ ମିଳିବ । ୬୧ ।
ତୋ ମୁଣ୍ଡ କାଟିବି ଏ ଦଣ୍ଡ ଦେବାପାଇଁ ମୋ ସତ
କଳିବ କି ଥରେ ବଳିଷ୍ଠ ଗୁଣବନ୍ତ ଭୂପ ତ । ୬୨ ।
ଦଇତ ବିଗ୍ରହେ ଏହି ତ ଦୟାମୟ ଠାକୁର
ବିଗ୍ରହ(୧) ବ୍ୟତୀତ ନିଗ୍ରହ(୨) ଦେବା ଅତି କଠୋର ।୬୩।
ନିବୃତ୍ତି ଉପେକ୍ଷି ପ୍ରବୃତ୍ତି ରଣେ ଭକତବର୍ଯ୍ୟ
ସୂର୍ଯ୍ୟବଂଶୀ ଦେଖି ତା ମୌର୍ଯ୍ୟ ହେଲେ ଅତି ଅଶ୍ଚର୍ଯ୍ୟ ।୬୪।
ରାଘବ କହିଲେ ଲାଘବ ଯୁଦ୍ଧେ ଜାଣି ନୁହଇ
ମେଘନାଦଠାରୁ ଶ୍ଲାଘ୍ୟ ଏ କାହା ସୁତ ଅଟଇ ।୬୫।
ଲଙ୍କେଶ ବାହନ ପ୍ରକାଶ, ବିଭୀଷଣ ଭାଷଣ
ବ୍ରହ୍ମଶର ଭିନ୍ନ ଏହାର ହେବ ନାହିଁ ମରଣ ।୬୬।
ଶୁଣନ୍ତେ ବସାଇ ଗୁଣରେ ବାଣ କଲେ କ୍ଷେପ
ଭ୍ରମ ଭ୍ରମ କହି ଅମର ଧାମ ଗଲା କୌଣପ ।୬୭।
ନନ୍ଦନର ଦେଖି ନିଧନ ବିଭୀଷଣ କ୍ରନ୍ଦନ
କରନ୍ତି ବଚନ ବୋଲନ୍ତି ଶତପତ୍ର-ନୟନ ।୬୮।

---

(୧) ବିଗ୍ରହ—ଯୁଦ୍ଧ, (୨) ନିଗ୍ରହ—ଦଣ୍ଡ (ମାରିବା) ।

ବହୁତ ମଲେଣି ବହୁ ତ ନ ଥିଲା ନେତ୍ରୁ ଲୁହ
ଏହାପାଇଁ କପିଁ ଉଠୁଛି ହୃଦ-କନ୍ଦରୁ କୋହ ।୬୯।
ଜୟନ୍ତ ବିଂଶତ-ଲକ୍ଷଣ ଭ୍ରାତା ହେ ପୀତବାସ
କୁମର ଏ ମୋର ଅମରପୁରେ ଲଭିଲା ବାସ ।୭୦।
କୃତଜ୍ଞ ଦେଖାଇ ଷର୍ବିସ୍ତୁ ବୃତ୍ତରେ ହେ ସୁମୂର୍ତ୍ତି
ମୈତ୍ରୀ ବ୍ୟତୀତ ଏ ଗତ ତ ଲଭିଲା ହେଲା ମୃତ ।୭୧।
ଦ୍ରୋହ ବିନା ମୋହ-ମାୟାରୁ କେବେ ଗତ ମୋହର
ହେବ ହେ ସେବକବତ୍ସଳ ଭାବ ରତ୍ନ ଅସ୍ଥିର ।୭୨।
କୃପା ତେଜ କ୍ଷମା ଉପାୟ ମୋତେ ଦେଲ ବତାଇ
କହିଲ ନାହିଁ ତ ପହିଲେ ରହିଲି ତୃଣ ହୋଇ ।୭୩।
ଭାଷିଲେ ଏ କଥା ଦୋଷିଲେ ତାଙ୍କୁ ସୀତାନାୟକ
ସୁମରେ ଶ୍ରୀରାମ ଗୋକୁଳାନନ୍ଦ ପଟ୍ଟନାୟକ ।୭୪।

---

## ୬୮ଶ ଛାନ୍ଦ

ରାଗ—ଚକ୍ରକେଳି; ଶୃଙ୍ଖଳା

ଶୁଣ ଗୁଣବନ୍ତ ଶୁଦ୍ଧ ହୃଦରେ
ଦରେ ଶୂର ରାବଣ ସମ୍ମୁଖରେ ।୧।
ଖରେ ଏ ବାର୍ତ୍ତା କଲା ପ୍ରସ୍ରବଣ
ରଣକ୍ଷେତ୍ରେ ମଲେ ତରଣୀସେନ ।୨।
ସେ ନର ବେନି ନୁହନ୍ତି ସାମାନ୍ୟ
ମାନ୍ୟ କରୁ କରୁ ନେଲେ ଜୀବନ ।୩।
ବନ କୁହାଇ ରାବଣ କାନ୍ଦଇ
ଦଇବ ଏ ଦଣ୍ଡ ଦେଲା କପାଇଁ ।୪।
ପାଇବ ମୋ ପୁତ୍ର ନାତି ସକଳ
କଳକୌଶଳେ ବିନାଶ କେବଳ ।୫।
ବଳ ଅଳପ ନୁହଇ ଯୋଗୀର
ଗିରି ବହୁତ କହି ଏ ପ୍ରକାର ।୬।

କାରଣ କରିବ ଭସ୍ମ-ଈକ୍ଷଣ
କ୍ଷଣ ମାତ୍ରକେ ତୁଟାଇବ ରଣ ।୭।
ବରଣ କଲ ବରଜି ସେ ବାସ
ବାସ-ବେଷ୍ଟିତ ସ୍ୟନ୍ଦନେ ପ୍ରବେଶ ।୮।

ବେଶରୁ ଜାଣି ଦଶାସ୍ୟ ସୋଦର
ଦର ହାସେ ଭାଷେ ଶ୍ରମ ପାଶର ।୯।
ଶର ବିନା ବିନାଶିବ ଅସୁର
ସୁର-ଜ୍ୟେଷ୍ଠଠାରୁ ପାଇଛି ବର ।୧୦।
ବର୍ତ୍ତମାନ ଅସିଲ ସମରେ
ମରେ ସେ ଯାହାକୁ ଗୃହେଁ ନେତ୍ରରେ ।୧୧।

ତରେ ଜାନକୀଶ କଲେ ଉଦର
ଦର୍ପଣ-ବାଢ଼ କଲେ ଅଗର ।୧୨।
ଗରବରେ ଦୃଷ୍ଟି ପରଙ୍କ ପ୍ରତି
ପ୍ରତିବିମ୍ବେ ଦେଖି ନିଜ ମୂରତି ।୧୩।
ରତିପତି ପରି ହେଲା ପଞ୍ଚଶ
ଉପନା-ଶିଷ୍ୟ ଈଶ୍ୱର ବିରସ ।୧୪।

ବୀର ସକଳ ତକାଇ ଭାଷିତ
ଭାଷିତ ଗଲ ମୁଁ ଶଳ୍ୟା-ସରିତ ।୧୫।
ସବୁ ତ ଗଲେଣି ଲଙ୍କାରୁ ଶୂର
ସୁରପୁରେ ବୀରବାହୁ କୁମର ।୧୬।
ମରଣ ଜାଣିବାକୁ ତପ କରେ
କରେ ମାଳା ଧରି ଖଟୀ ପ୍ରଖରେ ।୧୭।
ଖଟେ ତାହାକୁ ଅଣ ମୋ ନିକଟ
କଟକରୁ ଦୂର କରୁ ସଙ୍କଟ ।୧୮।

କଟକଟ ଦୈତ୍ୟ ତହିଁ ବହନ
ଦହନ କଲେ ତା ତପ-କାନନ ।୧୯।
କାନ ନୟନେ ଶ୍ରବଣ ଦର୍ଶନ
ସନକ-କଳ୍ପ କର କଥାମାନ ।୨୦।

ମାନସରେ ଲଭ ଅତି ଉଷ୍ଟାଦ
ସାଦରେ ବନ୍ଦ ସାର ପିତାପାଦ ।୨୧।
ପାଦ ଚଳ ଯା'ର ବସି ତା'ପର
ପର ନାଶନେ ଲଙ୍କାରୁ ବାହାର ।୨୨।
ହାର ଗ୍ରୀବାରେ ମାଳ ତୁଳସୀର
ଶିରରେ ଭଳକ ବେଡ଼ ସୁନ୍ଦର ।୨୩।
ସୁନ୍ଦର ସୁତ ପରେ ଜଳଧରେ
କନ୍ଧରେ ରହ୍ନ ବନ୍ଧୁ ସ୍ତୁତି କରେ ।୨୪।
କରେ ଖରେ ଭଞ୍ଜିଲ ଅଜଗର
ଗରକାଠ ପର ସ୍ୱାରପ୍ରଙ୍ଗର ।୨୫।
ଗର୍ବ ଗଞ୍ଜିନ ଭଲ ଭାର୍ଗବର
ବରଜିଲ ରାଜ୍ୟ ନର ପ୍ରବୀର ।୨୬।
ବୀରବୃନ୍ଦ ବନ୍ଦନୀୟ ଶ୍ରୀଧର
ଧରଣୀରେ ପୂଜନ୍ତି ଚରାଚର ।୨୭।
ଚରଣ ଧୋଇଲା ଥରେ ଧୀବର
ଧୀ-ବର ହେ ଜଣାଉଛୁ ଘୁମୁର ।୨୮।
ମୁର ଦାରୁଣ ପୂର୍ବେ ଥିଲ ମାର
ମାରୀଚକୁ ବନରେ ନାଶ କର ।୨୯।
କରୀକୁ ଜଳେ ରଖିଲ ଠାକୁର
କୁବର୍ଜୀ ଅଛି ଦରଣେ ଉପୁର ।୩୦।
ପରମାନନ୍ଦ ହେ କୋଦଣ୍ଡଧର
ଧର ପୋତ ବନ୍ଧାଇଲ ସାଗର ।୩୧।
ଗରବ ଗଞ୍ଜିଲ ଅସୁରଙ୍କର
କର ଏ ପାପୀକୁ ଫସାରୁ ପାର ।୩୨।
ପାରବି କି କଷଣ ନ ବାଧିବ
ବାନ୍ଧବ ନାହିଁ ଅନ୍ୟେ ଶାଙ୍ଗଦେବ ।୩୩।
ଦେବ ଭୂପନ୍ତି ମାଗ ଇଚ୍ଛାବର
ବରତମାନ ମୁଁ ବଶ ତୋହର ।୩୪।

ହର ମୋ ଶିର ଖ୍ୱସିଲା ଅସୁର
ହୃଦପୁଣ୍ଡ ମିତ ଦେଲେ ଉତ୍ତର ।୩୫।
ତରଳ ତୋର ସ୍ତବେ ମୋ ଶତ୍ରୁ
ଚନ୍ଦ୍ର ବଧିବା ନୁହଇ ବହୁତ ।୩୬।
ହତ ନ ହେବ ନ କଲେ ସମର
ମରମରେ ପାଞ୍ଚିଲା ନିଶାଚର ।୩୭।
ଚରଣକୁ ବାଣ କଲା ପ୍ରହାର
ହାର ହେଲା ରଣେ ସୀତାପତିର ।୩୮।
ତାର ବୈଷ୍ଣବୀରେ ଦେଲେ ମରଣ
ରଣ କରି ପ୍ରାପ୍ତ ମୁକ୍ତି-ନିର୍ବାଣ ।୩୯।
ବାଣସୁତା ଶ୍ୱଶୁର ବିଶ୍ୱମ୍ଭର
ଭବସାଗର ଗୋକୁଳାନନ୍ଦର ।୪୦।

— — —

## ୩୯ଶ ଛାନ୍ଦ

### ରାଗ—ବିଭାସଗୁର୍ଜ୍ଜରୀ

ଶୁଣ ଗୁଣିବନ୍ତଗଣ          ରଣ ପରେ ରଘୁରାଣ
ଶୟନ କଲେ ହେବାରୁ ରାତ୍ର ହେ
ଯୁଦ୍ଧ ହେବ ସମାପନ          ତା ଶେଷ ଫଳ ଜ୍ଞାପନ
ସ୍ୱପନରେ କଲେ ନିଦ୍ରାବତୀ ହେ ।୧।
ରଘୁବଂଶ-ରାଜ ନିଜେ          ଶ୍ୱେତ ସିଂହାସନେ ବିଜେ
ଶ୍ୱେତ ଅତପତ୍ର ରାଜେ ତହିଁ ହେ
ସୁବର୍ଣ୍ଣ ପାତ୍ରେ ଅଶନ          ଶ୍ୱେତ ସୁମନ ବସନ
ଶ୍ୱେତାଶ୍ୱ ଗଜ ଅଛନ୍ତି ବହି ହେ ।୨।
ସୁହାସିତା ସୁଭୂଷିତା          ଜନକକୁମାରୀ ସୀତା
ଶ୍ୱେତଭୂଷଣେ ଭୂଷିତା ହୋଇ ହେ ।
ରାମକୋଳେ ବିରାଜିତା          ସୌଦାମିନୀ ପରାଜିତା
ଘନକୋଳେ ଉପମା ଅଟଇ ହେ ।୩।
ଉଭେ ଶ୍ୱେତ ପାର୍ଶ୍ୱବନ୍ତ          ଶ୍ୱେତବାସଯୁକ୍ତ ଭୃତ୍ୟ
କୃତକୃତ୍ୟ ହୋଇ ଉପସ୍ଥିତ ହେ

ସକଳ ଅର୍ଜ୍ଜୁନମୟ୍ୟ ଭ୍ରମ୨ ଲଭିଅଛୁ କ୍ଷୟ
ସନ୍ଧଦେବ୩ ଅପ୍ରସର୍ଗ୍ ବଦତ ହେ ।୦।
ଲଙ୍କା-ମହାଣ-ତନୟ ମନ୍ଦ୍ରକ୍ଷପରେ ବିଜୟ
ଲେହିତ ଅମ୍ବର ପରିହିତ ହେ
ଦକ୍ଷିଣ ଅମ୍ବରେ ଗତ ଦେଉ ଜଠି ରଘୁପତ
ବିଗୃହିଲେ ଜୟ ସୂଚିଶ୍ବିତ ହେ ।୫।
ଘୋରବାଦୁ ମୃତ୍ୟୁ-ବାର୍ତ୍ତି ପାଇ ମନ୍ଦୋ ଦର୍ଗ୍-ଭର୍ତ୍ତି
ବାତାହତ ବୃକ୍ଷ ପରି ପଡ଼େ ହେ
ବୋଧ ସହ ବହେ ଲହ ମୋହ ପରେ କହେ ଓହୋ
ମୋହ କୁଳ କ୍ରମେ କ୍ରମେ ବୁଡ଼େ ହେ ।୭।
ବନ୍ଧ ପିଅର ପୟର ଯୋଡ଼ି କର ପୁରନ୍ଦର-
ପର କହେ ଏ.ନର ବାନର
ଘୋରକୁ ଦାହିଁକ ଡର ହୃଦରେ ଅସୁରେଶ୍ବର
ଦର ଅଜଠାରୁ ପରିହର ହେ ।୮।
ଦନୁଜକୁଳ ସ୍ବର୍ଭାନୁ ଦେଲା ତନୁଜକୁ ଅନୁ-
ମତ ଯାଅ ଗତ ତୋହ ବନୁ
ନାହିଁ ଅଜ ଉପରୋଧ ଘୋର ଯୁଦ୍ଧେ କର ବଧ
ହନୁମାନ ଅଦ ଭାନୁସୁନୁ ହେ ।୯।
ନମି ଜନକ-ପୟରେ ଗମିଲା ପ୍ରମିଳା-ପୁରେ
କହେ ତମୀପତମୁଖୀ୪ ଶୁଣ ରେ
ସୂକ୍ଷ୍ମନବସନା ରଙ୍ଗେ ଯୁଝିବା କପିଙ୍କ ସଙ୍ଗେ
ଖୁଞ୍ଜିବ ମୁଁ କଲି ତିଚୁରଣ ରେ ।୧୦।
ଧରି ପତର ଚରଣ କହିଗଲ ନିବାରଣ
କରିଲା କରିବାପାଇଁ ରଣ ହେ
ମୋଠାରୁ କର ଶ୍ରବଣ କାଲି ସ୍ବପ୍ନ ବିବରଣ
ଯୁଦ୍ଧେ ପ୍ରାଣ ହାରିଛ ଅପଣ ହେ ।୧୧।

(୧) ଅର୍ଜ୍ଜୁନମୟ୍ୟ—ଶୁକ୍ଳମୟ୍ୟ (୨) ଭ୍ରମ—ଭୟ
(୩) ସନ୍ଧଦେବ—ଦେବତ ମାନଙ୍କ ସହିତ (୪) ତମୀପତମୁଖୀ—ଚନ୍ଦ୍ର ମୁଖୀ

ବିକଳାଙ୍ଗ କଲା ବର୍ଣ୍ଣ ଲେକେ ବିଚଟାଳ ସ୍ତନ
କର ଛିନ୍ନ ଗଳାରେ ଚର୍ମର ହେମ୍ଭ
କର୍ଣ୍ଣୁ ବାନ୍ଧ ତର୍ଜ୍ଜୁ ଛନ୍ତ୍ର ସଜା ବହୁତ ଦଅନ୍ତ୍ର
ମଜ୍ଜା ସେତେବେଳୁ ଥରେ ମୋର ହେ ।୧୨।

ସ୍ୱପନ ନୁହଇ ସତ ନୁହ ତୁ ନିଷତ ଶତ-
ହ୍ରଦା ଗୋଷ୍ଠୀ କହେ ଇନ୍ଦ୍ରଜିତ ହେ
ବୃଷା ମୋ ଆଗରେ ମୃଷା ବୃଷାସନ ଅଟେ ଶଶା
ମୃଗଦୃଶା ମୁଁ ସଂସାରେ ଖ୍ୟାତ ରେ ।୧୨।

ସଂଟକାଙ୍ଗୀ ପାଶୁ ସଂଟ ଯାଇ ନିକୁମ୍ଭିଲ ବଟ
ବିଟପୀ ନିକଟରେ କପୀଠ—
ଯୋନିକୁ ଜାଳି ସେ ଛେଳି ରୁଧିର ଦଅଇ ଢାଳି
ଦୃଷ୍ଟି କି ବୃମ୍ମ ଭଳି ପ୍ରକଟ ହେ ।୧୩।

ବିଭୀତକ[୧] ଯୁକ୍ତେନ୍ଧନ ରକ୍ତ ବସନେ ବନ୍ଧନ
କରି କଲ୍ଲ ଅଗ୍ନିରେ ନିକ୍ଷେପ ହେ
ଦକ୍ଷିଣାବର୍ତ୍ତିରେ ଶିଖା- ଦାନ ତାକୁ ଦେଇ ଦେଖା
କହିଲେ ରକ୍ଷା ନାହିଁ କୌଣପ ରେ ।୧୪।

ଦାଶରଥିର ମୁଁ ଦାସ ତା ବିନାଶ ମୋହ ପାଶ
ଭାଷ ନା ଅଳ୍ପ ରସନା ଗୃଳି ରେ
ତା ଶେଷ ତୋ ବଂଶ ଲୋପ କରିବ ନିଷ୍ଠୁର କୋପ-
ରୂପ ବୈଶ୍ୱାନର ଦେବ ଜାଳିରେ ।୧୫।

ଶୁଣି ଏ ନିର୍ଦ୍ଧୟ ଗିର ବିଷାଦ ହୃଦୟେ ବୀର
ଫେରି ମାୟା ସୀତା ନିର୍ମିଣିଲ ହେ
ଅସି କଷି ଧରି କରେ ବସି ରଥବର ପରେ
ହସି ରଣସ୍ଥଳେ ପ୍ରବେଶିଲ ।୧୬।

ବିରୋଧୀ ଜମ୍ଭଭେଦୀର କହିଲ ଏ ନାସ୍ତି ସ୍ଥିର
ଯୋଗେ ଯୁଦ୍ଧ-ବ୍ୟାଧି ପାଇ ବୃଦ୍ଧି ହେ
ଶମିଲ ନାହିଁ ଅବଧି ହତସିଦ୍ଧି ବଧି ଯୋଦ୍ଧୀ
ବଧି ପାଇବ ମୁଁ ଅଭିଷଧି ହେ ।୧୭।

(୧) ବିଭୀତକ—ବାହାଡ଼ା ।

ପବେ ଅବିବେକ ପରି ଅବିବେକ ସେଷ ବଳ
ଟେକ ରଖି ଫେରିଲ ଭୂବର ହେ
ମନ୍ଥର-ସୂତର ଧୂର ବିଷାଦବାତେ ଫୁଟର
ଜଡ଼ିତ ହେବାରୁ ଦୁଃଖିତ ହେ ।୧୮।
ସୈନ୍ୟ-ବନ ଅନ୍ଦୋଳନ ସାହସ-ତରଣୀ ଚୂର୍ଣ୍ଣ
ସମମତ-ତୀର ବାଧାପ୍ରାପ୍ତ ହେ
ପଙ୍କେରୁହନେଶୀ ଶବ- ଅଙ୍କେ ରୁହାଇ ସେ ସର୍ବ-
ଅନ୍ତର୍ଯାମୀ କ୍ରନ୍ଦନରେ ରତ ହେ ।୧୯।
ମୂର୍ଚ୍ଛ ଲଭୁଥାନ୍ତି ଯନ୍ତ୍ରୁ- ଧାନ ହାରୁ ଅରେ ଅରୁ-
ଲାଗି ହୋଇଥାନ୍ତା ପରେ ମୃତ୍ୟୁରେ
ଖେଦ-ପାବକେ ବିଦଗ୍ଧ ନୁହନ୍ତା ହୃଦ ବିଦଗ୍ଧ
ମୁଖେ ନ ହୁଅନ୍ତା ନିନ୍ଦା-ହେତୁ ରେ ।୨୦।
ଅଶେଷ କ୍ଲେଶ ମାନସ ନରେଶ ମୁଖେ ପ୍ରକାଶ
ହେବ ହଂସବଂଶ ଅପଯଶ ରେ
ନାସତ୍ୟ ସୁତ ମୁଁ ଜାତ ସତ୍ୟପାଳନ-ସୁକୃତ
ସ୍ୱକୃତ କର୍ମରେ ହେଲା ଧ୍ୱଂସରେ ।୨୧।
ଅଯୋଧ୍ୟା-ନୃପତିକୁଳେ ଅଯୋଧ୍ୟା ସୁତ ଜନ୍ମିଲେ
ବସୁଧାରେ ହେବ ଏହା ଖ୍ୟାତ ରେ
କୈକେୟୀ କୈତବେ ବଶ ଯଶ-ପର୍ବ-ଶର୍ବରୀଶ-
ଗ୍ରସ୍ତ ହେଲା ଦର୍ଶେ ପରଶତ ରେ ।୨୨।
ଚତୁର୍ଦ୍ଦଶ ବର୍ଷ ଶେଷ ଶେଷେ ଅଯୋଧ୍ୟାନରେଶ
ହେବା ଆଶା-ତରୀ ହେଲା ଧ୍ୱଂସ ରେ ।
ଭରତ ଶତ୍ରୁଘ୍ନ ଦୁଇ ନିନ୍ଦା-ମନ୍ଦାକ୍ଷ(୧) ନ ସହି
ନିଷ୍ଠେ ସରଯୂରେ ଦେବେ ଝାସ ରେ ।୨୩।
ପରିବାର ପରିହାର କରି ମୋର ପରଶୁର-
ରୂପେ ରହିଥିଲ ବନ୍ଧୀଷଣରେ
ହାଟକେ କଟକେ ତାକୁ ନରପତି କରିବାକୁ
ସତ୍ୟ ମୋର ହେଲା ଅକାରଣ ରେ ।୨୪।

(୧) ମନ୍ଦାକ୍ଷ—ଲଜ୍ଜା ।

ଏ ସମୟେ ରାମ ଭ୍ରମ-    ତମ ହରଣେ ଉତ୍ତମ
ବିଭୀଷଣ ବାଣୀ-ଦିନମଣି ହେ
ଉଦିତ ହୋଇ ଛୁଦିତ    ରାମ ନେତ୍ରାବ୍ଜ ମୁଦ୍ରିତ
ପ୍ରସ୍ଫୁଟିତ କରାଇଲା ପୁଣି ହେ ।୨୫।

ଇନ୍ଦ୍ର ପଦ୍ମପନ୍ତୀ ଐନ୍ଦ୍ର    ଜାଲିକ ବିଦ୍ୟାରେ ମୋଦ-
ଚନ୍ଦ୍ର କର ଅଛୁ ଆଚ୍ଛାଦନ ହେ
ମାରୁତ କପି କେଶରୀ    ମରୀଚିକା ବାରି ସରି
ବିଗୃହ ବୃଥାରେ ଧାବମାନ ହେ ।୨୬।

ଯାହା ପାଇଁ ଏତେ ଯୁଦ୍ଧ    ବଧପାଇଁ ଦଶକନ୍ଧ
ଦିଅନ୍ତା କି ଉଦ୍ଧତ ହାତରେ ହେ
ଅଶୁଗତ-ସୁତ ଅଶ୍ରୁ    ଅଶୋକକୁ ଦେଖି ଅସୁ
ବାଷ୍ପ ଏହା ଗଲେ ସେ ସନ୍ଧ୍ୟରେ ହେ ।୨୭।

ଠାଠିକସୁନ୍ଦରୀ ବାଣୀ    ସଠିକ ଦେଲା ସେ ଅଣି
ବେଠି କରି ମଘବାର ଗଲା ହେ
କଠିଣ ଭଳ୧ କଠିନ    କାଠିକର ପାଠ କାଠି
ଖଣ୍ଡିବେ ଝୁଟିବେ୨ ଛୁଟି ଗଲା ହେ ।୨୮।

ଶୁଣି ରଘୁନାଥ ପାଶେ    ପୁଣି ବିଭୀଷଣ ଭାଷେ
ମେଘନାଦ ଲଗାଇ କୁହୁକ ହେ
ବଟତଳେ କରେ ହୋମ    ଦେବଦାଳନ ସ୍ୟନ୍ଦନ
ଜାତ ହେବ ହେ ରଘୁନାୟକ ହେ ।୨୯।

ସେ ରଥେ ବସିଲେ କେହୁ    ଜିଣନ୍ତା ତାହାକୁ ନାହିଁ
ଏ ମହୀରେ ସୁରାସୁର ନର ହେ
ଏକାଳେ ବାନରବଳ    କଲେ ତହିଁ ଗଣ୍ଡଗୋଳ
ହୋମ ହେବ ବିଫଳ ତାହାର ହେ ।୩୦।

---

୧ । କଠିଣ ଭଳ (ଖଣ୍ଡ ନ ଥାଇ) କାଠି (ସଖ୍ୟା ବଂଶଜ) କଠିନ (ଲତ)
୨ । ଝୁଟିବେ (ଅଳ୍ପ କ୍ଷଣରେ) ଛୁଟିଗଲା (ଛାଡ଼ିଗଲା)

ପୂର୍ଣ୍ଣି ପାଇ ଅଛି ବର — ଦ୍ୱ୍ୟଧିକ ଦଶ ବତ୍ସର
ମଇଥୁନ ଆସନ ଅଶନ ହେ
ଯେଉଁ ନର ପରିହାର — କରିଥିବ ତା'ର କର
ମରିବ ନିଶ୍ଚୟ ଯାତୁଧାନ ହେ ।୩୧।
ଶୁଣି କହିଲେ ରାଘବ — ଏ କଥା ତ ଅସମ୍ଭବ
ଭବରେ କେ ଏପରି କରିବ ହେ
ଏ କାରଣେ ଅକାରଣ — ହେଲା ଏତେ ଆମ୍ଭ ରଣ
ଇନ୍ଦ୍ରାରି କଦାପି ନ ମରିବ ହେ ।୩୨।
ତହୁଁ କଥିତ ଜାମ୍ବବ — ବ୍ୟଥିତ ନୁହ ରାଘବ
ଏ ନିବିଷୟେ ସୌମିତ୍ରି ବ୍ରତୀ ହେ
ଇନ୍ଦ୍ରଜିତ ଜୀବ-ବର୍ତ୍ତି — ହୃଦ-ପ୍ରଦୀପରୁ ହୃତ
ହେବ ମର୍ତ୍ତେ ରହିବ କି ବର୍ତ୍ତି ହେ ।୩୩।
ପ୍ରଭୂତ ପ୍ରଶଂସା ଭାଷା — ବରଷା କଲେ ସେ ରସା-
କନ୍ୟାଧବ ଲକ୍ଷ୍ମଣଙ୍କ ପରେ ହେ
ଗାଇବ ଗୋକୁଳାନନ୍ଦ — ପଞ୍ଚନାୟକ ଏ ଛାନ୍ଦ
ଚତୁସ୍ତ୍ରିଂଶ ପଦେ ଶେଷ କରେ ହେ ।୩୪।

———

## ୪୦ଶ ଛାନ୍ଦ
### ରାଗ—ଗୈଣ୍ଡ

ବଳ-ପର(୧)ଠାରୁ ବଳ- — ବତ୍ତର ପ୍ରବଳତର
ହୋମ ସ୍ଥଳଠାରେ କପିଦଳ ପ୍ରବେଶ ।
ହରିଙ୍କି ଦେଖି ପ୍ରହସ୍ତ- — ଦର୍ପ ପକାଇଲେ ଘୋର
ବାହାରିଲେ ହରି ପରି ଅରି ବୀରେଶ ।
ଯତ ବ୍ରତୀ ଥିବାରୁ ହୋଇ
ଛତ୍ରଭଙ୍ଗା ଯୋଦ୍ଧା ଶ୍ରଦ୍ଧା ଭାଜନ ନାହିଁ ।୧।

(୧) ବଳ-ପର—ଇନ୍ଦ୍ର, ବଳବତ୍ତର—ବଳବନ୍ତ । ପ୍ରବଳତର—ବିଶେଷ ଅର୍ଥାତ୍ ଇନ୍ଦ୍ର ଜିତ ।

ଦୂର ସକଳେ ସେ ସ୍ଥାନ ପୁଷ୍ପିଷ କଲେ ବର୍ଣ୍ଣନ
ମୃଦ୍‌ଦ୍ୱାସ୍ତ ବାଡଦୋଳ ନିର୍ବାଣ ପ୍ରାପ୍ତ ।
ବିଷ୍ଣୁ ତ୍ୟାଗରେ ସେ ନିଷ୍ଠା କାର୍ଯ୍ୟ ହେଲା ଅପ୍ରତିଷ୍ଠା
ଚେଷ୍ଟା ତ୍ୟାଗ କର ରୁଷ୍ଟ ବାସବଜିତ ।
ବିଷ୍ଣୁର୧ ବରଜ ଅଗୁଗ
ଧାରଣ କର ରଣକୁ ବାହାର ବେଗ ।୨।

ସଉମିତ୍ରି ସମ୍ମୁଖରେ ସସୈନ୍ୟ ପ୍ରବେଶ ଖରେ
ଭାଷିଲେ ଶ୍ଳେଷ ମୁଖରେ ବୀରଶେଖରେ ।
ଅଙ୍କ-ରଙ୍ଗଦ୍ୟୂତରେ୨ ତ ତୋ କୁଟ କପଟ ପଟ
ନିଶ୍ଚୟ ହେବ ନିପଟ ମୋ ବିଶିଖରେ ।
ଭେଟ ପାଇବୁ ଜନ୍ତୁରାଜ
ବିଜିଗୀଷା୩ ତେଜ ପାଜ ସମରେ ମଜ ।୩।

ତୋ ପିତା ଶ୍ରୀଙ୍ଗ ବିଭବ- ଠାରୁ ଲାଘବ ଗୌରବ
ଏହୁ ତ ତୁମ୍ଭ ଗୌରବ ବଂଶେ ପ୍ରଚୁର ।
ମଣିକା ପର ଅକୃଷ୍ଟ ହୋଇଛ ଗୁଡ଼ିଏ ଦୁଷ୍ଟ
ବେଷ୍ଟନ କରଣ ହୃଷ୍ଟପୁଷ୍ଟ ଶରୀର ।
ନାକ ନାଗ ଲୋକେ ସଂକମି ।
ନାଶ କର ନିର୍ଦ୍ଦୋଷକୁ ହୁଅ ବିକମୀ ।୪।

ସ୍ୱଚ୍ଛରୂପେ ରହ ପଛ ନ କର ଗୁହେ ନ ଗଛ
କଚ୍ଛପ ପରି ପ୍ରଚ୍ଛନ୍ନ ନ କର ମୁଖ ।
କଚ୍ଛରେ୪ ଅଚ୍ଛଳ୫ଠାରୁ ତୁଚ୍ଛ ହେବୁ ଅରେ ଭୀରୁ
ରଣ ଉତ୍ସବର ଅଜ ପାଇବୁ ସୁଖ ।
ମିଛ ନ ମଣ ମୋ ବାକ୍ୟକୁ ।
ଉତ୍ସୁର ହେଉଛୁ ଭେଟିବାକୁ କକାକୁ୬ ।୫।

---

(୧) ବିଷ୍ଣୁର—କୃଷ୍ଣମୁଦ୍ରା । (୨) ଦ୍ୟୂତ—ପଶାଖେଳ ।
(୩) ବିଜିଗୀଷା—ଜୟ କରିବାର ଇଚ୍ଛା । (୪) କଚ୍ଛ—ସମାନ
(୫) ଅଚ୍ଛ—ଭଲ୍ଲ (୬) କକା—କୁମ୍ଭକର୍ଣ୍ଣ

ପାଣିକି ଦେଖାଇ ବାଣୀ ଭଣିଲ ସେପେ ସୁବର୍ଣ୍ଣି
ରଣ-ବିପଣିରେ ନାହିଁ ବାଣିଜ୍ୟ କର ।
ବୋଲଏ ଯେ ରଘୂତ୍ତମ ମୋଠାରୁ ସେ ଲଘୂତ୍ତମ
ରହ ଯା କହ ଯା ଅସ୍ତ୍ର ଅଙ୍ଗୁଳ ଧର ।
ଦୁହିଁଙ୍କର ବୀରେନ୍ଦ୍ରପଣ
ନୁହେ ପଣକର ପଣ କର ନ ଜାଣ ।୬।
କର ମେଘନାଦ ସାନ୍ଦ୍ର ଅବରଣେ ରାମଚନ୍ଦ୍ର
କଲ୍ୟବେଳେ ଦଶଦର୍ଶ ଦାରୁଣମୟ ।
ମେଘନାଦ ମୋର ନାମ ରାମଚନ୍ଦ୍ର ପ୍ରଭୁ ବାମ
ହେଲେ କୀଣବର୍ଣ୍ଣଙ୍କର ଦର ସମୟ ।
ଅନ୍ୟଥା ନୁହେ ମୋ ବଚନ ।
ପ୍ଲବଗବର୍ଗ ବଗ ମୁଁ ଅଟଇ ଶ୍ୟେନ ।୭।
ଖର-ଦୂଷଣ-ମାରୀଚ ବାଳି ମୋହଠାରୁ ନୀଚ
ସ୍ୱନାମ ପୁନରୁକ୍ତିରେ ଶ୍ଳେଷେ ପ୍ରକାଶ
ଏମାନଙ୍କ ମାର ଶୀର ହର ମଧ୍ୟେ ବନଗୃହୀ
ଅବଜ୍ଞା ଅଛ କି ନାହିଁ ପଶୁର ଆସ ।
ଅନୁଗ୍ରହ ହେବାରୁ ମୋର
ମନୁ ଜେ ନ ଯିବୁ ତୁ ମନୁଜ ଯାର ।୮।
ବଦାନ୍ତ ସୁମିତ୍ରାସୁତ ବଳ ସୋମ ସମ ଛୁତ
ଛଳିତ ହେଇ କଳା ତ ନାହିଁ ସ୍ୱବଳ
ପ୍ରାଣୁ ଶିବ, ମତ୍ସ୍ୟ ମୀନ ପଞ୍ଚ ପଞ୍ଚଦଶ ଦିନ
ଅନ୍ୟାର୍ଥ ହେବା ହେତୁ ଏ ଅନର୍ଥ ମୂଳ ।

---

୭ । ମେଘ, ସାନ୍ଦ୍ର (ଘୋର) ନାଦ କର । ରାମଚନ୍ଦ୍ର (ରମଣୀୟ ଚନ୍ଦ୍ର) ଅବରଣ କଲାବେଳେ । ଦଶଦଶ ଦର୍ଶ (ଅମାବାସ୍ୟା) ମୟ ମୋ ନାମ ମେଘନାଦ । ମୁଁ ରାମଚନ୍ଦ୍ର (ରଘୁନାଥ) ପ୍ରଭୁ ବାମ ହେଲେ ଭଣିଙ୍କର ଦର (ଭୟ) ସମୟ ।

୮ । ଖର, ଦୂଷଣ, ମାରୀଚ, ବାଳି, ଶ୍ଳେଷରେ ଏମାନେ ଯଥାକ୍ରମେ ଗଧ ସାପ, ମାଇଚ, ସ୍ତ୍ରୀ, ଏମାନଙ୍କର କେତେ ଭେଦେ ?

ଧର ଶର କର ସମର
ହେଉଛ ତ ଧ୍ରୁବ ପର ଝଟମ ପାମର ।୯।
ଏକମାନ ଶାଖା ଛୁହ    ଛେଦିଲେ କଳଙ୍କ ଯାଉ
ସମୂଳବିନାଶ ପରେ ହେବ ବିହୂତ ।
କକାର କୋଳେ ଲତା ସମ    ବଞ୍ଚିବ ତୋହର ମା
ଦଶିବ ସୁଷମା ଭୋଗିବ ସେ ବିଭୂତ ।
ରଘୁ କୁଳପତ୍ର ପ୍ରତିଜ୍ଞା
ବ୍ୟର୍ଥ ହେଲେ ଲୋକେ ପ୍ରକଟିବ ଅବଜ୍ଞା ।୧୦।
ଶୃଙ୍ଗଶାର୍ଙ୍ଗକର୨ ସୁତ    ବାଳିଶ ପର ବହୁତ
ବାଳୀଶ-ସୁଲଭ ଗିର କଲୁ ବ୍ୟକତ ।
ଅଳି ଦଳିବା ବିଷଟେ    କୁଳିଶ କି ଲୋଡ଼ା ହୁଏ
ତାଳି ଶବଦରେ ହେବେ ସେ ଦୂରୀଭୂତ
ବଳି ମାର ମୋଠାରୁ ଅଗ
ବାଳି-ପର ବଳୀ ସାର କରବେ ରଙ୍ଗ ।୧୧।
ତୁହିଁଙ୍କ ରଣ ବିଷମ    ହେଲା ଦ୍ୟୁତ-କ୍ରୀଡ଼ା ସମ
ତହିଁ ଶର କାଠି ଗୋଟି ସୈନ୍ୟ ସମସ୍ତ ।
ସାର ସୈନ୍ୟ ଯୁଗସାର    ଅସାର ଅନ୍ୟ ପ୍ରକାର
ହତ ଚୈତନ୍ୟ ମୂର୍ତ୍ତି ପୁନଚ୍ଛୁରିତ ।
ଅମାବସ୍ୟାର୍ଦ୍ଧ ଯାମା ପର ।
କର ଦେଖା ନ ଗଲୁ ସେ ସୁନାମା-ଅରି୩ ।୧୨।

---

(୧) କକା—ବିଭୀଷଣ (୨) ଶୃଙ୍ଗଶାର୍ଙ୍ଗକର-ସୁତ—ବଂଶକର-ପୁତ୍ର (ଇନ୍ଦ୍ରଜିତ)
(୩) ସୁନାମା-ଅରି—ଇନ୍ଦ୍ରଜିତ ।

୯ । ବକ ସ୍ଥାଣୁ । (ଲଣ୍ଡା ଗଛ) ଚନ୍ଦ୍ର ସ୍ଥାଣୁ (ଶିବ) ବକ ମତ୍ସ୍ୟ ଖାଏ । ଚନ୍ଦ୍ର ମୀନରାଶି ଭୋଗ କରେ । ବାଘର ପକ୍ଷ ଥାଏ । ଚନ୍ଦ୍ରର ପକ୍ଷ ପନ୍ଦର ଦିନ । ତୁ ଏପରି ଅର୍ଥ କରି ଅନର୍ଥ ଘଟାଉଛୁ ।

୧୨ । ଯୁଦ୍ଧ ପଶା ଖେଳ ପରି ହେଲା । ତହିଁରେ ଶର କାଠ ଚଢ, ସୈନ୍ୟ ଗୋଟିପରି । ସୈନ୍ୟଙ୍କ ମଧ୍ୟରେ ଯେ ସାର (ଉତ୍କୃଷ୍ଟ) ସେ ଯୁଗ ସାର କଲେ । ଅସା ସୈନ୍ୟ ଗୋଟିକିଆ ସାର ପରି । ଗୋଟିକିଆ ସାର ମରେ ବଞ୍ଚେ । ଅସାର ସୈନ୍ୟ ଅଚୈତନ୍ୟ ଓ ଚୈତନ୍ୟ ପାଉଛନ୍ତି ।

ସୁମିତ୍ରା ସୁତଙ୍କ ଚେଷ୍ଟା    ପରଖେ କପଟ-ଚେଷ୍ଟା
ହରିଲା ବାତସୁତା ତା ଜାଣି ଲଢ଼ିଲା ।
ଦୈତ୍ୟ ମୁଥାଘାତେ ବ୍ୟଥା    ଲଭନ୍ତେ ଜାଣି ସେ କଥା
ତା ଦାଦ ବିବାଦୀ ହେବାକୁ ଦଉଡ଼ିଲା ।
ବିଗ୍ରହବେ[1] ନିଗ୍ରହ ଦେଇ
ସ୍ୱଗୃହକୁ ମେଘନାଦ ଯାଏ ପଳାଇ ।୧୩।
ମୋହ ହତେ ସଉମିତ୍ରି    ଦ୍ରୋହେ କୋଳାଇଲେ ମନ୍ତ୍ର ।
ଗୃହ ଗମନ ସରଣୀ ଶବରେ ରୋଧ
ଅଧଃ ଊର୍ଦ୍ଧ୍ୱ ମଧ୍ୟ ରୁଦ୍ଧ    ହେବାରୁ ଶଙ୍କାର କ୍ରୁଦ୍ଧ
ହୋଇ କଲା ପ୍ରାଣପଣେ ଭୀଷଣ ଯୁଦ୍ଧ ।
ଲଙ୍କେଶଜ ବଗୃରେ ଶତ
କନ୍ତୁ[2] ବିଘ୍ନ ହେତୁ ମୃତ୍ୟୁ ଅଜ ନିଶ୍ଚିତ ।୧୪।
ବିଦ୍ଧ ବିବଧ ଆୟୁଧ    ଉଭୟ କରନ୍ତି ଯୁଦ୍ଧ
ସ୍ୱର୍ଗେ ଦେଖନ୍ତି ବିବୁଧ ରଣକୌଶଳ ।
ତମ ବହ୍ନ ବୀରୋତ୍ତମ    ମନେ ସୁମର ଶ୍ରୀରାମ
ପେଷିଲେ ବାବଲ ନାମେ ବାଣ ଚଞ୍ଚଳ ।
ଅଗ୍ନିରୁ ସେ ପ୍ରଖରତର ।
ସୁନାସୀର-ପର ଶିର କାଟିଲା ତର ।୧୫।
ସୁମନେ ସୁମନାମାନେ    ବହୁ ସୁମନା ବିଧାନେ
ବରଷିଲେ ସୁମିତ୍ରା-ପୁତ୍ରଙ୍କ ମସ୍ତକ ।
ପ୍ରକୃତ ଗ୍ରନ୍ଥ ଚରିତ    ପ୍ରାକୃତ ପଦ ପୂରିତ
କରିବ ଗୋକୁଳାନନ୍ଦ ପଟ୍ଟନାୟକ ।
ଗୃର୍ଣ୍ଣ[3] ସୂର୍ଯ୍ୟ[4] ଯୁକ୍ତ ପଦରେ ।
ଗୃତୁର୍ଣ୍ଣ-ବର୍ଣ୍ଣ ପ୍ରବନ୍ଧ ପ୍ରକାଶ କରେ ।୧୬।

———

(୧) ବିଗ୍ରହ—ଶରୀର  (୨) କନ୍ତୁ—ଯକ୍ଷ  (୩) ଗୃର୍ଣ୍ଣ—୪ (ଗୃର)
(୪) ସୂର୍ଯ୍ୟ—୧୨ (ବାର) ସୂକ୍ତ ( ଅଥାତ୍ ୪+୧୨=୧୬ )

## ୪୯ଶ ଛାନ୍ଦ

### ରାଗ—ଅଦ୍ୟ ପ୍ରାନ୍ତ ଯମକ

ବୋଇଲା । ବହନ ଦଶବଦନ ଅଗେ ବାର୍ତ୍ତାବହ ଯେ
ସଂହନନ ଅବଯାଏ ସଂବାଦ ଦୁଃସହ ଯେ ।୧।
ବୋଇଲା । କହନ୍ତେ ଉପୁଡ଼ି ପଡ଼େ ଧୈର୍ଯ୍ୟ-ଅନୋକହ୧ ଯେ
ମୁଁ ହତାଶ ହେଉ ଅଛୁ ଅହେ ଦଶମୁହଁ ଯେ ।୨।
ବୋଇଲା । ନାଶ ଜାତ କରୁଅଛୁ ବିଷାଦ-ବତାସ ଯେ
ଶେଷମୁଖେ୨ ଯାହା ଗୁଣ ନୁହେ ଲେଶ ଶେଷ ଯେ ।୩।
ବୋଇଲା । ଥରେ ସଂକ୍ରନ୍ଦନ୩ ଯେହ୍ନ ବସିଲେ ରଥରେ ହେ
ବୀରେନ୍ଦ୍ର ଥିଲେ ଯେ ଏକମାତ୍ର ପୃଥିବୀରେ ହେ ।୪।
ବୋଇଲା । ବାରବାହନାଦ ଜ୍ୟେଷ୍ଠ ସୁତ ମଘବାରି ଯେ
ମାସ୍ରିଚପର-ସୋଦର ତାଙ୍କ ଦେଲା ମାରି ଯେ ।୫।
ବୋଇଲା । ମରଣ ଲଭିଲେ ବଟ ବିଚକ୍ଷ ସମର ଯେ
ମରମରେ ମହାତୋଷ ଲଭିଲେ ଅମର ଯେ ।୬।
ବୋଇଲା । ଦଶବଦନ ଯାହାକୁ ଡରନ୍ତି ତ୍ରିଦଶ ଯେ
ହସ ଦଶିବ ଏଥର ବଢ଼ିବ ସାହସ ଯେ ।୭।
ବୋଇଲା । ଶିରଚ୍ଛେଦନ ଗିରିକୁ ଡରି ସୁନାସୀର ଯେ
ହାର ମାନି କରିଥିଲା ଯାହାକୁ ଜୁହାର ଯେ ।୮।
ବୋଇଲା । ସରି ନ ହେବେ ଶକ୍ରକୁ ସହସ୍ରେ କେଶରୀ ଯେ
ହରିଲେ ତା' ପ୍ରାଣ କେଉଁପରି ରକ୍ଷ ହରିଯେ ।୯।
ବୋଇଲା । ଧରଣୀ ମଧ୍ୟେ ଯେ ଏକ ମାତ୍ର ଧନୁର୍ଦ୍ଧର ଯେ
ପରମାନନ୍ଦ ଶଙ୍କର ବ୍ରହ୍ମାଙ୍କର ପର ଯେ ।୧୦।
ବୋଇଲା । ସାରସ ନ ଥିଲେ ଶୋଭା ନ ଦିଶେ କାସାର ଯେ
ପୁରନ୍ଦରାରି ବିହୀନେ ତେସନ ମୋ ପୁର ଯେ ।୧୧।
ବୋଇଲା । ଧରଣୀ-ସୁତାରି କେଶ ବାମକରେ ଧରି ଯେ
ମାରିବ ନିଷ୍ଠୁର ଅଜ ଜନକକୁମାରୀ ଯେ ।୧୨।

---

(୧) ଅନୋକହ—ବୃକ୍ଷ (୨) ଶେଷ—ଅନନ୍ତ (ବାସୁକି)
(୩) ସଂକ୍ରନ୍ଦନ—ଶକ୍ର ଚାପକ

ବୋଇଲ । ପାଗୀନ୍ଦ୍ରଂମଧ୍ୟାଲୁ କେହୁ ରକ୍ଷା କରି ପାରି ଯେ
ହରିବ ସନ୍ତାନରିନ୍ତା ନାଶ୍ରୁ ସଂହରି ଯେ ।୧୩।
ବୋଇଲ । ଶରେ ସୁପାର୍ଶ୍ୱ ବିଶ୍ରବାସୁତ ସମ୍ମୁଖରେ ଯେ
ଜଟରେ ଦଣ୍ଡଧର ଯାଇ ଦନ୍ତିବଗଡ଼ରେ ଯେ । ୪।
ବୋଇଲ । ପାପ ତ ଅବଳାବଧେ ହୋଇବ ପ୍ରାପତ ଯେ
ପତ ତ ହେବ ଜୀବାନ୍ତେ ନରକେ ପଡ଼ିତ ଯେ ।୧୫।
ବୋଇଲ । ମାର ଯେ ଧର ଅଟଇ ଜନକଜେମାର ଯେ
ବରବରଣୀର ତେବେ ହେବ ତୁମ୍ଭେ ବର ଯେ ।୧୬।
ବୋଇଲ । ଢାତରତା ପରିହରି ମନ୍ଦୋଦରୀକାନ୍ତ ଯେ
ସତ କହୁଲ୍ ତ ଶୁଣି ହେଲ୍ ମୁଁ ଭ୍ରଷତ ଯେ ।୧୭।
ବୋଇଲ । ଢାଲ୍ ବାନରପଲକ୍କୁ ଦେବ ମୁଁ ନିକାଲ୍ ଯେ
ବଳୀ ଭିଭ୍ରପୂଜ୍କ କାଳୀ ଅଗେ ଦେବ ବଳି ଯେ ।୧୮।
ବୋଇଲ । ଶୁଣି ମୃଦମୃତ୍ୟୁ ମନ୍ଦୋଦରୀ ଖ୍ୟପୂର୍ଣୀ ଯେ
ରମଣୀ କେଶିକ ଗଲ୍ ମୋ ଗୁଣର ମଣି ଯେ ।୧୯।
ବୋଇଲ । ଖାଲ୍ କରି ଗଲ୍ ପୁର ମୋ ଗଣ୍ଡିଶଙ୍ଖାଳି ରେ
ଭୁଲି ଥିଲି ବତୃ, ହାରି ହେଲ୍ ମୁଁ ବାଉଳୀରେ ।୨୦।
ବୋଇଲ । ଧନମାଳୀକୁ ମୋହରି କଲ କେ ନିଧନରେ
ବନଠାରୁ ହୀନ ଜ୍ଞାନ କରେ ଏ ଭବନରେ ।୨୧।
ବୋଇଲ । ଜୀବନ[୨] ବିନା କି ମୀନ ଧରଇ ଜୀବନରେ
ଦହନ[୩] ବ୍ୟତୀତ ହୃଦ ହେଉଛୁ ଦହନରେ ।୨୨।
ବୋଇଲ । ଉଡ଼ି ଯାଉଛୁ ମୋ ହଂସା ଅନ୍ଧର ଲଉଡ଼ରେ
ଡଉଦ୍‌ବେଗେ ପିଣ୍ଡୁ ପ୍ରାଣ ନେଉଛୁ କେ ତଡ଼ରେ ୨୩।
ବୋଇଲ । ବିଷଯୁ ସକଳ ବୋଧ ହେଉଅଛୁ ବିଷରେ
ଦଶଇ ଅନ୍ଧାରମୟ ମୋତେ ଦଶ ଦଶରେ ।୨୪।
ବୋଇଲ । ପିତା ମୋ ଉପଦେଶକୁ ମଣି ଥିଲେ ପିତାରେ
ସୀତା-କୋଠରୀରେ ଅଣି ଯୋଗ କଲେ ସୀତା[୪]ରେ ।୨୫।

---

(୧) ପାଗୀନ୍ଦ୍ର—ସିଂହ (୨) ଜୀବନ—ଜଳ
(୩) ଦହନ—ଅଗ୍ନି (୪) ସିତା—ଶର୍କରା

ବୋଇଲ । ଗୀତ କରଥିଲେ ଯାକୁ ଭଲେ ସେ ଇଙ୍ଗିତରେ
ଭିତ୍ତରେ ଶ୍ଳୋକକୁ ନ ଭାବଲେ ସେ କଷ୍ଟତରେ ।୨୬।
ବୋଇଲ । ନିସଖୀ କରିଲେ ମୋତେ ଦୁଇଟି ମନ୍ମଥରେ
ବସନ୍ତ-ଭ୍ରମ ଯୋଗରେ ବଂଶ ପର ବଂଶରେ ।୨୭।
ବୋଇଲ । ପରମଳା ଶୁଣି ତା ହୋଇ କୁରଙ୍ଗୀ ପରି ଯେ
ଗୃହମୁଖ ଲେଖିଥିଲି ମୋ ଭାଗ୍ୟେ ବିଚ୍ଛୁର ଯେ ।୨୮।
ବୋଇଲ । ସୁରମଣି ତୁମ୍ଭେ ପରା ଥିଲ ଶତ୍ରୁରମଣୀ ହେ
ଗଣିଥିଲେ ଲଙ୍କାବାସୀ ବଳିଷ୍ଠ-ଅଗ୍ରଣୀ ହେ ।୨୯।
ବୋଇଲ । ଦୂର ହେଲା ମୋ ମଥାରୁ ଅଜହୁଁ ସିନ୍ଦୂର ହେ
କୁରଙ୍ଗୀ ପରାୟେ ଭଲେ ଶ୍ରୀରାମ ଠାକୁର ଯେ ।୩୦।
ବୋଇଲ । ବିଧବା ହୋଇ ଭୋଗିବି ଯନ୍ତ୍ରଣା ବିବିଧ ହେ
ବଧ ବିଲୋମରେ(୧) ଯେଣୁ ହୋଇଛନ୍ତି ବଧ ହେ ।୩୧।
ବୋଇଲ । ପତି ଏକମାତ୍ର ଅବଳାଙ୍କର ସମ୍ପତ୍ତି ହେ
ଗତି ତାଙ୍କ ବିନା କାହିଁ ଅଛି ଏ ଜଗତି ଯେ ।୩୨।
ବୋଇଲ । ଶଙ୍ଖା ଗଲା ମୋ ହାତରୁ ହେଲି ମୁଁ ନିସଖୀ ଯେ
ଲେଖା ନ କରିବେ ପୁଣ୍ୟବତୀରେ ତ ଲେଖା ଯେ ।୩୩।
ବୋଇଲ । ଦଶାନନ ଶ୍ୱଶୁର ମୋ ଅର୍ଜିଲେ ଏ ଦଶା ଯେ
ସଂସାରେ କେବଳ ମାତ୍ର ହେଲା ଅପ୍ରଶଂସା ଯେ ।୩୪।
ବୋଇଲ । ନିଶା ବଶରେ ହଜାଇ ନିଜର ମନୀଷା(୨) ଯେ
ରସାଳସା ଅଣିବାରୁ ବିପଦ-ବରଷା ଯେ ।୩୫।
ବୋଇଲ । ରସା ମଧ୍ୟରେ ଅଜ କେ ନାହିଁ ମୋ ଭରସା ଯେ
ବସାଇଲେ ଶୋକ-ନାବେ ଦୁଃଖି ମୁଁ ବିବଶା ଯେ ।୩୬।
ବୋଇଲ । ନନ୍ଦସୁତ ଗୋବିନ୍ଦ ଚନ୍ଦ୍ର ଗୋକୁଳାନନ୍ଦ ଯେ
ନନ୍ଦକ(୩)ଧାରଣ ଦିଅ ସନ୍ତତ ଆନନ୍ଦ ଯେ ।୩୭।
ବୋଇଲ । ହରବ ଗରବ ଦୁଃଖ କୃପାମୟ ହରି ହେ
ମରିବି ମୁଁ ପ୍ରଭୁ ପଦ୍ମପୟର ସୁମରି ହେ ।୩୮

(୧) ବଧ ବିଲୋମ—ଧବ (ସ୍ୱାମୀ)   (୨) ମନୀଷା—ବୁଦ୍ଧି
(୩) ନନ୍ଦକ—ବିଷ୍ଣୁଙ୍କ ଖଡ୍ଗ

## ୪୨ଶ ଛାନ୍ଦ

### ରାଗ—କଲ୍ୟାଣ ଅହାର

ନନ୍ଦନ-ନିଧନ-କଦନ-ସ୍ପନ୍ଦନ ବର୍ଦ୍ଧନରେ ଦଶବଦନ
ରଦନ ଦଗଣ୍ଡ ସ୍ୟନ୍ଦନରେ ଚଢ଼ି ସଦନରୁ ଅସେ ବହନ
ବାଜାରେ । ବର୍ମି ଯାଉ ଅଛୁ ବଜାର
ସଜ୍ଜା ଦେବ ବୋଲି ମଞ୍ଚାରେ ବସୁରୁ ଥରି ଗଲେ ନେତ୍ର-ହଜାର୧ ।୧

ଅନେ୍ତେପ୍ପି ଚିରି ସଦୃଶ ବଂଶଦୃଶ ଦୃଶ୍ୟମାନ ହଣିଥିଲେ ଯେ
ସୁତ-ହତ-ବାତ ପ୍ରାପ୍ତ ହୋଇ ଜାତ ଜାତବେଦ ହୃଦେ ଜଳେ ଯେ
ମାର୍ଗଣ—ଗଣତପ୍ତ ଭସ୍ମଗଣ ଯେ
ବୃଷ୍ଟି କରିବାରେ ପୃଷ୍ଟି ଲଭିଥିବା କପିସୃଷ୍ଟି ଦେଖି ନାହିଁ ଯେ ।୨।

ନେତ୍ରର ଲୋହିତ୍ୟ ରୋହିତାଶ୍ୱ୨ ମତ ଶ୍ୱାସରୂପ ଖର ପ୍ରଶ୍ୱାସ
ଖରର ପାଇ ସୀତା-ଦେବର ପୂର୍ବଦେବ୩ର ଅଗତେ ପ୍ରବେଶ
ଦେଖଣରେ । ଦନ୍ତପୂର୍ବପତ ପ୍ରତ ଯେ
ଗର୍ଜନ ବିକ୍ଷେପପର ଶର ମାରି ହରିଲେ ମର୍କଟ-ଭୀତ ଯେ ।୩।

ସୌର ଅସୁରାସ୍ତ୍ର କଲା ଯାତାୟାତ ରଣଯୋଗେ ରେଣୁ ପଟର
ଦିବସ ହେଲେ ହେଁ ପ୍ରବେଶ କଲା କି ଝିଯାମା ଅସିତ ପକ୍ଷର
ରାବଣ । ରବ କରେ ଘନ ଘନ ଯେ
ମୟୂର ଗୃହକ ଭେକ ଦେଲେ ଡାକ ବସୁରିଲେ ନବଘନ ଯେ ।୪।

ଶ୍ୱଶୁର ଦନ୍ତ୍ର ଶକଟକ ଅସୁର-ଈଶ୍ୱର ଧରିଲା ରୋଷରେ
ଖଦ୍ୟୋତ୪ ଖଦ୍ୟୋତ-ସଦୃଶ ବଦତ ତା' ତେଜେ ଆକାଶ ଦେଶରେ
ଲକ୍ଷ୍ମଣ । ବକ୍ଷେ ଲକ୍ଷ୍ୟ ରଖି ପିଙ୍ଗିଲା
କୁଳିଶକୁ ବଳି ଶବଦକୁ କରି ଚାଲି ସଭ୍ରିର ଶସ୍ତ୍ର ଗଲା ।୫।

---

(୧) ନେତ୍ର-ହଜାର—ଇନ୍ଦ୍ର (୨) ରୋହିତାଶ୍ୱ—ଅଗ୍ନି
(୩) ପୂର୍ବଦେବ—ରାକ୍ଷସ (୪) ଖ-ଦ୍ୟୋତ—ସୂର୍ଯ୍ୟ, ଜୁଳୁଜୁଳିଆ ପୋକ

ଗଗନ ମାର୍ଗରେ ଗମନ୍ତେ ବେଗରେ ଭ୍ରମ କରୁଥିଲେ ତା' ଅଗରେ
ଫେରି ଯାଅ ଚୋର ପରହର ତୁମ୍ଭେ ନ ପଡ଼ ଲକ୍ଷ୍ମଣ ଅଙ୍ଗରେ
ଜୀବନ-ଠାରୁ ଅଧିକ ମୋ ସୋଦର
ଘେନ ମୋ ବିନୟ ଭୟରୟ କ୍ଷୟ କରି ବାବେ ଶସ୍ତ୍ରପ୍ରବର ।୬।

ଶକ୍ତି ଭ୍ରମେ ଭକ୍ତି କରି ମାନ ଶକ୍ତି ଫେରିବାକୁ ନାହିଁ ମୋହର
ବଧିବ ତାହାକୁ ଆଦେଶ ଯାହାକୁ ହୋଇ ଅଛି ବଂଶ-ବାହାର
ବରଜ—ମୈତ୍ରୀଙ୍କ ସୌମିତ୍ରି-ଶରୀରେ
ପତିତ ହେବାରୁ କର୍ତ୍ତିତ ପାଦପ ପରି ପଡ଼ିଲେ ଧରାରେ ।୭।

ଜଣକୁ ଜଣେ ପଣେ କରି ବାଣକୁ ଶରୀରୁ କଲେ ଉତ୍ପାଟନ
ଶିରରେ ବାନ୍ଧି ତରୁ ଥିଲେ ଯେହ୍ନେ ହାରିଲେ ନ ହେଲେ ଭଞ୍ଜନ
ଶତ୍ରୁଙ୍କୁ । ବାଳକେ ତୋଳନ୍ତି ଯେସନ
କାମରେ କାମଜାତ ଅଭିରାମ ଭ୍ରମ ଉପାଡ଼ିଲେ ତେସନ ।୮।

ଲକ୍ଷ୍ମଣ ରକ୍ଷଣ ଭାର ହନୁଠାରେ ଅର୍ପି ଅରବିନ୍ଦ-ଈକ୍ଷଣ
ବୃହଦ୍ଭାନୁରୂପ ଦନୁଜ ତନୁରେ ବରଷିଲେ ବର ମାର୍ଗଣ
କାତର । ଜାତ ହେଲା ବଂଶନେତ୍ରର
ଶତ୍ରୁର ହାତରୁ ରକ୍ଷା ପାଇବାକୁ ସେ କ୍ଷେତ୍ରୁ ଅନ୍ତର ସତ୍ୱର ।୯।

ଶତପତ୍ର-ନେତ୍ର ସୁମିତ୍ରା-ପୁତ୍ରଙ୍କ ଗାତ୍ରକୁ ହାତରେ ଧରି ଯେ
ଏକମାତ୍ର ତୋର ମନ୍ତ୍ରଣା-ବହନରେ ଦୁଃଖାବ୍ଧିରୁ ମୋତେ ତାରି ଯେ
ବେଳାରେ । ଲଗାଇ ଥିଲ ବେଳେ ବେଳେ
ସଂପ୍ରତି ମୋ ପ୍ରତି ଦର୍ଶାଇ ଅପ୍ରୀତି ଗୃହଗଲୁ ଭାଇ ଅବେଳେ ।୧୦।

ସଙ୍ଗୀ ସହୋଦର ସଚିବ ସହାୟ ସବୁମତେ ଥିଲୁ ମୋହର
ଭାସିଗଲା ସେହ୍ନ ଜରେ ସରିତରେ ତୀର-ସ୍ଥିତ ତରୁ ପ୍ରକାର
ସତୀଙ୍କ । ସମର୍ପି ରାକ୍ଷସ ହ ତରେ
ସାଗରରେ ଝାସ ଦେବା ଶ୍ରେୟସ୍କର ବୋଲି ବିଗ୍ରହୁଛି ଚିତ୍ତରେ ।୧୧।

(୧) ବହନ—ବୋଇତ

ଭିଷକ-ଭୂଷଣ ସୁଷେଣ କାଃଶଙ୍କ ହୃଦୟେ ପୂଷଣବଂଶୀଙ୍କି
ଭୂଷିଲେ ଅସିଲେ ବିଶଲ୍ୟକରଣୀ ଯୋଗ ନ ରହିବ ବାସୀଙ୍କି
ରଜନୀ—ମଧ୍ୟରେ ସଙ୍ଗରେ ସଙ୍ଗରେ
ଭେଷଜରେ କ୍ଲେଶ ଜନ୍ମିବ ଆରୋଗ୍ୟ ହେବ କହୁଛି ମୁଁ ସଙ୍କୋଚେ !

ଗନ୍ଧମାଦନ ପର୍ବତେ ନବଶୃଙ୍ଗ ପୂର୍ବଦିଗୁଁ ଷଷ୍ଠ ଶୃଙ୍ଗରେ
ରହିଅଛି ତହିଁ ମହୀରୁହ ଏକ ବହି ଦେହ ଶ୍ୱେତ ରଙ୍ଗରେ
ସୁମନ । ଫଳ ଅଟଇ ନୀଳବର୍ଣ୍ଣ
ତା ଦଳ ପିଙ୍ଗଳ ଅତି ପରିମଳ ଗଣ୍ଡି ଦିଶେ ଯେହ୍ନେ ସୁବର୍ଣ୍ଣ ।୧୩।

ନମି ରାମପାଦେ ସମୀରକୁମର ଗମିଲା ଆକାଶ ପଥରେ
କିଂଶଙ୍କର ଦଶ ସହସ୍ର ଅପୁର ପେଷିଲା ବ୍ୟାଘାତ ଅର୍ଥରେ
ଲଙ୍କିରେ—ଗୁଡ଼ାଇ ବୁଡ଼ାଇ ସାଗରେ
ବାୟୁତନୟ ଅପୂତେ ଦଇତଙ୍କ ଅୟୁ ପୂର୍ଣ୍ଣ କଲା ବେଗରେ ।୧୪।

ଫିଙ୍ଗିଲା ରାବଣ ଜଗତୀ ଗୃହଲକୁ ଭାଙ୍ଗି ନଗ ପରି ପତିତ
ଜାଣି ତା ମାମୁଁକୁ ଅଶୀଙ୍କ ଘୃମୁକୁ ଘୃମୁ କରି କହେ ଦଇତ
ମାତୁଳ । ମରୁତ-ସୁତକୁ କପଟେ ।
ନାଶିଲେ ଲଙ୍କାଗଡ଼ରୁ ଅର୍ଦ୍ଧ ଦେବି ସତ୍ୟ କଲି ତୁମ୍ଭ ନିକଟେ ।୧୫।

ଗନ୍ଧମାଦନକୁ ଗନ୍ଧବହ-ସୁତ ଯାଉଛି ଔଷଧ ନିମିତ୍ତ
କାଳ ବିଳମ୍ବ ନ କରି କାଳନେମି କାଳମୁଖେ ଗଲା ତ୍ୱରିତ
ମସ୍ତକେ—ଜଟା ଜଟ ବାଣ୍ଡି କଣ୍ଠରେ ।
ଶଠଶ୍ରେଷ୍ଠ ଅମଠରେ ଏକ ମଠ କପଟେ ରଚିଲା ବାଟରେ ।୧୬।

ମନ ଅନୁବର୍ତ୍ତୀ ହେବା ଗତି ଅନୁମାନ କରି ହନୁମାନର
ଆନନକୁ ଟେକି ଆନନ୍ଦ ମନରେ ଡାକିଲା ସ୍ୱସନ୍ନିଧାନର
ବାତଜ । ବ୍ୟଗ୍ରେ ଅଗ୍ରତେ ଉପସ୍ଥିତ ।
ଜଟିଳଙ୍କ ପାଦେ ଲୋଟି ସେ ରଟିଲା କମ୍ପା ଡାକିଲ ତପୋବନ୍ତ ।୧୭।

ଯତି ବଦତି ଏ ସରେ ସ୍ନାନ କରି ମୋ ହାତରୁ ନିଅ ଶ୍ରୀଫଳ
ଭକ୍ଷଣ କଲେ କ୍ଷଣପ୍ରଭା ଗତିରେ ଯିବୁ କାର୍ଯ୍ୟ ହେବ ସଫଳ

ମାରୁତ । ସ୍ନାନାର୍ଥ ଗମିଲ ହ୍ରଦକୁ ।
ଗମ୍ଭୀର ଗର୍ଜନେ କୁମ୍ଭୀରୀ ଧରନ୍ତେ ପାବନର ବେନି ପାଦକୁ ।୧୮।

କୁଳକୁ ଓଟାରି ପବନଦୁଲାଳ ବେନି ଫାଳ କରି ନାଶିଲେ ।
ଗନ୍ଧକାଳୀ ରୂପ ବର୍ଜଣ ଗନ୍ଧର୍ବୀ ଗନ୍ଧବହଜକୁ ଭାଷିଲେ ।
ବିଧାତା—କୋପରେ ଶାପକୁ ପ୍ରାପତ
ହୋଇ ନିଜ ରୂପ ବର୍ଜିଏ ଅପରେ ନକ୍ରୀରୂପେ ହେଲି ଗୁପତ ।୧୯।

ତୁମ୍ଭଙ୍କୁ ନାଶିବା ମନାସି ବସିଛି ଋଷିବେଶେ ସେହୁ ଅସୁର
ଶଙ୍କା କରି ଲଙ୍କାପୁରୁ ପଠାଇଛି ତାହାକୁ ବିଶ୍ରବାକୁମର
ବିନାଶି । କିନାଶ ପୁରକୁ ପଠାଇ ।
ମନାସି ଥିବା କାର୍ଯ୍ୟକୁ ଶୀଘ୍ର କରି ତବ ଭ୍ରାନ୍ତି ଦେଲି ତୁଟାଇ ।୨୦।

ବିଳମ୍ବ ହେବାରୁ ଭାଳେ କାଳନେମି କପି ଗଲା କାଳମୁଖରେ
ପାଇଲି ମୋହର ରାଜ୍ୟ ଅଧେ ନେବି ଦାବି କରି ରାଜା ପାଖରେ
ତାହାର । ଏକଶ ହଜାର ରାଣୀ ଯେ
ପଚିଶ ହଜାର ସଙ୍ଗୁ ହୋଇ ନେବି ଗୋଟି ଗୋଟି କରି ଗଣି ଯେ ।୨୧।

ସୁନ୍ଦରୀ ପୁରନ୍ଦରୀ ସେ ମନ୍ଦୋଦରୀ ଆଦରିବି ସେହି ଅଂଶକୁ
ଅପୂର୍ବ ସୁନ୍ଦର ଅଟେ ପୂର୍ବ ଦାଗ ପୂର୍ବରୁ ନେବି ସେ ଦେଶକୁ
ପାମର । ମନେ ମନେ ଦେଲା ବାଣ୍ଟି ଯେ
ବାଳ-ଭାନୁ ପରି ହନୁ ତନୁ କରି ଛପିଲା ଦନୁଜ-ତଣ୍ଟି ଯେ ।୨୨।

ପର୍ବତେ ପ୍ରବେଶି ସର୍ବ ଗନ୍ଧର୍ବଙ୍କ ଗର୍ବ ଖର୍ବ କରି ସତ୍ୱର
ଅନୁମାନ କରି ସାନୁମାନ ଶୃଙ୍ଗ ଘେନି ହନୁମାନ ବାହାର
ପୂର୍ବରୁ । ରାବଣ ଅଯୁତେ ଯୋଦ୍ଧା ଯେ
ପେଷିଥିଲା ଅସି ବସି ଥିଲେ ପଥେ ହନୁକୁ ଦେବାକୁ ବାଧା ଯେ ।୨୩।

ଦଳି ସମସ୍ତଙ୍କୁ ପଥାନ୍ତରେ ବଳୀ ଚଳି ଗଲା ଅନ୍ତ ସନ୍ଧରେ
ନନ୍ଦିତ ହୋଇଲା ବନ୍ଦ ତ ନ ଗଲା କିଏ ନନ୍ଦୀଗ୍ରାମ ଉପରେ
ବଚୂର । ବାଣ୍ଟୁଳି ମାରନ୍ତେ ଭରତ ।
ହାବେଳି ନଳି ପର୍ବତେ ବଳିମୁଖ ବୁଲି ବୁଲି ତଳେ ପଡ଼ତ ।୨୪।

ଛୁଟିବାରୁ ମୂର୍ଚ୍ଛା ବହି ରାମନାମ ଉଠିଲେ ପବନକୁମର
ଔଷଧର ଗନ୍ଧ ଦେହ ବାଜବାରୁ ଧର ଧର ଧୀରେ ବାହାର
ଭରତ । ପୁଚ୍ଛିଲେ ପର୍ବତ ବହୁ ତ
ପକ୍ଷ ନାହିଁ ଅନ୍ତରୀକ୍ଷରେ ଗମନ ଦେଖିଲି ଦୃଷ୍ଟତା ବହୁତ ।୨୫।

ଜାଣ୍ଣସା ପ୍ରବଳ ଦେଖି ବଳବନ୍ତ ଭାଷିଲା ସକଳ ଚରିତ
ବୁଝିବାର ପର ବାନ୍ଧି ଜଳ ସେହି ଭରତ ସନ୍ତାପ-ସହିତ
ଢଳିଲେ । ନ କହିବୁ ରାମ ନିକଟ ।
ବୋଲିବେ ଭରତ ନୁହଇ ଘାର ତ ମାର ନ ପାରିଲା ମର୍କଟ ।୨୬।

ସ୍ୱରୁଂଠାରୁ ଗୁରୁତର ମୋ ବାହୂଳି ମେରୁ ଫୁଟାଇବ ସହଜେ
ମନ୍ଦର ଯେ ମନ୍ଦ ପୁରନ୍ଦର ଦର କରନ୍ତ ଅମର ସହ ଯେ
ବାନର । ଅପଘନେ ବାଜ ବିଫଳ
ନର୍ବାନରେ ମୋ ନାଁ ରେ ଅପକୀର୍ତ୍ତି ବାଜଣା ବାଜିବ କେବଳ ।୨୭।

ବାତଜ ଭଜଇ ଶୀଘ୍ର ନ କରିବ ଜଗତରେ ଏହା ଭରତ
ଜନବଦନରେ ସଦନ କରିବ ମୋ ନିନ୍ଦନଗିର ନିରତ
ଜନମ—କାଳରେ ନଭୋମଣ୍ଡଳରେ ।
ଫଳ ବୋଲି ବାଳ-ସବିତା ଧଇଲି କବଳ ନିମିତ୍ତ ବଳରେ ।୨୮।

ଶତ କୋଟି ଶତକୋଟି ହଟିଯିବ ନ କାଟିବ ଲେ ଶରୀରେ
ଏତେବେଳେ ବଳ ଦେଖୁଛ ସାଯାତେ ଶିରରେ ଧରିଛୁ ଗିରିରେ
ଲୋକରେ । ଏ କଥା ହୋଇବ ବିଦିତ
ହନୁମନ୍ତ ପରା ପରାକ୍ରମୀ ହେଲା ଯାର ବାହୂଳିରେ ମୂର୍ଚ୍ଛିତ ।୨୯।

ଭରତଙ୍କ ବଳ ଜଳନା ନିମିତ୍ତ ପୁନଶ୍ଚ କହିଲା ଭଣ୍ଡାର
ମୁଣ୍ଡିଆ ମାରୁଛୁ ମୁଁ ଜାଉଁ ମାରନ୍ତ ମୁଣ୍ଡିଆକୁ ଦେଲେ ମୁଣ୍ଡାର
ଭରତ । ମାର୍ଗଣକୁ ଦେଲେ ଆଦେଶ ।
ଶରେ ଶରତରେ ଧର ଶିର ପରେ ବସି ଯାଉ ଦେଖ ଆକାଶ ।୩୦।

(୧) ସ୍ୱରୁ—ବଜ୍ର

ଶ୍ରୀରାମ ଭରତ ଏକା ଭଳି ବଳୀ ଭ୍ରମି ଚଳିଗଲା ମାରୁତ
ବୀର ଧୁରନ୍ଧର ଧରଣୀଜାବର ବହୁତ ପ୍ରଶଂସା କରନ୍ତି
ସୁଷେଣ । ଭୂଷଣ ହେ ରଘୁନାୟକ ।
ମନଃଶୀଳ ଶୀଳା ଏକସ୍ତମ୍ଭ କାଳା ଶୀଘ୍ର ଆସିବା ଆବଶ୍ୟକ ।୩୧।

ମଲ୍ଲଭୂମିରେ ତରୁ କାହୁଁ ମିଳିବ ତରୁଣଢଳକ କହିଲେ ।
ଲଙ୍କା ଉତ୍ତର ଦିଗେ ଏହି ନାମ୍ନି ଅଛି ବିଭୀଷଣ ବୋଇଲେ ।
ପାବନି । ବନିତା ନିକଟ ଗମନ ।
ପଥ ଗୃହି ବସିଥିଲା ସେ ପଥର ଧରି ଗୋସ୍ୱି ଆସି ବହନ ।୩୨।

ସୁବେଳେ ପ୍ରବେଶି ମନକୁ ନିବେଶି ବାଟିଲା ସୁବେଶୀ ପତର ।
ହାତରେ ଘାତରେ ଲଗାନ୍ତେ ସତ୍ୱରେ ଉଠିଲେ ସୁମିତ୍ରାକୁମର
ଶୀକରେ । ଅଞ୍ଜଳି ଦେଲେ ରଘୁମଣି ।
କରିଲ୍ଲି ବିକୃତ ଅପୂର୍ବ ଶରୀର ହେଲା ସେ ସୁନ୍ଦରୀ ରମଣୀ ।୩୩।

ଶଚୀପତିଙ୍କ ଔଷଧ ବାହୁଥିଲି ଲୁଚି କଲି ତାହା ଅଘ୍ରାଣ
ଚନ୍ଦ୍ର ହୋଇ ବୃନ୍ଦଶ୍ରବା ଗାଳି ଦେଲେ ଔଷଧ କଲି ଅକାରଣ ।
ମହିରେ । ଦଇତ୍ତୁଣୀରୂପେ ଜନମ ।
ତେତ୍ରୟା ଯୁଗରେ ମୁକ୍ତ ଲଭିବୁ କର ଲଗାଇଲେ ଶ୍ରୀରାମ ।୩୪।

କହି ମହିଳା ବହି ନିଜ ଦେହକୁ ଚଳିଗଲା ସ୍ୱର୍ଗପୁରକୁ
ବାତଜ ପର୍ବତ ଯଥାସ୍ଥାନେ ରଖି ଆସିଲା ସକାଳ ବେଳକୁ
ବିଶଲ୍ୟ । ଗୋକୁଳାନନ୍ଦ ଏହି ଛନ୍ଦ ।
ଦଶକନ୍ଧ ଦମ୍ଭବନ୍ଧ ଭାଙ୍ଗିଯାଇ ବହିଗଲା ଆଶା-ବନ୍ଧ ।୩୫।

———

## ୪୩ଶ ଛାନ୍ଦ

### ରାଗ—ଧନାଶ୍ରୀ

ଥରେ ଦରେ କରେ ବାନରଯୂଥରେ ବିଶ୍ରବାସୁତ ଭୋଟର୍ଣ୍ଣ
ପକ୍ଷୀରୂପେ ଦେଖି ଅସିଲି ମୁଁ ବିଂଶଅକ୍ଷିର ଅଳ୍କ ବିଗ୍ରହ
ହେ ତାତ ।

ମହୀରାବଣ ନାମେ କୁମର    ରହିଥାଏ ସେ ପାତାଳପୁର ।୧।
କୌଶଳ-କୁଶଳେ ବଳେ ଭୂମଣ୍ଡଳେ ଦଳେ ସୁରାସୁର-ଦଳେ
ହରେ ହରି ହରେ ସେ ହରି-ହଯୁରେ ମାୟା କରି ବାଳାକୁଳେ
ସେ ପାଇ ।

ତେଜାବ ଜୀବନ କଲେ ଅଜ    ତା ବର୍କି ସଜିବ ମାୟା ଅଜ ।୨।
କ୍ଷଣକର ପର କ୍ଷଣକରେ ବିଚକ୍ଷଣ ଶ୍ରୀରାମ ଲକ୍ଷ୍ମଣେ
କପୂରେ ଲଗାଇ ସ୍ୱପୁରକୁ ନେବ ସେ ପରାକ୍ରମୀ ତକ୍ଷଣେ ।
ସେ ବ୍ୟୂହ ।

ରହ ରହ ଶୀଘ୍ର କପିବ୍ୟୂହ    ବିଧେୟ ଉପାୟ ବହନ ଦହ ।୩।
ମାର୍ଗଣରେ ଊର୍ଦ୍ଧ୍ୱ ମାର୍ଗ କର ରୋଧ ନ ରହିବ କ୍ଷୁଦ୍ର ରନ୍ଧ୍ର ।
ପ୍ରହରୀ ପରାୟ ବାହାରେ ମୂହିଁ ନ ହରି ପାରିବ ସେହି
ସେ ବାତ-

ସୁତ ଦ୍ୱାରଦେଶେ ଉପସ୍ଥିତ    ଗଦା ଧରି ସଦା ବଳବନ୍ତ ।୪।
ତନୁ ବଦଳାଇ ଦନୁଜ ଅସିବ ଅନୁମିତ ହୁଏ ମୋର
ମୋହ ଅନୁମତ ବିନୁ ହନୁମାନ ମାନ ନ ଛାଡ଼ିବୁ ଦ୍ୱାର
ସେ ବେଳା ।

ଭାଇ କରେ ଧନୁଶର ଘେନ    ମଧ୍ୟରେ ରହିବେ ହୋଇ ଉନ୍ନ ।୫।
କହିବା ପ୍ରକାରେ ରହିଲେ ସକଳେ ଏକାଳେ ମହୀରାବଣ
ଚଞ୍ଚଳ ଯୁଦ୍ଧେଳ ଅଚଳେ ଖଚରରୂପେ କଲା ବିଚରଣ
ସେ ମଧ୍ୟ-

ଭାଗକୁ ଯିବାକୁ ନାହିଁ ସାଧ    ମାୟା କରିବାକୁ ହେଲା ବାଧ ।୬।

ଜନକ ରାମଙ୍କ ଜନକ ଜନନୀ ଭରତ ମରୁତରୂପେ
ବାରକୁ ବାର ପ୍ରବେଶିବାରେ ହନୁ ଛାଡ଼ ନ ଦେଲ କୌଣପେ
ସେ ଶେଷେ

ପ୍ରବେଶିଲ ବିଭୀଷଣ ବେଶେ      ଗଲ ଉତ୍ତରକୁ ବିନା କ୍ଲେଶେ ।୭।
ବଳାରାଜ ବାଳିପର କପାଳରେ ମନ୍ତ୍ରଧୂଳି ଦେଲ ବୋଲି
ପାଶିଲ କୋଳି ଭଳି ସେ ତଳି ପଡ଼ିବାରୁ ଘେନି ଗଲ ଚଳି
ସେ ହର୍ଷେ ।

ରଖାଇଲ ନିରାଲୋକ ବାସେ      ପୁରଲୋକ ଜଗାଇଲ ପାଶେ ।୮।
ନିକଟରେ ପୁଣି ବିଭୀଷଣ ମିତ୍ର ମର୍କଟ କଲ ପ୍ରକଟ
ସଂକଟ ବିଷୟ ନିଃସଂଶୟ ଥୟ କର ହୃଦୟ ଗଲ ଫିଟ
ସେ ଯହିଁ ।

ରହିଥିଲେ ସହୋଦର ଦୁଇ      ଗୃହୁଁ ଚେତନା ରହିଲ ନାହିଁ ।୯।
ଅଚଳ ହୃଦୟେ ଅବିଳମ୍ବେ ଜଳ ମଧ୍ୟରେ ଗଲ ପାବନି
ଅଶୀବିଷ ପରି ପଶିଯାନ୍ତେ ବେଣୀ ଦୂରେ ଦଶିଲ ଅବନୀ
ସେ ବୀର ।

ବିରସତା ବର୍ଜି ହେଲ ସ୍ଥିର      ଦେଖେ ଏକ ପୁର ସୁରୁଚିର ।୧୦।
ନୃପ ଦ୍ୱାରୀ-ଅରଦ୍ୱାରସ୍ଥିତ ଦ୍ୱାରୀ ନାମ ତା ମକରଧ୍ୱଜ
ଗମନ ଦମନ କରନ୍ତେ ସମର କଲ ସମୀରଣାତ୍ମଜ
ସେ କାଳେ ।

ବାତସୁତ ଦୌବାରିକେ ବୋଲେ ଇଷ୍ଟ ସୁମର ମରଣବେଳେ ।୧୧।
କହିଲ ମକର-ଧ୍ୱଜ ମୋ ପିଅର ଅଟନ୍ତି ମରୁତ ସୁତ
ସେ ବଳିଷ୍ଠ ଶ୍ରେଷ୍ଠ ଏକମାତ୍ର ଇଷ୍ଟ ନ ଜାଣେ ତାଙ୍କ ବ୍ୟତୀତ
ସେ ବାତ-

ସୁତ କହେ ମୁହିଁ ହନୁମନ୍ତ      ହେଲୁ କିପରି ମୋହର ପୁତ୍ର ।୧୨।
ଭସ୍ମପୁର[1] ଦଗ୍‌ଧାନନ୍ତର ବାର୍ଦ୍ଧି ପରେ କଲବେଳେ ଗତ
ଶ୍ରମ ହେତୁ ଘର୍ମବିନ୍ଦୁ ଏ ପତିତ ମତ୍ସ୍ୟଗର୍ଭେ ଜାତପୁତ୍ର
ସେ ଏହୁ ।

କଥା କହୁଥିଲେ ମୋତେ ଏହି ଦିନେ ପିତାକୁ ଭେଟିବୁ ତୁହି ।୧୩।

---

(୧) ଭସ୍ମପୁର—ସ୍ୱର୍ଣ୍ଣପୁରୀ (ଲଙ୍କା)

ଶଙ୍କାରହିତ ହେଲେ ତାତ ସୁତ ବେନି ପୁଚ୍ଛନ୍ତେ ତାଙ୍କୁ ପାବନି
କହିଲ ମହୀରାବଣପୁର ଏହି ଅଛନ୍ତି ସେ ନର ବେନି

ସେ କାଳୀ—

ଅଗେ ବଳଦେବ ବୋଲି କାଳି  ଗୁପ୍ତେ ରଖିଥିବ କାହିଁ ବଳି ।୧୪।
ବନ୍ଦୀରେ ଯେଉଁ ମନ୍ଦରେ ଇନ୍ଦୀବର ସୁନ୍ଦରେ ରଖିଛନ୍ତି ଦୈତ୍ୟ
ଅନନ୍ଦତସ୍ବୀର ଆନନ୍ଦିତ ହେଲ ଏଥି ହୋଇ ଉପସ୍ଥିତ

ତା ହାତେ ।

ଧୂଳି କପାଳକୁ ପୋଛୁବା ମାତ୍ରେ  ଚେତା ପାଇ ହେଲେ ଦୁଇଭ୍ରାତେ ।୧୫
ବଳି ମୁଖାବଳି ବଳୀ କହେ ଭଲି ଅଛନ୍ତି କାଳୀଙ୍କି ବଳି
ଦେବାକୁ ଶିବାଙ୍କୁ ନେବାକୁ ଆସିବ ସେ ମହୀରାବଣ କାଳି

ହେ ଦେବ ।

ନମସ୍କାର ହେବାକୁ କହିବ    ନାହିଁ କହିବ ବତାଇ ଦେବ ।୧୬।
ପୂଜିବାକୁ ଅର୍ଘ ସାଜି ଦ୍ରବ୍ୟରାଜି ଆସିଲା ପାଜି ହରଷେ
ରାମ ସୌମିତ୍ରିଙ୍କୁ ଦେବୀଙ୍କ ସ୍ତମ୍ଭରେ ସ୍ତମ୍ଭ କରିବାକୁ ଭାଷେ ।

ସେ ରାମ ।

ନ ଆସଇ କହନ୍ତି ପ୍ରଣାମ       ଦେଖି ଶିଖି କରନ୍ତୁ ସେ କାମ ।୧୭।
ସାଷ୍ଟାଙ୍ଗ ପ୍ରଣତ କଲା ଦୈତ୍ୟପତି ଇଷ୍ଟଦେବୀ ସମ୍ମୁଖରେ
ପଛରେ ପ୍ରଚ୍ଛନ୍ନେ ଥିଲା ବାତବସ୍ତ୍ର ଛେଦିଲା ଅସିରେ ଖରେ ।

ତା ନାରୀ ।

ବାହାରିଲା ଧରି ତରବାରି        ହନୁମନ୍ତ ଦେଲା ତାକୁ ମାରି ।୧୮।
ବଳବନ୍ତେ ଦୈତ୍ୟକୁଳଙ୍କୁ ନିର୍ମୂଳ କରି କାଳିପୁରରେ ପେଷି
ମକରଧ୍ୱଜକୁ ରାଜସିଂହାସନ ଦାନ କଲେ ସୂର୍ଯ୍ୟବଂଶୀ ।

ସେ ଦୁଷ୍ଟ

ସଂହାରନ୍ତେ ପ୍ରଭୁ ଲଭି କଷ୍ଟ  ଆସି ସୁବେଳେ ହେଲେ ପ୍ରବିଷ୍ଟ ।୧୯।
ସକଳ ସୈନ୍ୟଙ୍କ ସେକାଳ ଆନନ୍ଦ କଲମେ କେ ଲେଖିପାରେ
ବହୁତ ପ୍ରଭେଦ ଥାଏ ଅନୁଭବ ମନୁ ଉଦ୍ଭବ କଥାରେ ।

ଏ ଗୀତ ।

ଧ୍ୟାନ ଗୋକୁଳାନନ୍ଦ ବଚିତ   ରାମ ପାଦେ ରହୁ ମୋର ଚିତ୍ତ ।୨୦।

---

## ୪୪ଶ ଛାନ୍ଦ

### ରାଗ—ଭାଳୀ

ବଳଗବଣ କଲ୍ଲ ଶ୍ରବଣ ମନ୍ଦ୍ରାସ୍ରବଣ ବାଣୀ
ଜାତ ଯାତନା ହତ ଚେତନା ନିଜସ୍ୱଚନା ଭଣି
ଲଭି ଭ୍ରାତଙ୍କ ନିଜ ନାଥଙ୍କ ତାଙ୍କ କନ୍ତଙ୍କ ଭଣେ
ତୋହର ବାଣ ବାଜି ନିର୍ବାଣ ପ୍ରାପ୍ତ ଗୀର୍ବାଣଗଣେ ।୧।
ତୋପର ବୀରେ ଏ ପୃଥ୍ୱୀରେ ନ ପାଇବାରେ ଜଣେ
ତୋ ବିନା ଟେଡ ନାହିଁ ଜଗତ ବର ତୁ ଗଡ ରଣେ
ରଙ୍ଗପ୍ରାଙ୍ଗଣେ ବାନରଗଣେ ତୋର ମାର୍ଗଣେ ଶବ
ହେବେ ନିଶ୍ଚୟ ପୂର୍ବସଂଚୟ ମୋ ଦୁଃଖଚୟ ଯିବ ।୨।
ସ୍ଥୂଳଜଙ୍ଘଙ୍କୁ କର ଶ୍ଳାଘାଙ୍କୁ ଦୈତ୍ୟସଙ୍ଘଙ୍କୁ ଦେଇ
କାଳମୁଖରେ ନିବେଶି ଖରେ ମହାସୁଖରେ ରହି
କହୁଣ୍ଠ ଅଜା ବାନରେ ଅଜା ତାଙ୍କ ଦଅ ଯା ମାରି
ତୁ ତ କେଶରୀ ତୋତେ କେ ସରି ଯିବ ସେ ସରି ମରି ।୩।
ବସି ରଥର ଗଡ ପଥର ଘୁଞ୍ଚ ପଥର କଲ୍ଲ
ମୋର ପରାଣ ସେ ରଘୁରାଣ ହାତରେ ଜାଣ ଗଲ୍ଲ
ଯତ କ୍ରୋଧରେ ଅଳ୍ପ ଯୁଦ୍ଧରେ କେ ପ୍ରାଣ ଧରେ ବୀର
ତା' ଅୟୂଧରେ କେ ଅୟୂ ଧରେ ପୃଥ୍ୱୀ ମଧ୍ୟରେ ନର ।୪।
ଇନ୍ଦ୍ରଜିତଙ୍କୁ ମୋର ତାତଙ୍କୁ ଭସ୍ମନେତ୍ରଙ୍କୁ ହତ
କଲ୍ଲ ଯେ ମାନ ହରି ତା ମାନ୍ୟ ନୁହେ ସାମାନ୍ୟ ସେ ତ
ଜନ୍ମେ ଅମରେ ତା'ର ସମରେ ହେବେ ସମରେ ହୀନ
ସେହି ରାଘବ ଅଟେ ରାଘବ ସର୍ବ ଦାନବ ମୀନ ।୫।
ଭାବ ମନରେ ସେ ବମାନରେ ରଣସ୍ଥାନରେ ମିଳି
ମହାବେଗରେ ମାରନ୍ତେ ଶରେ କପି ତ୍ରାସରେ ଚଳି
ଦେଖି ଅଚଳ ତେଜ ଚଞ୍ଚଳ ରାମ ଚଳନ୍ତି ରାଗେ
ବାଳି ଅନୁଜ ତା'ର ତନୁଜ ମିଳି ଦନୁଜ ଆଗେ ।୬।

ଏ ବିଭୀଷଣ ସେ ବିଭୀଷଣ ଭୀଷେ ଦୂଷଣାବଂଶୀ
ସର୍ବ ଅସୁର ମଧ୍ୟେ ଏ ଶୂର ସମସ୍ତ ସୁର ନାଶି
ଏତ ମଦନ ପଞ୍ଚବଦନ ମଧୁସୂଦନ ତୁମ୍ଭେ
ପଦ୍ମଚରଣ ଶରଣ ରଣ ଲଭି ମରଣ ଜବେ ।୭।
ଅଶୁଗବାର ବାରକ୍ ବାର ସେ କାରବାର କଲେ
ଭସ୍ମରଙ୍କର କରନ୍ନାଙ୍କର ଅଟଡଜସ୍ୱର ହେଲେ
ରାମ କୋପରେ ଅଗ୍ନି ସ୍ୱେପରେ କଜଣପରେ ଜାଳି
ତା' ନୟନରେ ଦେଖି ବାନରେ ଦେଲେ ତାନରେ ତାଳି ।୮।
ଅସୁରକୁଳ ହେଲେ ଅକୁଳ କଲେ ଏ କୁଳ ନାଶ
ବି-ସମ ଜଡ଼ ଗଲେ ଦଜଣ ନେଲେ ଘଜଡ଼ କାଶ
ମହାଶଙ୍କାରେ ମିଳି ଲଙ୍କାରେ ଥିଲ ପକାରେ ଦୈତ୍ୟ
ଅଙ୍ଗ ବହିଲେ ବେଗେ କହିଲେ ଦୁଃଖେ ଦହିଲେ ଶଠ ।୯।
ଦଶବଦନ କଲା କନ୍ଦନ ଗାତ୍ର ସ୍ପନ୍ଦନ ତା'ର
କର କରମେ ମାରେ ଭରମେ ବ୍ୟଥା ମରମେ ଘୋର
ବଜ ଦୁଃଖିତ ଶୁଙ୍କ ଦୀକ୍ଷିତ ମନ୍ତ୍ର ଶିକ୍ଷିତ ଜବ
ବହ୍ନିରେ ହୁତ ଦେଲା ବହୁତ କେତୁ କହୁ ତ ସ୍ତବ ।୧୦।
ଅହେ ପାବକ ଡାକେ ସେବକ ତୁମ୍ଭେ ଦେବଙ୍କ ମୁଖ
ସଖା ସ୍ୱଶନ ହେ ହୁତାଶନ କର ନାଶନ ଦୁଃଖ
ଏ କଥା ଦୂତ ଦେଖିଣ ଦ୍ରୁତ ଗତ ଅଦ୍ଭୁତ କଲା
ଯୋଡ଼ି ପକ୍ଷୀଙ୍କ ହୋମ ବାଣୀଙ୍କ କପିଶ୍ରେଣୀଙ୍କ ଦେଲା ।୧୧।
ଶୁଣି ପବନସୁତ ଭବନ ରାଜଭବନ ଗତ
ମନ୍ଦୋଦରୀର ଥରେ ଶରୀର ଦେଖି ହରିର ମୂର୍ତ୍ତି
ବହି ବେଷକୁ ଧରି କେଶକୁ ଦୈତ୍ୟ ପାଶକୁ ନେଲା
ରେ ମଦାନ୍ଧାରି ତୋ ମନୋନ୍ଧାରି ପୂରୁ ବାହାର ଗଲା ।୧୨।
ସୀତାସଂଗରେ ତାଙ୍କ ନଗରେ ଯିବ ବେଗରେ ଜାଣ
ଜୀବନ ରକ୍ଷା ହେଲା ଜୀବକ୍ଷା କଲା ସେବକାପଣ
ଥିଲେ ଶକତ ଅସ ମୋ କଥ କରମ୍ଭକତ ଦୈତ୍ୟ
ଭେଟ ନ କର ତୁମ୍ଭେ ନଗର-ମୁଖୀ ମୋ ଭବଗଡ ।୧୩।

ସେ ହନୂମନ୍ତଠାରୁ ଏମନ୍ତ ଶ୍ରବଣେ ମନ୍ଦ ଘୁଞ୍ଚ
ବଂଶବଦନ ଲଭି ବଦନ ଅସେ ବଦନ ଭଞ୍ଜ
ବାତଜ ବେଶ ଘୁଞ୍ଚିଲ କ୍ଳେଶ ଦେବ ଲଙ୍କେଶ ଭଲି
ତାଙ୍କୁ ଖରେ ଗମିଲ ଖରେ ରାମପାଖରେ ମିଳି ।୧୪।

ତ୍ରସ୍ତ ମନରେ ଅନ ବାନରେ ହୋମସ୍ଥାନରେ ହେଲେ
ଯଜ୍ଞ-ଦରବ ଫିଙ୍ଗି ସରବ ଅନନ୍ଦ ରବ କଲେ
ଶତ୍ରୁ କହିଲ ଦୈତ୍ୟ ମହିଳା ନେଇ ରହିଲ ଗୃହେ
କହେ ଗୋକୁଳାନନ୍ଦ ବ୍ୟାକୁଳାନଳ ତା ଦେହ ଦହେ ।୧୫।

## ୪୫ଶ ଛାନ୍ଦ

### ରାଗ—ଗୌଣ୍ଡ

ଜୀବନୀର ଅପମାନ ଶ୍ରବ ଶୀରେ ନେତ୍ର ପୂର୍ଣ୍ଣ
କରି ଦଶଶିର ଶେଷ କଲା ତ୍ରିଯାମା ।
ବଂଶ-ପାଦପ ବର୍ଦ୍ଧିତ ପାତ୍ର ମିତ୍ର ପୁତ୍ର ପୌତ୍ର
ବିସଖା-ବିଶାଖା ହତ ସ୍ଥାଣୁ ଉପମା ।
ପରଣତ ତା'ର ବିଭୂତ ।
ତ୍ରିଭୁବନ ବାଞ୍ଛ କରେ ଦାନ ବିଭୂତ ।୧।

ସହଜେ ତ ଜଗ ଭୀମ ବାମଦେବ ରୁଦ୍ର ସମ
ଭବକ୍ଷୋଭରେ ଉଭବ ସର୍ବ ଅଣିବ ।
ତଥାପି ଥାପିଲ ଦମ୍ଭ ସୀତା ମଧୁରତା ଲୋଭ
ପିପିଲିକା ପନ୍ତି ପରି ଦାନବ ସର୍ବ ।
ଦୁର୍ଗବକ୍ର ଶୀଘ୍ର ବାହାର ।
ରଥାଙ୍ଗନାଗ ତୁରଙ୍ଗ ସଙ୍ଗେ ଅପାର ।୨।

ସୈନ୍ୟ ବନଧି-ସମାନ — ଚହଲେ ଲହରୀ ନ୍ୟୂନ
ରଥ ବହିତ୍ର ମକର-ଘୋଟକଗଜ ।
ଭିଦତ କୁମ୍ଭୀ-କୁମ୍ଭୀର — ମୁଦ୍ଗର ତିମି ପ୍ରକାର
ଦର୍ବୀକର(୧) ଛବିକି ଯେ ବହୁଛୁ ବାଜୀ ।
କୋଦଣ୍ଡ-ବାସୁକିବଳୟରେ
ମନ୍ଥିତ ହେବ ବାନରଯୂଥ-ମନ୍ଦରେ ।୩।
ସ୍ୱାଧୀନତା ସୁଧା ଜାତ — ଦେବଙ୍କୁ ହେବ ପ୍ରାପତ
ସୀତାରୂପା-ଲକ୍ଷ୍ମୀ ନେବେ ଶ୍ରୀରଘୁପତ ।
ମନ୍ଥି ବାରେ ପରପନ୍ଥୀ- — କୁଳ ଜଳଚରପନ୍ତି
ବ୍ୟଥିତ, ଲଭିଲେ ଚେତେ ମରଣ ଗତ ।
ଦଶକନ୍ଧ ହୃଦ-କନ୍ଦ
କନ୍ଦପର ଶୂରବରେ ଖେଦେ ବିଦଗ୍ଧ ।୪।
ବିଶ୍ରବାସୁତ ଚୈତନ୍ୟ — ହତ ଦେଖି ସୂତ ତୂର୍ଣ୍ଣ
ରଥ ସମର-ରଙ୍ଗରୁ ନେଲା କୌଶଳେ ।
ଅର୍ଦ୍ଧ ପଥେ ଦାନବେଶ — ଜ୍ଞାନ ପାଇ ରୋଷାବେଶ
ସାରଥି ପ୍ରତି; ପ୍ରବେଶ ସମର ସ୍ଥଳେ ।
ମୂଳ କରି ବିଜୟ ସ୍ପୃହା ।
ଶୂଳ ପ୍ରହାରିଲା ଦାନବକୁଳ-ନାହା ।୫।
ତା ତେଜେ ଅର୍ଯ୍ୟମା ଲଜ — ପାଇଲେ; କପିସମାଜ
ବାଜ ଦେଖି ଅନ୍ୟ ବାଜ ପରି ଭାଜିଲେ
ନ ଅସୁ ସେ ସ୍ୱତନ୍ତ୍ର — ଶକ୍ରଦତ୍ତଶକତିକି
ରାମ ପେଷିଲେ ନାଶିଲେ ସୁରେ ହସିଲେ ।
କ୍ଷପାଚର କପା-କୁପାରେ ।
ମଜ୍ଜି ତଜିଲେ ସେ ଭୂମା ଭମା କୃପାରେ ।୬।
ରଣ ପ୍ରାଙ୍ଗଣେ ରାବଣ — ଦୁର୍ଗାଙ୍କୁ କଲା ସ୍ମରଣ
ହର ହରପ୍ରିୟା ଦୁଃଖ ଶରଣ ତୋର ।

---

(୧) ଦର୍ବୀକର—ସର୍ପ ।

ସ୍ତବେ ଦେବୀ ହେଲେ ପ୍ରସନ୍ନ ।
ସମୀପକୁ ଗମି ତାକୁ ଦେଲେ ଦର୍ଶନ ।୭।

ଦାକ୍ଷାୟଣୀଙ୍କ ଦାକ୍ଷିଣ୍ୟ ମଘୀର ବନ ପବନ
କଲା ଦୈତ୍ୟ ଧୈର୍ଯ୍ୟ-ବୀର୍ଯ୍ୟ-ଅଙ୍କୁରୋଦ୍‌ଗମ ।
ପତତ୍ରୀଦ୍ୱାରା ପ୍ରକ୍ଷିପ୍ତ ମଞ୍ଜିରେ ସୌଧ ଯେମନ୍ତ
ରାମ ହୃଦୟ-ମନ୍ଦର ଭଗ୍ନ ଉଦ୍ୟମ ।
ଶର-ଶାଖା କରି ବିସ୍ତାର ।
ମ୍ଳାନ କଲା କପିକୁଳ-ଗୁଳ୍ମ ବିସ୍ତର ।୮।

ଜମ୍ବୁ-କୁସୁମ ସୌରଭ ରହିଟି ହଟିବା ସର୍ବ
ଶର୍ବରୀଚର-ଭୃଙ୍ଗଙ୍କ କଲା ଆକୃଷ୍ଟ ।
ରାଜ ରାଜାନୁଜ ତେଜ- ପୁଞ୍ଜ ଗଞ୍ଜେ ବାଲା ସୂର୍ଯ୍ୟ
ଦର୍ଶନେ କପିସମାଜ ହେଲେ ନିକୃଷ୍ଟ ।
ଚିନ୍ତା କରି କଉଚ୍ଛ କେହି
ଗତ କଲେ ନାହିଁ ରଣ ମୂର୍ଚ୍ଛ ଗୃହି ।୯।

ବାମଦେବ ବାମା ବାମ ହେବାରୁ ରାମରେ ରାମ
ବର୍ଜନ କରି ସଂଗ୍ରାମ ନୀରବେ ସ୍ଥିତ ।
ସର୍ବ କର୍ମ ହେଲା ବୃଥା ନ ମରିବ ଦଶମଥା
ସ୍ରଷ୍ଟାଙ୍କୁ ପେଶିଲେ ସୁରେ ହୋଇ ଶଙ୍କିତ
ଉପଦେଶ ଦେଲେ ବିରଞ୍ଚି
ଷଷ୍ଠ କରି ଅର ଗୌରୀ-ପୂଜା ବିରଚି ।୧୦।

---

୮। ଦାକ୍ଷାୟଣୀ (ଦୁର୍ଗା) ଦାକ୍ଷିଣ୍ୟ (ଅନୁକୂଳତା) ରୂପ ବନ (ଜଳ) ପବନ ଦୈତ୍ୟ ଧୈର୍ଯ୍ୟ ସ୍ୱରୂପ ବୀର୍ଯ୍ୟର ଅଙ୍କୁର (ଗଜା) ଉଦ୍‌ଗମ (ଜାତ) କଲା । ପତତ୍ରୀ (ପକ୍ଷୀ) ଦ୍ୱାରା ପ୍ରକ୍ଷିପ୍ତ ମଞ୍ଜି, ଗଛ ଉଠି ସୌଧ ଯେପରି ନଷ୍ଟ ହୁଏ ରାମ ହୃଦୟ ରୂପ ମନ୍ଦର ସେପରି ଭଗ୍ନ ହେଲା । ରାବଣ ରୂପ ବୃକ୍ଷ ଶର ରୂପ ଶାଖା ବିସ୍ତାର କରି ଗଛତଳେ ଅନ୍ୟ ଗଛ ଯେପରି ନ ହୁଏ ସେପରି ବିସ୍ତର କପିକୁଳ-ଗୁଳ୍ମ ମ୍ଳାନ କଲା ।

ଅଷ୍ଟୋତ୍ତର ଶତ ଶତ-ଦଳ୧ ଅର୍ଣ୍ଣି ସୀତାକାନ୍ତ
ଅଶ୍ୱିନ ସିତ୨ ସପ୍ତମୀ ତିଥିରେ ପୂଜା ।
କଲେ ଆରମ୍ଭ ହେରମ୍ବ-ମାତା ବଢ଼ିବାକୁ ଦମ୍ଭ
ନେଲେ ଏକ ଅମ୍ଭୋରୁହ ଲଚିଲା ଖୋଜା
ବିଗୃହଲେ ଶ୍ରୀବନ୍ଧୁପତି ।
ପଙ୍କେରୁହ-ନେତ୍ର ଲୋକେ ମୋତେ କହନ୍ତି ।୧୧।
ଉତ୍ପାଟନପାଇଁ ନେତ୍ର ଧରିବାରୁ କଙ୍କପତ୍ର୩
ବରଦା ହେଲେ ଶାରଦା ସିଂହବାହିନୀ ।
ବ୍ୟସ୍ତ ନୁହ ରଘୁନାଥ ଦଶ-ମସ୍ତକର ଅସ୍ତ
ସମସ୍ତ ତ ଉପସ୍ଥିତ ଅସି ହେଲାଣି ।
ପ୍ରଳୟକାଳୀନ ବାରିଧି ।
ପଦଭ୍ୟାଗ କଲା ତା'ର ତୀରସନ୍ଧି ।୧୨।
ହେବ ଯା ଅବସ୍ଥବର ମେତୁର ତାକୁ ସୁନ୍ଦୁର-
ବର୍ତ୍ତୀ ନୂତନ ମୁଦ୍ରର କାଳିକା ନାମ ।
ନବମୀ ତିଥିରେ ନବ ବିଳୋମ୪ କଲେ ଯା ହେବ
ବିସର୍ଜନ କଲେ ତାଙ୍କୁ ତହିଁରେ ରାମ ।
ଦଶମୀରେ ଦଶଲପନ ।
ନାଶ ଅଶେ ଦାଶରଥି କଲେ ଗମନ ।୧୩।
ସଙ୍ଗେମିଳି ବିଭୀଷଣ ଅଷ୍ଟସେନାପତି ପ୍ରାଣ-
ପଣେ ସାହାଯ୍ୟ କରନ୍ତି ରଘୁଗ୍ରଣଙ୍କୁ ।
ଘଟକୁ ନକୃଷ୍ଟ କୁଟ ଅଠରଶ ମୁକୁଟ
ବନ୍ଧା ଯୋଦ୍ଧା ସାହା ସଦା ବଂଶେଷଣଙ୍କୁ ।
ପଣେ ପଣେ ବାଣ ଷଣକେ ।
ଜଣେ ଜଣେ ମାରୁଛନ୍ତି ଜଣ-ଜଣକେ ।୧୪।
ଛଳୀମାନଙ୍କର ପର୍ବୀ୫ ପତର୍ଜୀ୬ ପର୍ଯ୍ୟନ୍ତେ ଗତ
କରୁଛନ୍ତି ଦବାଗ୍ନି ନାସ୍ତି ନିବୃତ୍ତି ।

(୧) ଶତ ଦଳ—ପଦ୍ମ (୨) ସିତ—ଶୁକ୍ଳ (୩) କଙ୍କପତ୍ର—ଶର
(୪) ନବ ବିଳୋମ—ବନ (ଜଳ) (୫) ପର୍ବୀ—ଶର (୬) ପତର୍ଜୀ—ପକ୍ଷୀ

ବିଶ୍ରବା-ଋଷି-ନନ୍ଦନ ଜ୍ୟେଷ୍ଠାତପ ନିସୂଦନ
ନମିତ ଧରଣୀ ପରେ କଲା ସେ ଛଣୀ ।
ଶରେ ଶର କରେ ବାରଣ ।
ବିଚିତ୍ର ରଣ ଦେଖନ୍ତି ଲୁଚି ଗୀର୍ବାଣ ।୧୫।
ଦଶରଥଜଙ୍କପାଇଁ ରଥ ଦେଲ ସୁରସାଇଁ
ମାତଳିଙ୍କୁ ପଠାଇଲେ ରଣାଙ୍ଗନକୁ ।
ବଶିଷ୍ଠଙ୍କ ଯଜମାନ ବସି ଇଷ୍ଟ କର ଧାନ
ପ୍ରଶଂସିଲେ ବ୍ରହ୍ମମନେ ପୁରୁହୂତଙ୍କୁ ।
ଦୈତ୍ୟ ଶିର ବାରକୁ ବାର
କାଟିଲେ ନ ଛେଦି ଭୂମେ ଲଗେ ଗ୍ରୀବାର ।୧୬।
ଦାଶରଥିଙ୍କ ବ୍ୟଥିତ ଦେଖି ସାରଥି କଥିତ
ଏଥି ନ ମରିବ ପୃଥ୍ୱୀ-ଅରି କଦାପି ।
ରକ୍ଷବକ୍ଷ ପ୍ରତି ଲକ୍ଷ୍ୟ ବ୍ରହ୍ମ ଶର କମଳାକ୍ଷ
କଲେ ମଲେ ଭଲେ ମୋକ୍ଷ ହୋଇବ ପାପୀ ।
ପୂର୍ବଦେବ ପୂର୍ବରୁ ବର
ପାଇଛି ଦେଇଛି ତପରେ ବେଦବର ।୧୭।
ପ୍ରଶଂସି ଶଂସିତ ଶର ହଂସ-ବଂଶୀ ପେଶି ତର
ଫଟ ସେ ଦୈତ୍ୟର ଉର ନାଶିଲ ହେଲେ ।
ଚକ୍ରପାଦ(୧) ପରୁ ଶୁଙ୍କ ଶିଷ୍ୟ ପାଦପରୁ ପଙ୍କ
ରସାଳ ପରି ପତିତ ଧରଣୀତଳେ ।
ଦେବେ କଲେ କୁସୁମବୃଷ୍ଟି ।
ନୃତ୍ୟ କଲେ ଆନନ୍ଦରେ ବାନରସୃଷ୍ଟି ।୧୮।
ଦଶଦଶ ଅନ୍ଧକାର ଦଶିବାରୁ ରଘୁବୀର
ଭାଷିଲେ ମାତଳି କହ ଏହା କାରଣ ।
ସେ ପରା ଋଷିଙ୍କ ଅଂଶୁ ଜାତ ପରସୁ(୨) ପରାସୁ(୩)
ସ୍ମରଣୁଛି ବ୍ରହ୍ମହତ୍ୟା ପାତକ ଜାଣ ।
ଶକ୍ରଦୂତ କହେ ଏତକ
ନିଜ ନାମ ଶତ୍ରୁ ହତ ହେବ ପାତକ ।୧୯।

(୧) ଚକ୍ରପାଦ—ରଥ, (୨) ପରସୁ—ଗତାସୁ (୩) ପରାସୁ—ପ୍ରାସରୁ

ହତଶକତ ଲଙ୍କେଶ କଣ୍ଠକୁ ଗତ ରଭସ
କର ସୀତାପତ ସ୍ୱଜଣାତ ପୁଚ୍ଛିଲେ ।
ଏକାନ୍ତ ଭକ୍ତରେ ଶାନ୍ତ- ଶୀଳେ ମନ୍ଦୋଦରୀକାନ୍ତ
ମୁଁହ ଅଟଇ ନିତାନ୍ତ ପାପୀ ଭାଷିଲେ ।
ଶତ୍ରୁଭାବରେ ପ୍ରାପ୍ତ ମୁକତ
ବୈକୁଣ୍ଠପୁରକୁ ପଥ ଦଶେ ସଂପ୍ରତ ।୨୦।

ଅପଣ ତ ଅନ୍ତର୍ଗତ କଥା ଜାଣ ରଘୁନାଥ
ଅବ୍ୟକ୍ତ ଅନନ୍ତ ଅନ୍ତର୍ଯାମୀ ଅଚ୍ୟୁତ ।
ଦେବାପାଇଁ ଉପଦେଶ ଯୋଗ୍ୟ ନୁହଇ ଏ ଦାସ
ଅନୁଭବ କଥା ଶୁଣ କହେ ଅସୁତ ।
ହିତ କାମ ଶୀଘ୍ର କରବ ।
ଅହିପର ଅହିତ କାର୍ଯ୍ୟକୁ ଡରବ ।୨୧।

ମନ୍ଦୋଦରୀ ଅଦକାନ୍ତା ପାଇ ଭକ୍ତି-ମୁକ୍ତିବାର୍ତ୍ତା
ସନ୍ତାପିତା ହୋଇ ପଥେ ଅସିଲେ ଧାଇଁ ।
ଦନ୍ତାବଳକୁ କରଣୀ- ଯୂଥ ପଶ୍ଚେ ହରଣୀ-
ନେଇଯାଏ ବେଷ୍ଟନ କର ଲେଟିଲେ ଭୁଇଁ ।
ବୋଧି ଯୋଗୀବର ବାରଣ-
ଗତ ଅଧୀରତା ବୃନ୍ଦ କଲେ ବାରଣ ।୨୨।

ସ୍ୱବଂଶ ନାମ ସାର୍ଥକ କର ପୂର୍ବ ପୁରୁଷଙ୍କ
ଅସ୍ତ-ଗତକ ଯେତୁ କଲେ ନିପାତ ।
ସତୀ-ଶିରୋମଣି-ପାଣି ଦାନ କର ଲଙ୍କାରାଣୀ
ସନ୍ତାପ-କୃପୀଟଯୋନି କଲେ ସେ ଶାନ୍ତ ।
ଚନ୍ଦନ ଇନ୍ଧନ ସଙ୍ଗାଡ଼ି ।
ଦାହ କଲେ ଶବ ଗବ୍ୟଘୃତ ଅଜାଡ଼ି ।୨୩।

ଲଙ୍କାଦ୍ୱୀପରେ କୌଣପ- ଗଣଙ୍କ ଉପରେ ଭୂପ
ହୋଇଲେ ବିଭୀଷଣେ ନୃପଧାସ୍ୱି ବଧିରେ ।
ମହୀ-ଦୁହିତା ଅଣାଇ କହିଲେ ତାଙ୍କୁ ଅନାଇ
ରହିଥିଲୁ ତୁହି ଦୈତ୍ୟଦ୍ୱାରୀ ବନ୍ଦରେ ।
ମାନ ଉଦ୍ଧାରଣ ସକାଶ ।
ବାନର ଘେନି ଦାନବ କଲି ବିନାଶ ।୨୪।
ଅତ ଅଭୂଷଣ କଥା ଦୂଷିତା ହୋଇଲୁ ସୀତା
ଗ୍ରହଣ କଲେ ମୋଠାରେ ଲଗିବ ଦୋଷ ।
ଜନ-ବଦନେ ନିନ୍ଦନ ଭାଷା କରିବ ସଦନ
ବନ୍ଦନ-ବଂଶ-ଚନ୍ଦନେ ମିଶିବ ବିଷ ।
ଯେଣେ ଇଚ୍ଛା ତେଣିକି ଯାଅ ।
ଏଣିକି ଏଣୀନୟନା ମୋତେ ନ ଗୃହଂ ।୨୫।
କହିଲେ ବୈଦେହୀ ଦେହୀ ହୋଇ ସହିବ କି ଏହି
ମହୀ ମଧ୍ୟେ ଏହି କଥା ଅହେ ଶ୍ରୀରାମ ।
ବୈଶ୍ୱାନରେ ଦେବି ହ୍ରାସ ଥିବ ଯେବେ ମୋର ଦୋଷ
ଅବଶ୍ୟ ହୋଇବି ଭସ୍ମ ହେଲି ନିର୍ମମ ।
ଥିଲେ ପାତବ୍ରତ୍ୟ-ଧରମ ।
ଭର୍ମ(୧) ସମ ହେବି ମନୁ ତୁଟିବ ଭ୍ରମ ।୨୬।
କାଠ କର ଅଯୋଜନ ମଠରେ କି ପ୍ରୟୋଜନ
ଜଠ ସୌମିତ୍ରି, ଦେଖନ୍ତୁ ସକଳ ଜନ ।
ଈକ୍ଷଣେ ପୂର୍ବଦକ୍ଷିଣ ରାମ ଦେବାରୁ ଈକ୍ଷଣ
ଜାଣି ତକ୍ଷଣ ଲକ୍ଷ୍ମଣ ପେଷି ସଇନ ।
ଜମା କଲେ ଅମାପ କାଠ ।
ବହ୍ନି ଯୋଗ କଲେ ସ୍ୱେତେପ(୨) ନ କରି ମଠ ।୨୭।
ପ୍ରଦକ୍ଷିଣ କରି ପ୍ରାଣ- ଧନେ ଧନଞ୍ଜୟେ କ୍ଷୀଣ-
ମଧ୍ୟା ପ୍ରବେଶ ପାବକେ ହେବେ ପାବନ ।

(୧) ଭର୍ମ—ସୁବର୍ଣ୍ଣ (୨) ସ୍ୱେତେପ—ଶରଦ୍ୱାରୀ

ଦର୍ଶକମାନଙ୍କ ଭୃଶ ବର୍ଷୁକ ଘନ ସଦୃଶ
ହାହାକାର ରବ ଠାବ ସର୍ବ ବଦନ ।
ବହୁଥିବା ବନ ପବନ ।
ସ୍ତମ୍ଭିତ ଚକିତ ବନଜୀବ ଜୀବନ ।୨୮।
ଶ୍ରମ ବିଶୃଙ୍ଖଳେ ମର୍ତ୍ତ୍ୟ ସାମାନ୍ୟ ଭ୍ରମରେ ବାମ
ହୋଇ ବାମନେତ୍ରା କମ୍ପା କଲ୍ପ ଏ ଧାମ ।
ପୌର୍ଣ୍ଣମାସୀନାଥ ନବ ହୃଦୟାକାଶକୁ ଶୋଭ
ହେଲ ସମ୍ପ୍ରତି ବିବୀତ ସଙ୍ଗମ ତମ ।
ବିଶୃଙ୍ଖ ଦଶକୁ ମାନସେ
ଜାତବେଦୁ ଉତ୍କଣ୍ଠିତ ଜାତ ପୁରୁଷେ ।୨୯।
ଧରଣୀ-ପୁତ୍ରୀଙ୍କ ଧର ଭଣିଲେ କୋଦଣ୍ଡଧାରୀ
ଏହାଙ୍କ ଚରିତେ ନାହିଁ କିଛି ଦୁରିତ ।
ମୁଁ ନୁହେ ସାମାନ୍ୟ ନର ସ୍ୱୟଂ ଅଟେ ବୈଶ୍ୱାନର
ରଘୁକୁଳବଂଶୀ ଗ୍ରହଣ କର ତ୍ୱରିତ ।
ଅନ୍ତର୍ହିତ ଦେବପୁରୁଷ ।
ଭାରସତା ବର୍ତ୍ତି ସର୍ବଙ୍କର ହରଷ ।୩୦।
ସୁନାସୀର ସୁନାଶିର- ଭୁଷା ଯୋଷାଙ୍କ ଖବର
କଲେ ଗୋଚର ତହିଁରେ ନାହିଁ କଳଙ୍କ ।
ତ୍ରିଦଶ ସହିତ ଦଶ- ରଥ ଭାଷିଲେ ହେ, ଦୋଷ
ନାହିଁକି ସୀତାଙ୍କ ଦଅ ରଘୁନାୟକ ।
ତୁମ୍ଭେ ବିଷ୍ଣୁ ସେହି ଈର୍ଦ୍ଧ୍ୱୀ ।
ଯୁଗେ ଯୁଗେ ସେ ତୁମ୍ଭର ପ୍ରାଣବାନ୍ଧବୀ ।୩୧।
ଦେବେ ବର୍ଷିଲେ ଅମୃତ ମୃତ ବାନରେ ଜୀବିତ
ହେଲେ ଦେଖି ତୋଷଗଲେ କୋଦଣ୍ଡଧର ।
ସୀତା ଆଉ ଭ୍ରାତା ସହ ପୁଷ୍ପକଯାନେ ବିଜୟୀ
ସଙ୍ଗେ ଘେନି ସୁଗ୍ରୀବପ୍ରମୁଖ ବାନର ।
ଶାନ୍ତ ପଦ୍ମଲସ୍ୟାନାୟକ ।
କହଇ ଗୋକୁଳାନନ୍ଦ ପଟ୍ଟନାୟକ ।୩୨।

———

## ୪୭ଶ ଛାନ୍ଦ

### ରାଗ-କଳଶା

ଜାନକୀଙ୍କ ଘେନି ରାମ ବସି ଦେବଯାନ
ମାନସ ପର୍ଯ୍ୟନ୍ତ ଗତ କରଇ ବିମାନ ।୧।
ଦାଶରଥିଙ୍କ କହନ୍ତ ପାର୍ଥିବୀଙ୍କି ସଖି
ଏସ୍ଥାନେ ସମର କଲୁଁ ବହୁ କ୍ଳେଶ ସହି ।୨।

ପୁରନ୍ଦର-ପର ନାଗପାଶରେ ବନ୍ଧନ
ହଲୁ ଏଥି ପୁଣି ମାୟା ଜାନକୀ ନିଧନ ।୩।
ଏ ସ୍ଥାନରେ ଅମ୍ଭଙ୍କୁ ମାଇଲା ବ୍ରହ୍ମବାଣ
ଏଠାରେ ତା ପ୍ରାଣ-ପ୍ରଦୀପ ପ୍ରାପ୍ତ ନିର୍ବାଣ ।୪।

ଯା'ର ମୋର ଏକ ଆତ୍ମା ନାହିଁ ଭେଦାଭେଦ
ସେ ସୌମିତ୍ର ଏଥି ହୋଇଥିଲା ଶକ୍ତିଭେଦ ।୫।
ଅଶୋକେ ତୁମ୍ଭଙ୍କୁ କରିଥିଲା ଯେ ଅବରୁଦ୍ଧ
ସେ ଦଶକନ୍ଧକୁ ସଖି କଲି ଏଥି ବଧ ।୬।

ଷଣଦେହୀ ଶୁଣି ଏଥି ଭକ୍ତ ବିଭୀଷଣ
ଚରଣେ ଶରଣ ପଶ ହରିଛୁ ଭୂଷଣ ।୭।
କମ୍ବୁକଣ୍ଠୀ ଶମ୍ଭୁ ଏଥି କଲି ମୁଁ ପୂଜନ
ସେତୁବନ୍ଧ ରାମେଶ୍ୱର ବୋଲନ୍ତି ଜନ ।୮।

କରକରବଦନା ସାଗର ଦରଶନ କର
ତୁମ୍ଭ ହେତୁ ସେତୁ କଲେ ବାନରନିକର ।୯।
କିଷ୍କିନ୍ଧ୍ୟା ନଗରୀ ଦେଖ ନାଗରୀରତନ
ମିତ୍ରପୁତ୍ର ମିତ୍ରପୁର ଦିଶୁଛି ଯତନ ।୧୦।

ବଧ କଲି ବାଲି ଏଥି ଏକ ବିଶିଖରେ
ବିଂଶାର୍ଦ୍ଧ ଭଦ୍ରକୁ ଯାଉ ଥିଲା ଯେ ବାଖରେ ।୧୧।
ଦେଖ ଋଷ୍ୟମୂକ ଗିରି ଦିଶଇ ଅଗରେ
ସଖ୍ୟ ସଂସ୍ଥାପନ କଲି ସୁଗ୍ରୀବ ସଙ୍ଗରେ ।୧୦।

ତବ ଅବୟବେ ଥାଇ ଯେ ଭୂଷା ସରବ
ରଖିଥିଲ ଶଶ ମୁଖୀ ନିଜର ଗୌରବ ।୧୩।
ବାସାବନ୍ଧ ହୋଇ ହେଲ ଏଥି ଉପେକ୍ଷିତ
ଗନ୍ଧରେ ସୁଗ୍ରୀବଦ୍ୱାର ଥିଲ ସୁବାସିତ ।୧୪।

ଶମ୍ପାଗୋଷ୍ଠୀ ଦେଖ ଏହୁ ପମ୍ପା ସରୋବର
ମୋ ନିକଟ ଭେଟ ଛଟେ ମର୍କଟପ୍ରବର ।୧୫।
ମିତ୍ରଦ୍ୱାର ଏ ଗୋଜରେ ହେଲ୍ ପରୀକ୍ଷିତ
ଛେଦିଲ୍ ସପ୍ତଶାଳକୁ ଆମ୍ଭୁ ବନ୍ଦିତ ।୧୬।

କବନ୍ଧ ଛେଦନ କଲ୍ ଏଥି ରାମାବିର
ଦିବ୍ୟ ରୂପ ବହି ଦେଲ ତୁମ୍ବୁର ଖେଚର ।୧୭।
ଏଠାରେ ବଧିଲ୍ ଖର ତ୍ରିଶିର ଦୂଷଣ
ପ୍ରାପ୍ତ ହେଲ୍ ଏ ସ୍ଥଳରୁ ନୂପୁର ଭୂଷଣ ।୧୮।

ଭରଦ୍ୱାଜ ସଦନରେ ପ୍ରବେଶ ସ୍ୟନ୍ଦନ
ବନ୍ଦନ କଲେ ମୁନିଙ୍କ ଶ୍ରୀ ରଘୁନନ୍ଦନ ।୧୯।
ସୀତାଗ୍ରେହଠାରୁ ପୁନର୍ଗ୍ରହଣ ବିଷୟ
ଶୁଣି ଗଲେ ଋଷ ହସି ବିନାଶି ସଂଶୟ ।୨୦।

ହନୁମାନ ମନରେ ଉପୁଜିଲ ଅଭିମାନ
ମୋହ ଦେଲି ରାମ ସିନା ପାଇଲେ ସମ୍ମାନ ।୨୧।
ମୁଁ ପର୍ବତ ଆଣିବାରୁ ଲକ୍ଷ୍ମଣ ବଞ୍ଚିଲେ
ତଥି ଏ କପିର କଥା ନ କହିଲେ ଛଳେ ।୨୨।

କୌଶଲ୍ୟା-ସୁତ ବାତଜ ଗର୍ବକୁ କୌଶଳେ
ଖର୍ବ କରି ସମ୍ମୁଖରେ ବାହାର କୋଶଳେ ।୨୩।
ସାକେତପୁରେ ସଙ୍କେତ ପଠାଇ ଅଗରେ
ବିମାନରେ ବସିଗଲେ ଗଗନମାର୍ଗରେ ।୨୪।

ନନ୍ଦୀଗ୍ରାମ ଜନମାନେ ପାଇ ଏ ଖବର
ଉପରକୁ ଚାହିଁ ରହି ଥିଲେ ବରାବର ।୨୫।
ପ୍ରମୋଦ କରି ଭରତ ହୃଦୟ-ପୁଷ୍ପରେ
ଦେବଯାନ ବିରାଜିତ ତଦୂର୍ଦ୍ଧ୍ୱ ପୁଷ୍ପରେ ।୨୬।

ଯଥାବିଧି ମାନ୍ୟ ପରସ୍ପରେ ଅଶେଷିଲେ
ଦର୍ଶଙ୍କ ହର୍ଷ ମନରେ ବହୁ ପ୍ରଶଂସିଲେ ।୨୭।
ଶ୍ରୀରାମ ଚିହ୍ନାଇ ଦେଲେ ଶୁଣରେ ଭରତ
ଏମାନଙ୍କ ଯୋଗେ ହେଲି ମୁହିଁ ରଙ୍ଗେ ରତ ।୨୮।
ଦଶାନନ ସାନ ଭାଇ ଏହି ବିଭୀଷଣ
ସ୍ୱବଂଶ ଅଗ୍ରଜ-ଭ୍ରାତ ପ୍ରତ ଏ ପୂଷଣ ।୨୯।
ମିତ୍ର-ପୁତ୍ର ସୁଗ୍ରୀବ ଅଟନ୍ତି ମୋର ମିତ
ଯୋଗାଇଲେ ବାନର ସୈନ୍ୟ ଅପରିମିତ ।୩୦।
ହନୁମନ୍ତ ଏହା ନାମ ପବନକୁମର
ଅମରବୃନ୍ଦଙ୍କ ବରେ ଅଟେ ଏ ଅମର ।୩୧।
ଏହା ପରି ବୀର ନାହିଁ ଏ ତିନି ଲୋକରେ
ଜନ୍ମକାଳେ ବାଳ-ଭାନୁ ଧଇଲା ସୁଖରେ ।୩୨।
ଏନ୍ତ ଯୁଦ୍ଧେ କରିଛି ଏ ବହୁତ ସାହାଯ୍ୟ
ଚଷୀ ପରି ଭିଡ଼ି ପାରେ ମୁଣ୍ଡାଇ ଅହାର୍ଯ୍ୟ୧ ।୩୩।
ଅଙ୍ଗଦ ଏ ବାଳିସୁତ ଅତି ସୁକୁମାର
ବୀରପଣେ ଅଟଇ ଏ ଦ୍ୱିତୀୟ କୁମାର ।୩୪।
ଅନବଦ୍ୟ ବୈଦ୍ୟ ଏନ୍ତ ଅଟନ୍ତି ସୁଷେଣ
ହରିବାକୁ ସମରଥ ମରଣ କଷଣ ।୩୫।
ନଳ ଲଗାଇଲେ ବାରି ଉପରେ ଭୂଧର
ମନ୍ତ୍ରୀପଣେ ଜାମ୍ବବାନ ବଡ଼ ଧୁରନ୍ଧର ।୩୬।
ଏକୁଁ ଏକ ବଳବନ୍ତ ଏ ବାନରକୁଳ
ରକ୍ଷା ନ ପାଇବେ ଇନ୍ଦ୍ର ହେଲେ ପ୍ରତିକୂଳ ।୩୭।
ଅନନ୍ତର ରାମ ଅଭିଷେକ ଯଥାବିଧି
ମୁନି ଋଷି ସହିତ ପ୍ରବେଶ ତହିଁ ବିଧି ।୩୮।
ଉପଚୌବନ ସହିତ ଭୂପ ଉପସ୍ଥିତ
ସଂଖ୍ୟାବାନଙ୍କର ସଂଖ୍ୟା ବ୍ୟାଖ୍ୟାରୁ ଅତୀତ ।୩୯।
ଆନନ୍ଦ କେ କହୁ ପ୍ରଜାପନ୍ତି କପିଙ୍କର
କରଣ ଗୋକୁଳାନନ୍ଦ ଛନ୍ଦ ଲିପିକର ।୪୦।

---

(୧) ଅହାର୍ଯ୍ୟ—ପର୍ବତ

## ୪୭ଶ ଛାନ୍ଦ

ରାଗ—କାମୋଦୀ

ଶୁଣ ସୁମତି ମତି ନିଷ୍ଠଳ ଭରି ଗତି—
ମୂଳଦ ରାମଙ୍କ ବିଷୟ
ଦେବତା କଲେ କୃତ୍ୟ ଯିବାପାଇଁ ବୈକୁଣ୍ଠ
ବୈକୁଣ୍ଠ କୌଶଲ୍ୟାତନୟ
ସେ ଦାଶରଥି
ପାଶେ ଭଦ୍ରମୁଖୀ ଥିଲେ ।
ପଚାରିଲେ ଏହା ସେ କହିଲେ ।
ଦଶାସ୍ୟ ବଳ୍ପ ରୈରି ବିଦେହଜା ଦୋଷରେ
ପ୍ରଜାଏ ଭଲ୍ଭର କୋଇଲେ ।୧।
ରାଜ୍ୟରେ ବଜାରରେ ବୃନ୍ଦ ରଜକ-ଘରେ
ଜାନକୀନାମେ ଅପବାଦ ।
ସଙ୍ଗ ସଭେଜ-ନେନ ଶୁଣି ମଣିଲେ ସତ
ବ୍ୟକ୍ତ ଯା କରିଥିଲା ଭଦ୍ର୧
ସେ ପ୍ରଭୃତରେ ।
ପାଶେ ଡକାଇ ଭ୍ରାତା ନୟ ।
କହିଲେ ସମସ୍ତ ବିଷୟ
ଦଶାସ୍ୟଦ୍ୱାର ଯୋଷା ହୁତ ହେବାରୁ ଦୋଷ—
ରୋପ କରନ୍ତି ପ୍ରଜାଚୟ ।୨।
ସୁଧାଭାଷୀ ବସୁଧା- ନନ୍ଦନୀଙ୍କ ମୁଁ ଛାଡ଼ି
ନ ସନ୍ତ କରବ ବଦାୟ ।
ପ୍ରକୃତତଳ ପ୍ରୀତି ତପୃତିପାଇଁ କୁଛା
ସନ୍ତତ ମୋହର ହୃଦୟ ।
ସେ ଏଥିପ୍ରତି
ବ୍ୟାକୁଳିତ ହେଲେହେଁ ମତି ।
ଲକ୍ଷ୍ମଣ ଯାଅ ତୁ ସପ୍ରତି ।
ଯତି-ମତି-ବକ୍ତି- ଦାତ୍ରିମା ସୀତାଙ୍କୁ
କଟରେ ପ୍ରବେଶ ସୌମିତ୍ରି ।୩।

---

(୧) ଭଦ୍ର—ଶ୍ରୀ ରାମଚନ୍ଦ୍ରଙ୍କର ଦୂତବିଶେଷ .

ପଞ୍ଚ ଭୂଷାର ପର    ନେତ୍ର ବରଷି ବାରି
ଭ୍ରାତୃଜାୟାଙ୍କ ପାଦେ ନମି
ଲୁଷନ୍ତ ଦଶଆସ୍ୟ-    ଘର ଦେଲେ ଅଦେଶ
ଯିବ ଅସ ବନକୁ ଭ୍ରମି
ସେ କ୍ଷିତିସୁତା ।
ବହୁତ ଧନରତ୍ନ ନେଇ ।
ଶତାଙ୍ଗରେ ବସିଲେ ଯାଇ
ଭାଗୀରଥୀ ତଟସ୍ଥ    ଅଟବୀରେ ବର୍ଜିତ
କରି ଫେରିଲେ ରଥ ନେଇ ।୪।

କରୁଣାନିଧିଙ୍କର    ଦାରୁଣ ବ୍ୟବହାର
ଅରୁଣାଧରୀ ହୃଦେ ଶୋକ
ବାଲ୍ମୀକ ତପୋଧନ    ଧ୍ୟାନଦ୍ୱାରା ସନ୍ଧାନ
କଲେ ଶୁଣି ଶିଷ୍ୟଙ୍କ ବାକ୍ୟ
ସେ ବଶାମକୁ ।
ବରଜ ସରଜ ଶ୍ରମକୁ ।
ମନ୍ଥର ନେଲେ ଆଶ୍ରମକୁ ।
ତପସ୍ୱିନୀ-ନିକର    ଭାଷି ଅମୀୟ ଗିର
ଶମିଲେ କ୍ଷୁବ୍ଧ ମରମକୁ ।୫।

ରାଜୀବନେନ୍ଦ୍ର ମାର    ତେଜି କୋଦଣ୍ଡଧର
ଭଜିଲେ ପ୍ରମଦାର ଗୁଣ
ଅନେକ ସ୍ୱର୍ଣ୍ଣକାର    ଡକାଇଣ ସତ୍ୱର
କନକ ଜାନକୀ ନିର୍ମାଣ
ସେ କରାଇଲେ ।
ବାସ ଭୂଷଣ ପିନ୍ଧାଇଲେ ।
ଚନ୍ଦନ କର୍ପୂର ଲେପିଲେ
ଇଭଗମନା ନିଭ(୧)    ଦେଖି, ମାତ୍ର ସେ ଜୀବ
ଥିବାର ଧବ ନ ଦେଖିଲେ ।୬।

(୧) ଇଭଗମନା ନିଭ--ଗଜଗମନା ଅଟନ୍ତି ଯେ ସୀତା ତାଙ୍କ ପରି

ସାଦରେ ବସି ବାଦୀ ପ୍ରତିବାଦୀ ସମ୍ବାଦ
ବନ୍ଦ କହିଲ ସାରମେୟ
ଧର୍ମାର୍ଥ ସିଦ୍ଧ ଦ୍ୱିଜ ବିନା ଦୋଷରେ ଅଜ
ଦଣ୍ଡିଲ ମୋତେ ଦୟାମୟ
ସେ ସୀତାକାନ୍ତ ।
ତାଙ୍କ ଅଣିଲେ ପେଶି ଦ୍ୱାଃସ୍ଥ
ଶୁଣିଲେ ସକଳ ବୃତ୍ତାନ୍ତ
ଦେବ-ଅଳୟେ ହେବ ଅଧିକାରୀ ଭୂଦେବ
ଏ ଦଣ୍ଡ ତା ପ୍ରତି ସାବ୍ୟସ୍ତ ।୭।

ଦୋଷୀକୁ ପୁରସ୍କାର ହେଲା ବୋଲି ସକଳ
ସଭାରେ ହେବାରୁ ପ୍ରସ୍ତବ
ଦଣ୍ଡ ବୋଲି କୋଦଣ୍ଡ- ପାଣି ଭଣି ତଦଣ୍ଡ
ଉପରେ କହିଲ କୁକୁର
ସେ ସତ୍ୟବାର ।
ଥିଲା ମୋର ଏ ଅଧିକାର ।
ଦେବସ୍ୱ ନ କରେ ଆହାର
ନଖ କୋଣରେ ଘୃତ ଲଗି ଥିବାରୁ ହୁତ-
ଭୋକ୍ତାରେ ସେତେ ନାନ୍ତ କର ।୮।

ଦନେ ମୁଁ ନିସ୍ତାସନ ନ କରଣ (୧) ଅଶନ
କରିବାରୁ ହୋଇଛୁ ଶ୍ୱାନ
ଅନ୍ୟ ଉଚ୍ଛିଷ୍ଟ ପନ ଲେହ ମୋ ବୃତ୍ତି ମାନ
ଛି ଛି ଶବ୍ଦ ଶୁଣୁଛୁ କାନ ।
ହେ ଏ ଭୂଦେବ ।
ଅବଶ୍ୟ ଦେବସ୍ୱ ଖାଇବ ।
ଜନ୍ମାନ୍ତରେ କଷ୍ଟ ପାଇବ
ପ୍ରଣମି ରାମପାଦେ ଶ୍ୱାନ ଗଲା ଅନନ୍ଦେ
କାଶୀଯେବେ ଚେତିଲ ଜୀବ ।୯।

(୧) ଦନେ ମୁଁ ନିସ୍ତାସନ ନ କରଣ—ଗୁପ୍ତଭାବେ

ଶମନସ୍ବସାରଙ୍କ- ବାସୀ ବୈଦିକ ଜନ-
ଧାଇଁ ରାମଙ୍କ ପାଶେ ମିଳି
କହିଲେ ମଧୁ ସୁତ ଲବଣ ନାମେ ଦୈତ୍ୟ
ଦେଉଛନ୍ତି ଋଷିଗଣ୍ଣ ଗିଳି
ହେ ରଘୁନାଥ !
ତା ପିତା ସେବା କରି ଶୂଳୀ
ହୋଇଲେ ଥିଲେ ମହାବଳୀ
ଶୂଳ ଥିଲେ ତା କରେ ଜଗେ ତ୍ରାତ ନ କରେ
ଅରିଙ୍କି ଦଳି କରେ ଧୂଳି ।୧୦।

ଭ୍ରାତୃଚରଣ ବନ୍ଦି ଶତ୍ରୁଘ୍ନ ଶତ୍ରୁଚ୍ଛେଦ—
ବାକୁ ସସୈନ୍ୟ ଗଲେ ଚଳି
ବନ୍ଧୁ ମାର୍ଜଣେ ଦେଇ ବଧ ମାର୍ଗ ବଢାଇ
ଅଗ୍ରଜ ଆଜ୍ଞା ଦେଲେ ଝୁଲି
ସେ ସଉମିତ୍ରି ।
ବାଲ୍ମୀକି ସଦନେ ଅତଥି !
ହେଲେ ପ୍ରବେଶ ହେଉଁ ରାତି,
ଜନକ ଜେମାଙ୍କର ସେ ଦିନ ବିଯାମାର
ଯମଜ ସନ୍ତାନ ଉତ୍ପତ୍ତି ।୧୧।

ତପୀ ହୋଇ ସନ୍ତୁଷ୍ଟ କଲ୍ଲି ଜ୍ୟେଷ୍ଠ କନିଷ୍ଠ
ସୁତଙ୍କ ନାମ କୁଶ, ଲବ,
ପ୍ରଦାନ କରି ଶିଶୁ- ରହ ନିବାର ଅଶୁ
ଜାତକର୍ମ ସମ୍ପାଦ ଜବ
ସେ ଏ ସମ୍ବାଦ ।
ହେଲା ଶରଦ-ପୂର୍ଣ୍ଣଚନ୍ଦ୍ର ।
ଆଶ୍ରମବାସୀଙ୍କର ହୃଦ-
କୁମୁଦେ କରି ମୁଦ ବରୁଧେ ତୋଷପ୍ରଦ
ବିଷାଦ-ତମ କଲା ରଦ ।୧୨।

ପର ଦଳ ପ୍ରଭ୍ରଷ୍ଟେ        ପର ନାଶ ନିମନ୍ତେ
ମଧୁପୁରରେ ପରବେଶ
ଖାଦ୍ୟାନୁସନ୍ଧାନାର୍ଥ        ବାହାରିଥିଲା ଦୈତ୍ୟ
ଆକ୍ରମଣ କଲେ ତା ବେଶ୍ମ ।
ସେ ମଧୁସୁତ ।
ଲବଣ କରିହ ବହୁତ
ଧରି ଅବାସେ ଉପସ୍ଥିତ
ତହଇ ବନ୍ଧୁ ନୂତ୍ର        ରଦ କରିବ ଯୁଦ୍ଧ
ଆୟୁଧ ହେଲ ହସ୍ତଗତ ।୧୩

ଶୂଲଶୀ ଲଭି ଯେତେକ        ଜନ ରଣମା ଭଳେ
ପଡ଼ି ନ ପାରେ ଯ ଥାଗନ୍ତୁ
ତଥା ନ ପାଇ ଶୂଳ        ଅତୁଳ ଦୈତ୍ୟକୁଳ-
ଇଣ ଆରମ୍ଭିଲ ଅନର୍ଥ
ସେ ଅବସରେ ।
ଲବଣ ସରେ ବୀର ଶରେ ।
ଲବଣପତ ଯଥା ସରେ
ମଧୁ ପୁରରୁ ମଧୁ        ସୁତ ପିବାରୁ ମଧୁ-
ଅହାସ୍ତ ହତ ଅକ୍ଲେଶରେ ।୧୪।

ଦ୍ବିଦଶ ନେତ୍ର ପର        ପାଶେ ପ୍ରବେଶ ବୀର
ଦ୍ବାଦଶ ବରଷ ଶେଷରେ
ବିନାଶଶୀଳ ବସ୍ତୁ        ଶାଶ୍ବତ ଏକା ଯଶ
ବସ୍ତୁର ସମ ମାନସରେ ।
ସେ ଉପରୁଷ-
ଶ୍ରେଷ୍ଠ ବନ୍ଧୁଙ୍କ ପଶୁର ।
ଅଶ୍ବମେଧ ବ୍ରତ ଆଚର
ନିଜ ଷଷ୍ଠୀ ସାଳତ        ଷଣ୍ଡିକା ଭର ନ୍ୟସ୍ତ
ବାଜୀ ତେଜଲେ ଭ୍ରାତା ସ୍ବର ।୧୫।

ସ୍ୱାଧୀନଭାବେ ବୁଲି ବୁଲି ଅସିବ ବୋଲି
ସୈନ୍ୟ ସବୁ ଘୁଞ୍ଚିଲେ ଜବ ।
ସ୍ପୃଷ୍ଟ-ଛଟ ଅଟ ବୀରେ ଘୋଟକମୁଣ୍ଡ
ଅଟକ କଲି କୁଶ ଲବ
ସେ ପତ୍ରିକାରେ ।
ଦେଖିଲେ ଲେଖା ଏ ପ୍ରକାରେ ।
ଅମ୍ଭେ କଳିଷ୍ଟ ଏ ସଂସାରେ
ଅମ୍ଭର ମାତା ବୀର- ପ୍ରସୂ ମଧ୍ୟରେ ସାର
ବାସ ଆମ୍ଭର ସାକେତରେ ।୧୭।

ଯାହାର ଯାରେ ବନ୍ଧି ହୋଇବ ଅଶ୍ୱମେଧ
ଯଜ୍ଞ ସେ ବୀର କରିପାରେ
ଶୁଣିଥିଲେ ଏ ବାଣୀ ମାଇଲ ପର ପାଣି
ମଣିଲେ କେନି ସହୋଦରେ
ସେ ତଦର୍ଶନେ ।
ଶନ୍ତ୍ରୁଘ୍ନ ପାଶେ ସୈନ୍ୟଯେନେ ।
କହିଲେ ସମସ୍ତ ଲକ୍ଷ୍ମଣ୍ୟ
ଏ ବନ୍ୟ ଶିଶୁଦ୍ୱୟ ନ ବହ ହୃଦେ ଭୟ
ବନ୍ଧନ କରନ୍ତୁ ହୟ ।୧୭।

ଲକ୍ଷ୍ମଣଙ୍କ ଅନୁଜ ଭାନୁ ପସ୍ୱପେ ତେଜ
ବହି ଧନୁକୁ ଧରି ହାତେ
କହିଲେ ରେ କୁମର ନ ଜାଣ ତ ସମର
ଅଶ୍ୱ ଆମର କ ନିମନ୍ତେରେ
ବାନ୍ଧିଅଛ ।
ମିଛ ନ କହ କହ ସ୍ୱଚ୍ଛ ।
ତୁମ୍ଭେ କେନି କାହାର ବତ୍ସ
କ୍ଷମିଲି ତୁମ୍ଭ ଦୋଷ, ମୋଚନ କର ଅଶ୍ୱ
ସହର୍ଷେ ସ୍ୱବାସକୁ ଗଚ୍ଛ ।୧୮।

ନ ପୁଚ୍ଛି ନାମ ଧାମ ଜାଣୁ ଯେବେ ସଂଗ୍ରାମ
ମାର୍ଗଣଗଣ ବ୍ୟସ୍ତ ହନ୍ତ
ଶତ୍ରୁକ ଶିବିରକୁ ଭେଦନ କରିବାକୁ
ବସି ଗଣୁଛୁ କମ୍ପା ବନ୍ଧ ରେ
କର ଯୁଦ୍ଧ ।
ବିପକ୍ଷୀନ କି ତମେ କ୍ଷୁଦ୍ର ।
କି କରିବ ଦୁଣ୍ଡୁଭ ବୃଦ୍ଧ
ଅଶ୍ୱାସନା ବଚନ ନାହିଁ ତ ପ୍ରୟୋଜନ
ଲବ କହନ୍ତେ ହୋଇ କ୍ରୁଦ୍ଧ ।୧୯।

ପିତୃବ୍ୟ ଭ୍ରାତୃଷ୍ପୁତ୍ର ଜନ୍ମକ ସମାଗମ
ବାକ୍ୟରେ ନ ହେବ ପ୍ରକାଶ
ମହାପାଶ ଅସ୍ତ୍ର କୁଶ କଲେ ପ୍ରୟୋଗ
ଶତ୍ରୁଘ୍ନେ ବାନ୍ଧିଲେ ବଳସ
ସେ ବାହିବନ୍ଧ ।
ରାମଙ୍କୁ ଦେଲ ଏ ସମ୍ବାଦ
ଶୁଣି ସେ ଗଣିଲେ ପ୍ରମାଦ
ପଦ୍ମେକ୍ଷଣ ତତକ୍ଷଣେ ଦେବପୂଜ୍ୟ ଲକ୍ଷ୍ମଣେ
ପେଷିଲେ କରିବାକୁ ବାଦ ।୨୦।

ରାମ ରମ୍ୟତା ସମ ଦେଖି ସେ ବାଗେଶ୍ୱର
ବାଳକଙ୍କ ଚିତ୍ତ ଭ୍ରାତା ଦ୍ୱୟ
ଏକମାତ୍ର ରାମଙ୍କୁ ବିଗ୍ରହେ ଜିଣିବାକୁ
ବୀର ନାହାନ୍ତି ପୁରନ୍ଦ୍ରୁ
ଏ ବେଳା ରାମ ।
ସମରେ ହୋଇବ ଠିକ ସମ ।
ଜିଜ୍ଞାସା କଲେ ନାମ ଧାମ
ଲବ କୁଶ କହନ୍ତା ପୁଚ୍ଛ କାହାର ବୁଅ
ସଂଗ୍ରାମ ପରବର୍ତ୍ତେ ରାମ ।୨୧।

ମାତଙ୍ଗେନ୍ଦ୍ର ସ୍କନ୍ଧରେ ବିବିଧ ଆୟୁଧରେ
ବିବୁଧବର୍ଗ ହେଲେ ରୁଦ୍ଧ
ଲବ ସମ୍ଭବେ ଲବ ଶରେ ମାଣ୍ଡବୀଧବ
ମୋହ ପ୍ରାପ୍ତ ନ ହୋଇ ବଧ
ସେ କୁଶ ଶର ।
ହେଲେ ଶଶାଙ୍କ ପରକାର ।
କୁଶେଶୟ ଲକ୍ଷ୍ମଣ ବୀର
ଦୁତ ଦ୍ରୁତ ଗତିରେ ସୀତାପତି କତିରେ
ଦେଲା ଏ ବିପତ୍ତି ଖବର ।୨୨।

ଚଳେ ମାତ୍ର ବିରାମ ନ କରିଣ ଶ୍ରୀରାମ
ଭ୍ରମାନେ ଋଷି ଅଭ୍ରମାନେ
ବିଭୀଷଣ ସୁଗ୍ରୀବ ହନୁମନ୍ତ ଜାମ୍ବବ
ସହ ପ୍ରବେଶ ରଣସ୍ଥାନେ
ସେ ବେଳା ସ୍ୱରେ ।
ଦେଖି ଭାବିଲେ ହୃଦୟରେ ।
ଏ ନାଶିଲନ୍ତି ମୋ ସୋଦରେ
ଶ୍ରେଷ୍ଠ ହେଲେହେଁ ଶ୍ରେଷ୍ଠ ମାରିଲେ ଛଟପଟ
ନ ହେବ କେ ଭରଗ-ଗରେ ।୨୩।

ଗୁରୁତର ସମର ହେଲା ସ୍ୱର୍ଗେ ଅମର
ଦେଖନ୍ତି ବହୁଭୁବମାନ
ମୋହନ ବାଣେ ମୋହେ ପକାଇ ସ୍ୱର ଦୁହେଁ
ଖେଳିବାପାଇଁ ହନୁମାନ
ସେ ସଙ୍ଗେ ଧରି ।
ନେଲେ ବନ୍ଧୁରେ ବାନ୍ଧ କରି ।
ଦେଖିଲେ ଜନକକୁମାରୀ
ପାବକଠାରୁ କ୍ଷୌଣୀ- କନ୍ୟା ସମସ୍ତ ଶୁଣି
କାନ୍ଦିଲେ ଯେସନ କୁରରୀ ।୨୪।

ବାତଜଙ୍କୁ ଅଦେଶ ଦେଲେ ସୀତା ଇଭସ୍ତ
ବନକୁ ଯାଇ କାଷ୍ଠ ଆଣ
ଧବବ୍ୟଗାତ ଜୀବେ ଧରି ରହିବା ଭବେ
ଅନୁଚିତ ଚେଜିବି ପ୍ରାଣ
ସେ ଶବ୍ଦକୁ ଠେ
କୁଟେ ବାଲ୍ମୀକି ତପୀବର ।
ଧ୍ୟାନବଳେ ହୋଇ ଗୋଚର
ମିଳିଲେ ରଣସ୍ଥଳେ ବଇଦେହୀ ବଚନେ
ଧରି କହିଲେ ଶ୍ରୀ ପଯ୍ୟର ।୨୫।

ଦେବାରୁ ତୁମ୍ଭେ ଶିକ୍ଷା ପିତାଠାରେ ପରୀକ୍ଷା
କଲେ ଏ ଯୋଗ୍ୟପୁତ୍ର ଦ୍ୱୟ ।
ରଖ ଏହାଙ୍କୁ ପାଣ ଅନଳେ ଦେବ ଝାସ
ପତିଙ୍କ ସହ ମୁଁ ନିଷ୍ଠୟ
ସେ ବୃଦ୍ଧ ଯତି ।
କହିଲେ ଜନ୍ମ ନୁହ ସତୀ ।
ବଞ୍ଚାଇ ଦେବି ତେବେ ପତି ।
ମରଣ ସଞ୍ଜୀବନୀ ମନ୍ତ୍ରରେ ମହାମନ୍ତ୍ରୀ
ମନ୍ତ୍ରିଲେ ଜଳକ ଝଟିତି ।୨୬।

ମୂର୍ଚ୍ଛି ଥିବା ଜୀବନ ଜୀବଙ୍କ ପରେ ବନ
ସିମ୍ପିବାରୁ ଉଠିଲେ ବନ୍ଧୁ
ଘେନି ଜନନୀ ସୁତଙ୍କୁ ମୁନୀଙ୍କ ଆଶ୍ରମକୁ
ରାମବାନୀତା ଗଲେ ଘୁଞ୍ଚି
ସେ ରଘୁନାଥ ।
ସୁତ ଦ୍ୱୟଙ୍କ ପରିଚୟ ।
ପୁଚ୍ଛନ୍ତେ ମୁନି ମହୋଦୟ
କହିଲେ ଯଜ୍ଞସ୍ଥଳେ ଦିହାଇ ଦେବି ବଳେ
ଚାହିଁ କରି ଯା ଘେନି ହୟ ।୨୭।

ଯଜ୍ଞ କଲେ ରାଘବ ବାଲ୍ମୀକି କୁଶ ଲବ
ଘେନି ସେ ସ୍ଥାନେ ଉପସ୍ଥିତ
ଋଷିଙ୍କ ସ୍ୱରଚିତ ସୁତ ରାମ ଚରିତ
ପଢ଼ିଲେ ହେଲେ ପରିଚିତ
ସେ ବେନି ସୁତ ।
ସୀତାଙ୍କୁ ନେଲେ ରଘୁନାଥ ।
ପୁନଶ୍ଚ ଗ୍ରହଣ ବୃତ୍ତାନ୍ତ
ପୁରବାସୀଙ୍କ ମତ ପୁଚ୍ଛନ୍ତେ ତପୋବନ୍ତ
କେତେକ ହେଲେ ଅସମ୍ମତ ।୨୮

ନିତାନ୍ତ ଅକୁଳତା ହୋଇ ମହୀ-ଦୁହିତା
ପାତାଳପୁରେ ଗଲେ ସତ
ଯଜ୍ଞକୁ ସମାପନ କରି କାଳଯାପନ
ଦୁଃଖରେ ଗଲେ ରଘୁପତି ।
ସେ ଲବ କୁଶ ।
କରାଇ ଅଯୋଧ୍ୟା-ନରେଶ ।
ସରଯୂଜଳେ ଦେଲେ ଝାସ
କହେ ଗୋକୁଳାନନ୍ଦ ସ୍ମରି ସେ ପଦଦ୍ୱନ୍ଦ
କ୍ଷମା କର ପ୍ରଭୁ ମୋ ଦୋଷ ।୨୯।

## ୪୮ଶ ଛାନ୍ଦ

### ରାଗ—ବଙ୍ଗଳାଶ୍ରୀ

### ଆତ୍ମକଥା

ରଚିତରେ ଭଣ  ହେବ ବୋଲି ଖ୍ୟାତ
ଭବ ନାହିଁ ଏ କବିତା,
ବୁଧବୃନ୍ଦାଦୃତ ହେବ  କି ନ ହେବ
ଚିନ୍ତା କରିବ ଏ ଚିନ୍ତା ।୧।
ସରସେ ଭା'ମନ  ନ ରସେ ବିରସେ
ଅଣେ ସିନା ସେ ହରଷ,
ପଲ୍ଲବେ ଉଲ୍ଲାସ  ନ ହୁଏ ମାନସ
ତଦୁପଯୁକ୍ତ ସାରସ ।୨।
କିଂଶୁକ ସମାନ  ଅଛେ ଗନ୍ଧ ହୀନ
ମୋହର ଏହି ରଚନା,
ମନୋରଥ ସିଦ୍ଧି  କରିଛନ୍ତି ବିଧି
ତାହାକୁ ନାହିଁ ଶୋଚନା ।୩।
ଦଶ ଦିବସକୁ  ଅସି ମୋ ବାସକୁ
ମଲା ପ୍ରଥମ ସନ୍ତାନ,
ମହାତ୍ମା ପୁତ୍ର  କଷ୍ଟ ଶତାପତ୍ର
ଦହନ୍ତି ଦମ୍ପତିମନ ।୪।
ତଦୁତ୍ତରେ ଜାତ  ହେଲେ ଭିନ୍ନ ସୁତ
ପ୍ରଥମଟି ନେତ୍ରାନନ୍ଦ,
ମଧ୍ୟମ ସଚ୍ଚିଦା-  ନନ୍ଦ କନିଷ୍ଠର
ନାମଟି ଦିବ୍ୟାନନ୍ଦ ।୫।
ପାଞ୍ଚ ବର୍ଷ ବୟି  ମରିଗଲା ସଚ୍ଚି
ଅହନଶ କାନ୍ଦି କାନ୍ଦି,
ମୋ ରକ୍ତନଳିକା  ଦେଇ ଥିଲେ ବିଧି
କେଉଁ ପାପେ କେଉଁ ବ୍ୟାଧି ।୬।

ଧଅଁ ଦେବତାଙ୍କ ପାଶ ଦେଲ୍ଲ କେତେ
ଅନ୍ତୂଲେ ମାତା ତାହାର,
ଡାକ୍ତର କବିରାଜଙ୍କ ଭେଷଜ ମାନଙ୍କ
ତା ପାଶେ ହାର ।୭।
ଏକବିଂଶୋତ୍ତର ଊନବିଂଶ ଶତ
ମହିହା ଜୁଲାଇ ମାସ,
ଗ୍ରାମରୁ ସଞ୍ଚର ଚାବିବାକୁ ମାଗି-
ଭଯ଼ ମିଳିଲା ମୋ ବାସ ।୮।
ମୋ ନିକେତନର ନେତ୍ର ରୂପ ନେତ୍ର
ମୋ ସଙ୍ଗରେ ଯାଇ ପାଠ,
ପଢ଼ୁଥିଲ୍ଲ ମନ୍ଦ ପ୍ରଥମେ ପ୍ରଥମେ ତାହାକୁ
ହୋଇଥିଲା ବର୍ଷ ଆଠ ।୯।
ତା'ର ବେନି ଧନ ଯତେ ବନିତାକୁ
ଘେନିଗଲ୍ଲ ମହାମାରି,
ଜଗଦାନନ୍ଦକୁ ଉପୃ ଦିବସ
ମାସିଭଯ଼ ନେଲ୍ଲ ମାରି ।୧୦।
ଧନ ତ ଅନନ୍ଦ ପ୍ରଦାନେ ତା' ଠାରୁ
ଭବନ ହୋଇଲ୍ଲ ମ୍ଳାନ,
ଗୁଣି ଗୁଣି ପୁନ- ମଣି ରମଣୀଙ୍କ
ଗୁଣ ଁ କାଟିଲି ଦିନ ।୧୧।
ଅଚ୍ଛେଦ ଦିନରେ ଭୁଗ୍ନ ଦେଲେ ଚାହି
ମୋ ହର ସବୁ ବିଭାଳ,
"କ୍ଷୁଧାତୁରଙ୍କୁ ସୁଧା ତୁଲ୍ଲ ଭୋଜ"
ପରଶି ନେଲେ ଚାଉଳ ।୧୨।
ଦୁଃଖ ତ ତାଙ୍କର ଦାନ ଅଟେ ସୁଖ
ଯାହାଙ୍କର ଆଶୀର୍ବାଦ;
ଏଥିପାଇଁ କମ୍ପା ହୃଦରେ ପୋଷିବ
ନିରନ୍ତର ଅବସାଦ ।୧୩।

ଅଖି ପଡ଼ିଥିଲେ ଗାଢ଼ ଚକ୍ଷୁଥାଏ
ଭୁଲ୍ ପଡ଼ୁଥାଏ ପଦ୍ମ,
ସଂସାର ଭିତରେ ଘର ଭାଙ୍ଗିଥିଲେ
ପଥର ପଡ଼ିଲେ ମନ୍ଦ ।୧୪।
ଅଳ୍ପ ଅଭ୍ୟାସନା ଦେଲ ମୋତେ ପିତା
ଜୀବଙ୍କର ଏ ଉଚିତ,
ବୋଧଶୋଧ କରି ପଦେ କହିବାକୁ
କେହି ନ ଥିଲେ ମୋ ହିତ ।୧୫।
କରାଇଲେ ହରି ପନ୍ଦର ନାରୀ-
ଗ୍ରହଣସୂତ୍ରେ ବନ୍ଧନ,
ଛ ମାସ କେବଳ ହୋଇଥିଲା ପତ୍ନୀ-
ଶୂନ୍ୟ ମୋହର ସଦନ ।୧୬।
ଗତ ହେଲା କେତେ ସମସ୍ତ ଭବନେ
ନ ପଡ଼ିଲା ପୂଜ୍ୟପାଦ,
ବୃଥା ହେବ କି ମୋ ଦ୍ୱିତୀୟ ବିବାହ
ଭାବି ଲଭିଲି ବିଷାଦ ।୧୭।
ପୁରାଣ-ସ୍ୱରୂପ ପଢ଼ୁଥିଲି ମୁହିଁ
ସାଧ୍ୱୀମଧ୍ୟେ ରାମାୟଣ,
ଉପସ୍ଥିତ ଥିଲେ ମୋର କୁଟୁମ୍ବର
ଦାଦା ଅନନ୍ତଚରଣ ।୧୮।
ପୁରାଣ ଶେଷରେ ଦର୍ଶାଇଲେ ସୂର୍ଯ୍ୟ-
ମନ୍ତ୍ରୀ ଚ୍ୟାଉଙ୍କ ଆଦର୍ଶ,
ଭାବିଲି ଏ ବାକ୍ୟ- ରଚନା ଧରା ଦେଲ
ଉନ୍ନତ ମୋ କ୍ଳେଶ-ଦର୍ଶ ।୧୯।
ବିଚାରିଲି ଚିତ୍ତ ଶ୍ରୀରାମ ଚରିତ
ରାଗ-ରାଗିଣୀରେ ଗୀତ—
କରିବି ଆଦର ପାଉ ବା ନ ପାଉ
ଥାଉ ନ ଥାଉ ପାଣ୍ଡିତ୍ୟ ।୨୦।

ଅଷ୍ଟକର ନାମ ଜାନକୀବଲ୍ଲଭ
ମଦନାଙ୍କ ସୂତର୧ ନାମ,
ଜାନକୀବଲ୍ଲଭ ବିଳାସ ଦେବ ମୁଁ
ପୂର୍ଣ୍ଣ ହେଲେ ମନସ୍କାମ ।୨୧।
ଅନନ୍ତ ଆଦେଶ ଦେବାକୁ ଅନନ୍ତ
ବ୍ରତକୁ କଲେ ମହଲା,
ରାମ ରସ ଗାନ କରୁଥିଲି ମନ
ସେହି ବିଷୟ ବହିଲା ।୨୨।
ଦୁଃଖ ପରେ ସୁଖ ସୁଖ ପରେ ଦୁଃଖ
ଖଞ୍ଜିଛନ୍ତି ପିନା ବିହି,
ଏଥିରୁ ଗୋଟିଏ କଥା ତା ମଥାରେ
ନାହାନ୍ତି କଦାପି ଲହି ।୨୩।
ଜାତ ହେଲା ଏକ ସନ୍ତାନ ମୋହର
ଉପୁଜିଲା ନନ୍ଦନାଧି,
ହରଷ-ତରଣୀ ହେଲେ ବଧୂମଣି
ତରିବାକୁ ଖେଦ-ବାର୍ଦ୍ଧି୨ ।୨୪।
ଯା ପୁଅକୁ ସାପ କାମୁଡ଼ି ଥାଏ ତା
ଜନନୀ ପାକଦାକଡ଼ି
ଦେଖିଲେ ଚମକ ପଡ଼ ଖଣ୍ଡେଦୂର
ସେଠାରୁ ଯାଏ ଦାକଡ଼ି ।୨୫।
ନବେଦାଲି ଦେବେ ଏ ଭବେ ମୁଁ କବେ
ପୁତ୍ର ଯଶ ଅବଜାର
ଗୁଣବନ୍ତ ହୋଇ ପରଶ୍ରୀକାତର
ଅଦ ଦୋଷ ବରଜିବ ।୨୬।
ଦୀର୍ଘାୟୁ ନୀରୋଗ ହୋଇ ମୋ ତନୟ
କୁଳ-ପ୍ରଦୀପ ହେଜିବ,
ସୁଖେ ନେବ ଧନ ଦେଖି ତା ବଦନ
ଏ ଦୀନ ପ୍ରାଣ ତେଜିବ ।୨୭।

(୧) ମଦନଜସୁତ—ପ୍ରଚେତ ପୁସ୍ତକ (୨) ବାର୍ଦ୍ଧି—ସମୁଦ୍ର

ଏହାପର କେତେ                    କଲୁ ମୁଁ ଅବତେ
ନିଜ ମଙ୍ଗଳ କାମନା,
ମୁଁ ନ ଜାଣେ                    ଭବିଷ୍ୟତ ଫଳ ଏବା
ଜାଣନ୍ତି ସେ ମହାମନା ।୨୮।
"ନଦ୍ଧା ମହାଭଗା                    ଅମନ୍ଦଗାମିନୀ"
ଦକ୍ଷିଣ ତୀରେ କତରେ,
ବିଦ୍ୟମାନ ଏକ                    ଶିବଲିଙ୍ଗ ଆମ୍ର-
ବନେ ବେଷ୍ଟିତ ଶକ୍ତରେ ।୨୯।
ରାମ ନାଥ ଦେଇ                    ପୂଜୁଥିଲେ ବୋଲି
ନାମ ରାମନାଥ ନାମ,
ସେ ନାମାନୁସାରେ                    ପ୍ରତିଷ୍ଠିତ ହେଲା
ରାମେଶ୍ୱର ବୋଲି ଗ୍ରାମ ।୩୦।
ମାନବରୂପରେ                    ଦ୍ୱାପରେ ମୋ ପରେ
କରୁଥିଲେ ଯେ ଦୋହନ,
ତୃଷି ସେହି ମୂର୍ତ୍ତି                    ବସାଇତ ତଥି
ନାମ ଜଗତମୋହନ ।୩୧।
ମନ୍ଦିର ତୋଳାଇ                    ସେବା ପୂଜାପାଇଁ
ପୁରୀ ପୂର୍ବ ଗଜପତି,
ସେବକ ସୁଅର                    ପାଉଣ ଏକର
ଜମି ଖଞ୍ଜି ଦେଇଛନ୍ତି ।୩୨।
ଜଗତ୍ ମନ୍ଦିର                    ମଧ୍ୟରେ ମୋ ଘର
ଚରଣବଂଶରେ ଜାତ,
ଅନବଧ ହୋଇ                    ମୋ ନାମ ଗୋକୁଳା-
ନନ୍ଦ ଦେଇଥିଲେ ତାତ ।୩୩।
ଏକବିଂଶ ସ୍ତନ                    ଶେଷ ପଦେ କ୍ଲେଶ
ସ୍ଥାନ ଶେଷରେ ବଗୁର,
ନନ୍ଦନ ଜନନୀ                    ଜନକ ଜାୟାଙ୍କ
ନାମ ଦେଇଅଛୁ ଗୁରୁ ।୩୪।

ମୁଦ୍ରାକର—ଶ୍ରୀ ବିଶ୍ୱମ୍ଭର ପରିଡ଼ା, ପ୍ରଜାତନ୍ତ୍ର ପ୍ରେସ୍, କଟକ—୨